# ରୁଦ୍ରସୁଧାନିଧି

ରଚନା

ନାରାୟଣାନନ୍ଦ ଅବଧୂତ ସ୍ୱାମୀ




ସଂପାଦକ

ଡକ୍ଟର କରୁଣାକର କର

# ରୁଦ୍ରସୁଧାନିଧି

ରଚନା

ନାରାୟଣାନନ୍ଦ ଅବଧୂତ ସ୍ୱାମୀ




ସଂପାଦକ

ଡକ୍ଟର କରୁଣାକର କର

ପ୍ରକାଶକ:—
**ଓଡ଼ିଶା ସାହିତ୍ୟ ଏକାଡେମୀ**
ଭୁବନେଶ୍ୱର-୧

ପ୍ରଥମ ମୁଦ୍ରଣ
୧୯୬୫

ମୁଦ୍ରାକର—
**ନବଯୁଗ ପ୍ରେସ,**
କଟକ-୨

ମୂଲ୍ୟ—ଟ ୪·୨୫

# ଅଗ୍ରଲେଖ

'ରୁଦ୍ରସୁଧାନିଧି' ପ୍ରାଚୀନ ଓଡ଼ିଆ ସାହିତ୍ୟର ଏକ ମୂଲ୍ୟବାନ୍ ଅବଦାନ । ଆଧୁନିକ ଯୁଗରେ ମଧ୍ୟ ଭାଷାତତ୍ତ୍ୱ ଓ ଧର୍ମତତ୍ତ୍ୱ ପ୍ରଭୃତି ଦୃଷ୍ଟିରୁ ଏଥିର ଉପାଦେୟତା ଅଳ୍ପ ନୁହେଁ । ଆଜକୁ ପ୍ରାୟ ତିରିଶି ବର୍ଷ ପୂର୍ବେ ଡଃ ଆର୍ତ୍ତବଲ୍ଲଭ ମହାନ୍ତି ଏହାର କେତେକ ଅଂଶ ପ୍ରକାଶ କରି ଓଡ଼ିଆ ସାହିତ୍ୟର ଆଲୋଚକ ଏବଂ ପାଠକମାନଙ୍କ ମନରେ ଏଥିପ୍ରତି ବିଶେଷ ଆଗ୍ରହ ସୃଷ୍ଟି କରିଥିଲେ । ଆଜି ଏତେ ଦିନ ପରେ 'ଓଡ଼ିଶା ସାହିତ୍ୟ ଏକାଡେମୀ' ପୁସ୍ତକ ଆକାରରେ ଏହା ସର୍ବସାଧାରଣଙ୍କ ସମକ୍ଷରେ ଉପସ୍ଥାପନ କରିବାକୁ ସମର୍ଥ ହୋଇଅଛୁ । ମୋର ଆଶା, ଓଡ଼ିଆ ଭାଷା ଓ ସାହିତ୍ୟର ଐତିହାସିକ ଆଲୋଚନା ନିମନ୍ତେ ଏଥିରୁ ପ୍ରଚୁର ଉପାଦାନ ସହଜ ଲବ୍‌ଧ ହେବ । ଇତି ।

୧୦।୩।୭୫

ସନ୍ତୋଷ କୁମାର ସାହୁ
ସଭାପତି

# ମୁଖବନ୍ଧ

ଡକ୍ଟର କରୁଣାକର କରଙ୍କ ସମ୍ପାଦିତ 'ରୁଦ୍ରସୁଧାନିଧି' ଏକ ଦୁଷ୍ପ୍ରାପ୍ୟ ଗ୍ରନ୍ଥ । ଏହା ବହୁ ଆଗରୁ ପ୍ରକାଶ ପାଇପାରିଥିଲେ, ଓଡ଼ିଆ ଗଦ୍ୟ-ସାହିତ୍ୟର କ୍ରମବିକାଶ ଓ ପ୍ରାଚୀନ ଓଡ଼ିଆ ଭାଷା ତଥା ଛନ୍ଦ ସଂପର୍କରେ ଅଧିକତର ଜ୍ଞାନଲାଭ ହୋଇପାରିଥାଆନ୍ତା । ଯାହା ହେଉ, ବର୍ତ୍ତମାନ ଏହା ପ୍ରକାଶ ପାଇବାଦ୍ୱାରା କେତେକ ବିବଦମାନ ସାହିତ୍ୟିକ ସମସ୍ୟାର ସମାଧାନ ଦିଗରେ ସାହାଯ୍ୟ ମିଳିପାରିବ । ଏହା ବର୍ତ୍ତମାନ ସୁଦ୍ଧା ଅସଂପୂର୍ଣ୍ଣ । ଭଗବାନ କରନ୍ତୁ, ଏହାପରେ ଗ୍ରନ୍ଥଟିର ଶେଷ ଭାଗ ଆମର ହସ୍ତଗତ ହେଉ ଓ ଗ୍ରନ୍ଥଟି ପୂର୍ଣ୍ଣଭାବରେ ଆତ୍ମପ୍ରକାଶ କରୁ । ଇତି ।

ଭୁବନେଶ୍ୱର
୧୮ । ୩ । ୬୫

ଗୌରୀକୁମାର ବ୍ରହ୍ମା
ସେକ୍ରେଟାରୀ

# ମୁଖବନ୍ଧ

"ସଂଗଚ୍ଛଧ୍ୱଂ ସଂବଦଧ୍ୱଂ
ସଂବୋ ମନାଂସି ଜାନତାମ୍
ଦେବାଭାଗଂ ଯଥା ପୂର୍ବେ
ସଂଜାନାନା ଉପାସତେ ।"

ପୃଥିବୀର ପ୍ରତ୍ୟେକ ସାହିତ୍ୟ ପ୍ରଥମାବସ୍ଥାରେ ପଦ୍ୟପ୍ରଧାନ ଥିଲା । ଓଡ଼ିଆ ସାହିତ୍ୟ ମଧ୍ୟ ସେହିପରି ପ୍ରାକ୍‌କାଳରେ ପଦ୍ୟମୟ ଥିଲା । ପୁରାତନ ଓଡ଼ିଆ ସାହିତ୍ୟରେ ଗଦ୍ୟର କୌଣସି ବିଶେଷ ସ୍ଥାନ ନ ଥିଲା, କାରଣ ସେତେବେଳେ ସାହିତ୍ୟରେ ସଙ୍ଗୀତମୂଳକ ବା ଛନ୍ଦୋବଦ୍ଧ ରଚନା ପ୍ରଧାନ ଥିଲା । ଆଧୁନିକ ଯୁଗରେ ଗଦ୍ୟ ଯେପରି ଶୀର୍ଷସ୍ଥାନ ଅଧିକାର କରିଛି, ପ୍ରାଚୀନ କାଳରେ ସଙ୍ଗୀତ, ପଦ୍ୟ, ସ୍ତବସ୍ତୁତି, ଭଜନ, ଚଉତିଶା, ଚଉପଦୀ, କୋଇଲି, କାବ୍ୟ ପ୍ରଭୃତି ସେହିପରି ବିଶିଷ୍ଟ ସ୍ଥାନ ଅଧିକାର କରିଥିଲା । ଏହାର ପ୍ରକୃତ କାରଣ ହେଉଛି, ପୁରାତନ ସାହିତ୍ୟରେ ରସବୋଧ । ଏହାର ପ୍ରେରଣା ଆବେଗମାଧ୍ୟମରେ ସୁସ୍ପଷ୍ଟ । କେବଳ ଆବେଗ ନୁହେଁ, ଅନୁଭୂତି ମଧ୍ୟ ରସବୋଧର ଅନ୍ୟତମ ସହାୟକ । କାବ୍ୟ, ସଙ୍ଗୀତ, ପଦ୍ୟ ପ୍ରଭୃତିରେ ଯେଉଁ ମାତ୍ରାବୋଧ ଓ ରସବୋଧ ଜାତ ହୋଇଥାଏ, ଗଦ୍ୟ-ସାହିତ୍ୟରେ ସେହି ରସବୋଧର ଆଧାର ଭିନ୍ନ ପ୍ରକାରର । ଯୁକ୍ତି, ଜ୍ଞାନ, ଚିନ୍ତାଶୀଳତା ଗଦ୍ୟରଚନାର ମୂଳ କାରଣ; ଅର୍ଥାତ୍ ନାନାଯୁକ୍ତି, ନାନାମତର ଖଣ୍ଡନ-ମଣ୍ଡନଦ୍ୱାରା ଗଦ୍ୟ-ସାହିତ୍ୟର ପ୍ରାଣପ୍ରତିଷ୍ଠା ହୋଇଥାଏ । ଗଦ୍ୟ-ସାହିତ୍ୟରେ ଅନୁଭୂତିର ମାତ୍ରା ଅପେକ୍ଷାକୃତ କମ୍ । ତେଣୁ ପୃଥିବୀର ପ୍ରତ୍ୟେକ ସାହିତ୍ୟରେ ଆମ୍ଭେମାନେ ସର୍ବପ୍ରଥମରେ ଆବେଗ, ଅନୁଭୂତି ଓ ରସବୋଧର କୋମଳ ତରଳ

ସେମାନଙ୍କର ଅନୁଭବ କରିଥାଉ । କିନ୍ତୁ ମାନବ ଦୈନନ୍ଦିନ ଜୀବନରେ ଗଦ୍ୟ-ମାଧ୍ୟମରେ ଆତ୍ମପ୍ରକାଶ କରିଥାଏ । ମନୁଷ୍ୟର ସମସ୍ତ ବକ୍ତବ୍ୟ, କଥୋପକଥନ ଏହି ଗଦ୍ୟ ସାହାଯ୍ୟରେ ହୋଇଥାଏ । ଆର୍ଯ୍ୟଜାତିର ସାହିତ୍ୟରେ ଗଦ୍ୟର ପ୍ରଥମ ବିକାଶ ଦେବବାଣୀ 'ବେଦ'ରେ ହୋଇଥିଲା । ବୈଦିକ ସଂହିତାମାନଙ୍କରେ ଗଦ୍ୟର ପ୍ରଥମ ନିଦର୍ଶନ ମିଳିଥାଏ । ମନ୍ତ୍ରମାନଙ୍କ (ଛନ୍ଦୋବଦ୍ଧ ଗଦ୍ୟ) ସହିତ ଗଦ୍ୟ ମିଶ୍ରିତ ହୋଇଥିବାରୁ ସେହି ଯଜୁର୍ବେଦଟିର ନାମରେ 'କୃଷ୍ଣ' ଯୋଗ ହୋଇ କୃଷ୍ଣ-ଯଜୁର୍ବେଦ ହୋଇଛି । ପ୍ରାଚୀନ ଗଦ୍ୟର ଉଦାହରଣ 'ତୈତ୍ତିରୀୟ ସଂହିତା'ରେ ଉପଲବ୍ଧ ହୁଏ । ଏହି ସଂହିତାର ଗଦ୍ୟଭାଗ ପଦ୍ୟଭାଗ ଅପେକ୍ଷା ନ୍ୟୂନ ନୁହେ । ସେହିପରି, କାଠକ ସଂହିତା, ମୈତ୍ରାୟଣୀ ସଂହିତା ପ୍ରଭୃତିରେ ଗଦ୍ୟ ଅଂଶମାନ ଅଛି । ଅଥର୍ବବେଦର ଷଷ୍ଠଭାଗ ଗଦ୍ୟାତ୍ମକ । ସମଗ୍ର ବ୍ରାହ୍ମଣ ଗ୍ରନ୍ଥାବଳୀ ଗଦ୍ୟରେ ରଚିତ । ଆରଣ୍ୟକ ଗ୍ରନ୍ଥମାନଙ୍କରେ ଗଦ୍ୟର ପ୍ରାଚୁର୍ଯ୍ୟ ରହିଛି । ଏହିପରି-ଭାବରେ ବୈଦିକ ସାହିତ୍ୟରେ ଗଦ୍ୟର ପ୍ରୟୋଗ ବହୁ ବ୍ୟାପକ । ଗଦ୍ୟର ପୂର୍ଣ୍ଣବିକାଶ ଉପନିଷଦ୍‌ମାନଙ୍କରେ ମିଳିଥାଏ । ଉପନିଷଦ୍‌ର ଗଦ୍ୟଗୁଡ଼ିକ ସରଳ; ତହିଁର ଭାବପ୍ରକାଶନର ଶୈଳୀ ସୁଗମ ଏବଂ ଭାବଗୁଡ଼ିକ ମଧ୍ୟ ଗାମ୍ଭୀର୍ଯ୍ୟପୂର୍ଣ୍ଣ ।

ଲୌକିକ ସଂସ୍କୃତରେ ସର୍ବପ୍ରଥମ ଗଦ୍ୟ ମହାଭାରତରେ ମିଳିଥାଏ । ତହିଁର ଗଦ୍ୟ ସରଳ, ସୁନ୍ଦର ଏବଂ ରୋଚକ । ଅନେକ ସ୍ଥାନରେ ଗଦ୍ୟ ମଧ୍ୟ ଅଳଙ୍କୃତ ଥିବାର ଲକ୍ଷିତ ହୁଏ । ସ୍ୱାଭାବିକତା ହେଉଛି ମହାଭାରତ ଗଦ୍ୟର ପ୍ରଧାନ ଗୁଣ । ସଂସ୍କୃତ ହିଁ ଭାରତବର୍ଷର ରାଜନୈତିକ, ଧାର୍ମିକ ଏବଂ ସାମାଜିକ ଭାଷା ଥିଲା । ସେଥିଯୋଗୁଁ କୌଟିଲ୍ୟଙ୍କ ଅର୍ଥଶାସ୍ତ୍ର, ଅନେକ ଶିଳାଲିପି ଏବଂ ମହାଭାଷ୍ୟ ପରି ବ୍ୟାକରଣ ଗ୍ରନ୍ଥ ମଧ୍ୟ ସଂସ୍କୃତ ଗଦ୍ୟରେ ଲେଖା ହୋଇଛି ବୋଲି ଆଶ୍ଚର୍ଯ୍ୟ ହେବାର କୌଣସି କାରଣ ନାହିଁ । କୌଟିଲ୍ୟଙ୍କ 'ଅର୍ଥଶାସ୍ତ୍ର'ର ଭାଷା ମୂଳଗ୍ରନ୍ଥ ପରି ସୂତ୍ରାକାରରେ ଲିଖିତ । ପତଞ୍ଜଳିଙ୍କର ମହାଭାଷ୍ୟର ଭାଷା ଅତି ପ୍ରାଞ୍ଜଳ ଓ ମନୋମୁଗ୍ଧକର ଏବଂ କଥୋପକଥନ ରୀତିରେ ଲିଖିତ । ସଂସ୍କୃତ ପୁରାଣମାନଙ୍କର ଗଦ୍ୟ ମଧ୍ୟ ସାଧାରଣ କୋଟିର; ସ୍ଥାନେ ସ୍ଥାନେ ସେହି ଗଦ୍ୟରେ ଭାଷା ସୌନ୍ଦର୍ଯ୍ୟମଣ୍ଡିତ ଓ ଅଳଙ୍କାରର ମଧ୍ୟ ସମାବେଶ

ତହିଁରେ ଲକ୍ଷିତ ହୁଏ । ସଂସ୍କୃତରେ ସମଗ୍ର ଦର୍ଶନଗ୍ରନ୍ଥ ଗଦ୍ୟରେ ଲିଖିତ ହୋଇଛି । ତହିଁରେ ଅର୍ଥପ୍ରକାଶନର ଯୋଗ୍ୟତା ସୁସ୍ପଷ୍ଟରୂପେ ବିଦ୍ୟମାନ । କିନ୍ତୁ ଦର୍ଶନଶାସ୍ତ୍ରରେ ଅର୍ଥର ଅଭିବ୍ୟକ୍ତି ହେଉଛି ଚରମ ଲକ୍ଷ୍ୟ; ତେଣୁ ଦର୍ଶନଶାସ୍ତ୍ର ରଚୟିତାମାନଙ୍କର ଦୃଷ୍ଟି ଓ ଧ୍ୟାନ ଶବ୍ଦ-ସୌନ୍ଦର୍ଯ୍ୟ ପ୍ରତି ବିଶେଷଭାବରେ ପ୍ରଦତ୍ତ ହୋଇନାହିଁ । ଏହି ଦାର୍ଶନିକମାନଙ୍କ ମଧ୍ୟରେ କୌଣସି କୌଣସି ଟୀକାକାରଙ୍କର ଗଦ୍ୟ, ବିଶୁଦ୍ଧି ସାହିତ୍ୟିକ ଗଦ୍ୟଭଳି ରସପେଶଳ ପରମରମଣୀୟ ଏବଂ ଚିତ୍ତାକର୍ଷକ । ଏହିପରି ଦାର୍ଶନିକ-ମାନଙ୍କ ମଧ୍ୟରେ ଶବର ସ୍ୱାମୀ, ଶଙ୍କରାଚାର୍ଯ୍ୟ ଏବଂ ଜୟନ୍ତ ଭଟ୍ଟ ହେଉଛନ୍ତି ପ୍ରଧାନ । ଶବର ସ୍ୱାମୀ ହେଉଛନ୍ତି ଜଣେ ପ୍ରୌଢ଼ ମୀମାଂସକ । ତାଙ୍କର ଗଦ୍ୟଶୈଳୀ ଯେପରି ସରଳ, ସେହିପରି ମଧ୍ୟ ରୁଚିକର । ଶଙ୍କରାଚାର୍ଯ୍ୟଙ୍କ ଗଦ୍ୟର ସୁଷମା ଅଲୌକିକ । ତାଙ୍କର ବାକ୍ୟମାନ ସାରଗର୍ଭିତ, ପୌଢ଼ ଏବଂ ପ୍ରାଞ୍ଜଳ । ବାଚସ୍ପତି ମିଶ୍ରଙ୍କ ପରି ପଣ୍ଡିତ ମଧ୍ୟ ଶଙ୍କରାଚାର୍ଯ୍ୟଙ୍କର ଗଦ୍ୟକୁ ପ୍ରସନ୍ନ ଗମ୍ଭୀର ବୋଲି କହିଛନ୍ତି । ତାଙ୍କର ଗଦ୍ୟ ବୀଣାର ମଧୁର ଝଙ୍କାରରେ ଝଙ୍କୃତ ହେଲାପରି ଶୁଣାଯାଏ ।

ଜୟନ୍ତ ଭଟ୍ଟ ନ୍ୟାୟଶାସ୍ତ୍ରର ଜଣେ ବିଖ୍ୟାତ ଆଚାର୍ଯ୍ୟ । ତାଙ୍କର ଗଦ୍ୟ ହେଉଛି ବଡ଼ ସୁନ୍ଦର, ସରସ ଏବଂ ପ୍ରାଞ୍ଜଳ । ତାଙ୍କର ମନୋହର ରୋଚକ ଗଦ୍ୟଶୈଳୀ ନ୍ୟାୟପରି କଠିନ ଗ୍ରନ୍ଥକୁ ମଧ୍ୟ ଅତି ସରସ ଏବଂ ରୋଚକ କରି ଦେଇଛି ।

ସଂସ୍କୃତ ସାହିତ୍ୟ ଗ୍ରନ୍ଥମାନଙ୍କରେ ନାଟକ, ଆଖ୍ୟାନ ପ୍ରଭୃତିରେ ସୁନ୍ଦର ସରଳ ମଧୁର ଏବଂ ଅଲଙ୍କୃତ ଗଦ୍ୟ ଦେଖିବାକୁ ମିଳେ ।

## ସଂସ୍କୃତ ଗଦ୍ୟ-କାବ୍ୟ

ସଂସ୍କୃତ ଗଦ୍ୟ-କାବ୍ୟର ଶୈଳୀ ଦଣ୍ଡୀ, ସୁବନ୍ଧୁ ଏବଂ ବାଣଙ୍କର ଗ୍ରନ୍ଥମାନଙ୍କରେ ପୂର୍ଣ୍ଣ ବିକଶିତ ରୂପରେ ମିଳିଥାଏ । ତହିଁର ସ୍ୱଳ୍ପରୂପ ବତ୍ସଭଟ୍ଟିଙ୍କ ଶିଳାଲେଖ ଏବଂ ହରିଷେଣଙ୍କର ପ୍ରଶସ୍ତିରେ ମଧ୍ୟ ମିଳିଥାଏ । ଏଥିରୁ ଅନୁମିତ ହୁଏ ଯେ, ଖ୍ରୀଷ୍ଟୀୟ ୬ଷ୍ଠ ଶତାବ୍ଦୀ ବେଳକୁ ଗଦ୍ୟ-କାବ୍ୟର ରୂପ ଓ ଶୈଳୀ ବିକଶିତ ହୋଇ ପୂର୍ଣ୍ଣତା ଲାଭ କରିଥିଲା । ସୁବନ୍ଧୁ ଓ ବାଣଭଟ୍ଟଙ୍କର ଗଦ୍ୟ-କାବ୍ୟମାନ ଆଖ୍ୟାୟିକା ଓ କଥାର ଅନ୍ତର୍ଗତ ।

## ସଂସ୍କୃତ ଗଦ୍ୟକାବ୍ୟର ଲକ୍ଷଣ ଓ ବିଶେଷତ୍ୱ

ସଂସ୍କୃତ ଆଳଙ୍କାରିକମାନେ ଗଦ୍ୟକାବ୍ୟର ଯେଉଁସବୁ ଲକ୍ଷଣ ଉଲ୍ଲିଖିତ କରିଛନ୍ତି, ଆଜକାଲିର ଗଦ୍ୟକାବ୍ୟରେ ସେସବୁ ଲକ୍ଷଣ ପୂର୍ଣ୍ଣମାତ୍ରାରେ ପ୍ରତିଫଳିତ ହୋଇଛି । "ଓଜଃ ସମାସଭୂୟସ୍ତ୍ୱମେତଦ୍ ଗଦ୍ୟସ୍ୟ ଜୀବିତମ୍"—ଓଜୋଗୁଣ ଏବଂ ସମାସର ବହୁଳତା ହେଉଛି ଗଦ୍ୟକାବ୍ୟର ଜୀବନ । ସଂସ୍କୃତ ଗଦ୍ୟକାବ୍ୟରେ ଲମ୍ବା ଲମ୍ବା, ଦୁରୁହ ସମାସର ପ୍ରୟୋଗ, ନିରନ୍ତର ବିସ୍ତୃତ ଶ୍ଳେଷାଳଙ୍କାର, ଯମକ, ଅନୁପ୍ରାସ, ଉପମା, ଉତ୍ପ୍ରେକ୍ଷା, ପରିସଂଖ୍ୟା ପ୍ରଭୃତି ଅଳଙ୍କାରମାନଙ୍କ ପ୍ରୟୋଗ ପୂର୍ଣ୍ଣମାତ୍ରାରେ ରହିଥାଏ । ଏହି ଅଳଙ୍କାରମାନଙ୍କର ପ୍ରୟୋଗ ସଙ୍ଗେ ସଙ୍ଗେ ପ୍ରକୃତିର ସୂକ୍ଷ୍ମ ବର୍ଣ୍ଣନ, ପୁରୁଷ ଓ ନାରୀର ମାନସିକ ନୈତିକ ଏବଂ ଶାରୀରିକ ଗୁଣମାନଙ୍କର ଏବଂ ନାୟକନାୟିକାଙ୍କର ରୂପବର୍ଣ୍ଣନାରେ ସମ୍ଭୋଗ ଓ ବିପ୍ରଲମ୍ଭ ଶୃଙ୍ଗାରର ଓ ହାବଭାବ ପ୍ରଭୃତିର ବର୍ଣ୍ଣନ ବିସ୍ତୃତ-ଭାବରେ ହୋଇଥାଏ । କାବ୍ୟର ବିଷୟବସ୍ତୁରେ ପ୍ରେମ ଏବଂ ଅନ୍ୟାନ୍ୟ କାମକ୍ରୀଡ଼ା ପ୍ରଭୃତିର ବର୍ଣ୍ଣନ ମଧ୍ୟ ସ୍ଥାନଲାଭ କରିଥାଏ । କଥାବସ୍ତୁରେ କଥା ଓ ଘଟଣାର ବର୍ଣ୍ଣନ ଅଳ୍ପଭାବରେ ରହିଥାଏ । ଏଥିରେ ପ୍ରାକୃତିକ ଦୃଶ୍ୟର ବର୍ଣ୍ଣନ ମଧ୍ୟ ପ୍ରାଚୁର୍ଯ୍ୟଲାଭ କରିଥାଏ; କିନ୍ତୁ କଥାବସ୍ତୁ ବା କାହାଣୀଟି କ୍ଷୀଣ ସୂତ୍ରାକାରରେ ରହିଥାଏ ।

"ଗଦ୍ୟଂ କବୀନାଂ ନିକଷଂ ବଦନ୍ତି ।"

"ଗଦ୍ୟ ହେଉଛି କବିଙ୍କର କଷଟି ପଥର ।" ଏହି ଉକ୍ତିରୁ ସହଜରେ ଜଣାପଡ଼େ ଯେ ଗଦ୍ୟକାବ୍ୟର ସୃଷ୍ଟି ଲାଗି କବିଙ୍କର ପ୍ରଯତ୍ନ ଅତି କ୍ଷୀଣ ଥିଲା । ପଦ୍ୟରେ ଯେଉଁ ପ୍ରକାରର ମାଦକତା, ଶ୍ରୁତିମାଧୁର୍ଯ୍ୟ ମିଳିଥାଏ, ତାହା ଗଦ୍ୟରେ ସମ୍ଭବପର ହୁଏ ନାହିଁ । ଗଦ୍ୟ ଲେଖକଙ୍କୁ ପଦ୍ୟକାବ୍ୟର ସୌଷ୍ଠବ ଓ ମାଧୁର୍ଯ୍ୟ ସୃଷ୍ଟି କରିବାଲାଗି ବହୁତ ଆୟାସ ଓ ପ୍ରଯତ୍ନ କରିବାକୁ ପଡ଼ିଥାଏ । ପଦ୍ୟବଦ୍ଧ ବା ଛନ୍ଦୋବଦ୍ଧ ଗ୍ରନ୍ଥ ଶୀଘ୍ର କଣ୍ଠସ୍ଥ ହୋଇ ସ୍ମୃତିରେ ବହୁଦିନ ଅଙ୍କିତ ହୋଇ ରହିପାରେ । ଛନ୍ଦର ମାଧ୍ୟମ ପଦ୍ୟକାବ୍ୟକୁ ସଙ୍ଗୀତମୟ ଏବଂ ଲଘୁକାୟ ମଧ୍ୟ କରିଥାଏ । ପଦ୍ୟ ଲେଖିବାରେ ମଧ୍ୟ ଅଳ୍ପ ପରିଶ୍ରମ ହୋଇଥାଏ । ସମସ୍ତେ ଏହି ଶ୍ରମ ଲାଘବ-

ଲାଗି ପ୍ରସନ୍ନ କରନ୍ତି । ଗ୍ଧାର ଆଶ୍ରୟ କରିବାରୁ କବିଙ୍କୁ ଅଳ୍ପରେ ସଂକ୍ଷେପରେ ନିଜର ଯୁକ୍ତି ଓ ଭାବର ପ୍ରଦର୍ଶନ ସକାଶେ ଅବସର ମିଳିଥାଏ । ଏହିପରି କାରଣରୁ କବିମାନଙ୍କର ଗଦ୍ୟପ୍ରତି ବିଶେଷ ପକ୍ଷପାତ ରହିଥାଏ । ତେଣୁ ଗଦ୍ୟକାବ୍ୟ ଲେଖିବା ସକାଶେ କବି-ମାନଙ୍କର ଆଗ୍ରହ ଓ ପ୍ରବୃତ୍ତି ଯେ ଅତି କ୍ଷୀଣ ହୋଇଥାଏ, ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି କାରଣ ନାହିଁ । ଅନୁଭବରୁ ଜଣାଯାଏ ଯେ ଗଦ୍ୟ ଓ ପଦ୍ୟର ଆନନ୍ଦ, ମାଧୁର୍ଯ୍ୟ ଏବଂ ସୌନ୍ଦର୍ଯ୍ୟବୋଧ ଭିନ୍ନ ଭିନ୍ନ ପ୍ରକାରର । ପଦ୍ୟରେ ଯେପରି ଅଳ୍ପକାଳରେ ରସାସ୍ୱାଦବୋଧ ଏବଂ ପଦ୍ୟର ସୌଷ୍ଠବଜନିତ ଆନନ୍ଦ ଓ ମାଧୁର୍ଯ୍ୟର ଉପଲବ୍ଧି ହୋଇଥାଏ, ଗଦ୍ୟରେ ତାହା ସେପରି ସହଜରେ ହୁଏ ନାହିଁ ।

ଏହିସବୁ କାରଣରୁ ପୁରାତନ ସାହିତ୍ୟରେ ରସବୋଧର ସୂକ୍ଷ୍ମ ମାଧ୍ୟମ ରୂପରେ ପଦ୍ୟ କେବଳ ସ୍ୱୀକୃତ ହୋଇଥିଲା । ସମସ୍ତେ ଛନ୍ଦୋବଦ୍ଧ କାବ୍ୟରସାମୃତ ପାନକରି ତୃପ୍ତିଲାଭ କରୁଥିଲେ । ତେଣୁ ପ୍ରାଚୀନ କାଳରେ କବି ଓ ଲେଖକମାନେ ଗଦ୍ୟ ରଚନା କରିବାକୁ ପ୍ରୟାସୀ ହେଉ ନ ଥିଲେ । ଏହା ସୁନିଶ୍ଚିତ କଥା ଯେ ଗଦ୍ୟ-ସାହିତ୍ୟର କ୍ଷେତ୍ର ବିସ୍ତୃତ । ଗଦ୍ୟ-ସାହିତ୍ୟର ଧାରା, ଗଠନ ପ୍ରଣାଳୀ, ପଦ୍ଧତି ଓ ସ୍ୱରୂପ ପଦ୍ୟର ଧାରା, ଗଠନ ପ୍ରଣାଳୀ, ପଦ୍ଧତି ଓ ସ୍ୱରୂପଠାରୁ ମୌଳିକ ଗୁଣରେ ଭିନ୍ନ ଓ ବିଚ୍ଛିନ୍ନ । ପଦ୍ୟରଚନାରେ କଳ୍ପନାର ପ୍ରାଚୁର୍ଯ୍ୟ; କିନ୍ତୁ ଗଦ୍ୟରଚନାରେ ଯୁକ୍ତି, ବିଚାରଶୀଳତା, ବିଶ୍ଳେଷଣ ଏବଂ ସଂଶ୍ଳେଷଣର ପ୍ରାଚୁର୍ଯ୍ୟ ଲକ୍ଷିତ ହୁଏ । ନୀରସ ଶୁଷ୍କ ଗଦ୍ୟ-ସାହିତ୍ୟରେ ଏହି କଳ୍ପନା ଓ ମାଧୁର୍ଯ୍ୟ ସୁରକ୍ଷିତ ହୋଇପାରେ ନାହିଁ । ରସହିଁ କାବ୍ୟର ଆତ୍ମା । ରସର ବିଶ୍ଳେଷଣ ମଧ୍ୟ ପଦ୍ୟରେ ସମ୍ଭବପର; କିନ୍ତୁ ଗଦ୍ୟରେ ଏହି ରସ ନିବିଡ଼ତା ଓ ରସୋଦ୍‌ବୋଧ ରକ୍ଷା କରିଯାଇପାରେ ନାହିଁ । ଏହିସବୁ କାରଣରୁ ପ୍ରାଚୀନ କାଳରେ ସଂସ୍କୃତରେ ଗଦ୍ୟର ପ୍ରୟୋଗ ଓ ବ୍ୟବହାର ବହୁଳ ନ ଥିଲା ।

ପ୍ରାଚୀନ କାଳରେ ସଂସ୍କୃତର ଆଦର୍ଶ ଅବଲମ୍ବନ କରି ଓଡ଼ିଆରେ କବିମାନେ ପଦ୍ୟ, କବିତା, କାବ୍ୟ, ଗଦ୍ୟ ରଚନାମାନ ପ୍ରଣୟନ କରିଥିଲେ । ସେଥିଲାଗି ଏଠାରେ ସଂସ୍କୃତର ଗଦ୍ୟ ଏବଂ ଗଦ୍ୟକାବ୍ୟର

ଇତିହାସ ସଂକ୍ଷେପରେ ପ୍ରଦତ୍ତ ହେଲା । ସଂସ୍କୃତ ସାହିତ୍ୟର ଗଦ୍ୟ ଏବଂ ଗଦ୍ୟକାବ୍ୟର ଇତିହାସ ଓଡ଼ିଆ ଗଦ୍ୟକାବ୍ୟର ପରୀକ୍ଷଣ ଓ ସମାଲୋଚନାରେ ବିଶେଷ ସହାୟତା କରିବ ବୋଲି ଆଶା ।

## ଗ୍ରନ୍ଥପ୍ରାପ୍ତି

୧୯୩୭ ସାଲରେ ମୁଁ କୋଣାର୍କ ଯାଉଥିଲି । ବାଟରେ ନିମାପଡ଼ା ଟୋଲରେ ଦୁଇପହର ଅତିବାହିତ କଲି । ସେ ସମୟରେ ପୋଥି ସଂଗ୍ରହ କରିବା ମୋର ପ୍ରଧାନ କାର୍ଯ୍ୟ ଥିଲା । ମୁଁ ସଂସ୍କୃତ ଟୋଲର ପଣ୍ଡିତଙ୍କୁ ପୋଥି କଥା ପଚାରିବାରୁ ସେ ମୋତେ 'ରୁଦ୍ରସୁଧାନିଧି' ପୋଥି ଖଣ୍ଡିଏ ଦେଲେ । ତାହାର ଅକ୍ଷର ଅତି ପ୍ରାଚୀନ ଧରଣର । ସେ ପୋଥି ପଢ଼ିବା ମୋ ପକ୍ଷରେ ବଡ଼ କଷ୍ଟକର ହେଲା । ତଥାପି ମୁଁ ଅନେକ ପଣ୍ଡିତଙ୍କ ସାହାଯ୍ୟରେ ସେ ପୋଥିଟି ନକଲ କଲି । ପଣ୍ଡିତ ମହାଶୟ ଆସି ତାଙ୍କର ପୋଥି ନେଇଗଲେ । ତାଙ୍କର ଗୃହଦାହରେ ସେ ପୋଥିଟି ନଷ୍ଟ ହୋଇଗଲା । ମୁଁ ମୋ ଗୁରୁ ଆର୍ତ୍ତବାବୁଙ୍କୁ ସେ ନକଲଟି ଦେଖାଇବାରୁ ସେ ସେଥିରୁ କେତେକ ଅଂଶ ନେଇ "ପ୍ରାଚୀନ ଗଦ୍ୟ-ପଦ୍ୟାଦର୍ଶରେ" ସଂଯୋଜିତ କରିଥିଲେ । ସାତ ଆଠ ବର୍ଷପରେ ମୁଁ ପୋଥି ଖୋଜୁ ଖୋଜୁ କଟକ ଜିଲାର ବେଦନାପୁର ଶାସନରେ ଖଣ୍ଡିଏ 'ରୁଦ୍ରସୁଧାନିଧି' ପୋଥି ପାଇଲି । ଏହି ପୋଥିକୁ ପୂର୍ବ ନକଲ ସହିତ ତୁଳନା କରି ଦୁହିଁଙ୍କର ପାଠ ଦେଇଛୁ ଏବଂ ଏ ପୋଥିଟିକୁ ଉତ୍କଳ ବିଶ୍ୱବିଦ୍ୟାଳୟକୁ ମୋ ସଂଗୃହୀତ ଅନ୍ୟାନ୍ୟ ପୋଥି ସହିତ ଦେଇଦେଇଛୁ । ପ୍ରଥମ ପୋଥିଟି 'କ' ପୁସ୍ତକ ଏବଂ ଦ୍ୱିତୀୟଟି 'ଖ' ପୁସ୍ତକରୂପେ ନିର୍ଦ୍ଦେଶିତ ହୋଇଅଛି । ଦୁଃଖର କଥା, ଏ ଦୁଇଟିଯାକ ପୋଥି ଅସମ୍ପୂର୍ଣ୍ଣ । 'ରୁଦ୍ରସୁଧାନିଧି' ଗ୍ରନ୍ଥଟି ଅଦ୍ୱିତୀୟ, ଅପୂର୍ବ ହେଲେ ମଧ୍ୟ ଗ୍ରନ୍ଥ ଅସମ୍ପୂର୍ଣ୍ଣ ରହିଯାଇଛି । ପୂର୍ବେ ସଂସ୍କୃତ ସାହିତ୍ୟ ଓଡ଼ିଆ ଭାଷାର ଏକମାତ୍ର ଆଦର୍ଶ ଥିଲା । ସଂସ୍କୃତର ଆଦର୍ଶରେ ଓଡ଼ିଆ ଭାଷାରେ ପଦ୍ୟ, କାବ୍ୟ, ଭଜନ ପ୍ରଭୃତି ଲିଖିତ ହୋଇଥିଲା ।

'ରୁଦ୍ରସୁଧାନିଧି' ହେଉଛି ଓଡ଼ିଆ ଭାଷାରେ ଗୋଟିଏ ଗଦ୍ୟାତ୍ମକ କାବ୍ୟ । ସଂସ୍କୃତରେ ଗଦ୍ୟାତ୍ମକ କାବ୍ୟମାନଙ୍କରେ ଯେଉଁସବୁ ଲକ୍ଷଣ

ଲକ୍ଷିତ ହୁଏ, ତାହା ପୂର୍ବରେ ଆଲୋଚିତ ହୋଇଛି । 'ରୁଦ୍ରସୁଧାନିଧି'ରେ ସେହିସବୁ ଲକ୍ଷଣ ପୂର୍ଣ୍ଣମାତ୍ରାରେ ରକ୍ଷିତ ହୋଇଛି । କିନ୍ତୁ ଏହି ଅଭିନବ ଓଡ଼ିଆ ଗଦ୍ୟକାବ୍ୟରେ ସଂସ୍କୃତ ଗଦ୍ୟକାବ୍ୟର ସମାସବହୁଳତା ନାହିଁ କି ଶ୍ଳେଷର ପ୍ରାଚୁର୍ଯ୍ୟ ନାହିଁ । ତେଣୁ ଏହା ସୁପାଠ୍ୟ, ସୁଶ୍ରାବ୍ୟ, ରୁଚିକର ଓ ସହଜବୋଧ ହୋଇଛି । ଏଥିରେ ଅନୁପ୍ରାସ ପଦେ ପଦେ ଲକ୍ଷିତ ହୁଏ । 'ରୁଦ୍ରସୁଧାନିଧି'ର ଭାଷା ହେଉଛି—ପଦ୍ୟାତ୍ମକ ଗଦ୍ୟ । ପ୍ରତି ପଦରେ ପଦ୍ୟର ସନ୍ଧ ଥିବାପରି ବୋଧହୁଏ । ତେଣୁ କେହି କେହି ଏହାକୁ 'ପଦ୍ୟ' ବୋଲି ଅଭିହିତ ଓ ପ୍ରମାଣିତ କରିବାକୁ ପ୍ରୟାସ କରିଛନ୍ତି । କିନ୍ତୁ ଆମୂଳଚୂଳ ପାଠକଲେ ସହଜରେ ପ୍ରତୀତ ହୁଏ ଯେ, 'ରୁଦ୍ରସୁଧାନିଧି' ଗଦ୍ୟରେହିଁ ଲିଖିତ । ଏହାର ଭାଷା ଅତି ସରସ—ଅତି ସୁଲଳିତ, ମଧୁର । କାନ୍ତକୋମଳ ପଦାବଳୀରେ ଏହି ଗଦ୍ୟକାବ୍ୟଟି ଲିଖିତ । ଏଥିର ଭାଷା ଅତି ସରଳ ତରଳ ଓ ମନୋମୁଗ୍ଧକର । ଏହିପରି ଗଦ୍ୟକାବ୍ୟ ଆଜିପର୍ଯ୍ୟନ୍ତ ଓଡ଼ିଆ ସାହିତ୍ୟରେ ମିଳିନାହିଁ । 'ରୁଦ୍ରସୁଧାନିଧି' ପୂର୍ବରୁ ଏହି ଜାତୀୟ ଗଦ୍ୟକାବ୍ୟ ଓଡ଼ିଆ ସାହିତ୍ୟରେ ନ ଥିଲା ଏବଂ ତତ୍ପରେ ମଧ୍ୟ ଆଧୁନିକ ଯୁଗ ପର୍ଯ୍ୟନ୍ତ ଏହିପରି ଗଦ୍ୟକାବ୍ୟ ରଚିତ ହୋଇନାହିଁ । ଭାରତର ଅନ୍ୟାନ୍ୟ ପ୍ରାଦେଶିକ ଭାଷାମାନଙ୍କରେ ମଧ୍ୟ ଏପରି ଅପୂର୍ବ ଗଦ୍ୟକାବ୍ୟ ନାହିଁ, କହିଲେ ଚଳେ । ତେଣୁ 'ରୁଦ୍ରସୁଧାନିଧି' ହେଉଛି ଓଡ଼ିଶାରେ ଏକ ଅଭୂତପୂର୍ବ ଅତୁଳନୀୟ ଅଭିନବ ଗଦ୍ୟକାବ୍ୟ । 'ରୁଦ୍ରସୁଧାନିଧି' କେବଳ ନିଜେ ନିଜର ତୁଳନା; ତେଣୁ ଓଡ଼ିଆ ଗଦ୍ୟ-ସାହିତ୍ୟରେ ଏହା ଏକ ସ୍ୱତନ୍ତ୍ର ସ୍ଥାନ ଅଧିକାର କରିଥାଏ । ଏହାର ଭାଷା ମଧ୍ୟ ତଦ୍ରୂପ । ଏଥିରେ ଗଦ୍ୟର ନିରାଡ଼ମ୍ବର କର୍କଶ, କଠିନ ସ୍ୱରୂପ ଅପେକ୍ଷା କବିତ୍ୱର ଆଧିକ୍ୟ ଏବଂ କମନୀୟତା ଓ କୋମଳତା ପରିପୂର୍ଣ୍ଣମାତ୍ରାରେ ପ୍ରତିଫଳିତ ହୋଇଛି ।

## ବିଷୟ-ବସ୍ତୁ

ଥରେ ମହାଦେବ କୈଳାସରେ ପାର୍ବତୀଙ୍କ ସହିତ ବସିଛନ୍ତି । ସିଦ୍ଧ ରୁଦ୍ରମାନେ ତାଙ୍କ ଗୃହ ପାର୍ଶ୍ୱରେ ଘେରି ରହିଥାନ୍ତି । ଏହି ସମୟରେ ମହାଦେବ ସିଦ୍ଧ ରୁଦ୍ରମାନଙ୍କର ଅନ୍ତର୍ଗତ ଦୋଷାଦୋଷ ପରୀକ୍ଷା କରି

ଜାଣିବା ପାଇଁ ପାର୍ବତୀଙ୍କୁ ଅନୁରୋଧ କରି କହିଲେ, "ତୁମ୍ଭେ ଏପରି ଏକ ଅପୂର୍ବ ମୋହିନୀକନ୍ୟା ସୃଷ୍ଟି କର—ଯେ କ୍ଷଣକରେ ଏ ସିଦ୍ଧ ରୁଦ୍ରଗଣଙ୍କର ଜ୍ଞାନକୁ ଧ୍ୱଂସ କରିଦେଇ ପାରିବ ।" ମହାଦେବଙ୍କ ଅନୁରୋଧରେ ପାର୍ବତୀ ଏକ ଅପୂର୍ବ ସୁନ୍ଦରୀ ଯୁବତୀ ମୋହିନୀକନ୍ୟା ମନରୁ ଜାତ କରାଇଲେ । ଏ ଅପୂର୍ବ ସୁନ୍ଦରୀ କନ୍ୟା ଦେଖି ସିଦ୍ଧ ରୁଦ୍ରମାନଙ୍କର ମନ ବିକ୍ଷୋଭିତ ଓ ଚଞ୍ଚଳ ହୋଇପଡ଼ିଲା । କିନ୍ତୁ ସେମାନେ ନିଜ ନିଜ ମନକୁ ସଂଯତ କରି-ପାରିଥିଲେ । ସେମାନଙ୍କ ମଧ୍ୟରୁ ଅଭିନବ ଚୈତନ୍ୟ ନାମରେ ଜଣେ ସିଦ୍ଧ ରୁଦ୍ର ଏ କନ୍ୟାକୁ ଦେଖି ନିଜକୁ ସମ୍ଭାଳି ପାରିଲେ ନାହିଁ । ତାଙ୍କର ମନ, ନୟନ, ବଚନ ସେ କନ୍ୟା ରୂପରେ ଲାଗି ରହିଲା । ତାଙ୍କର ଚିତ୍ତ ସ୍ଥିର ହୋଇ ରହିପାରିଲା ନାହିଁ । 'ଅଭିନବ ଚୈତନ୍ୟ'ଙ୍କର ଏ ଅବସ୍ଥା ଦେଖି ମହାଦେବ ତାଙ୍କୁ କହିଲେ, "ତୁମ୍ଭର ଯୋଗଭ୍ରଷ୍ଟ ହେଲା—ଯେବେ ଭୂଭର୍ମ ନରେନ୍ଦ୍ର କୋଳେ ଜନ୍ମ ହୋଇ ଆସମୁଦ୍ର ପୃଥ୍ୱୀ ଭୋଗ କରି ଯାଇ— । ଯେବେ କନ୍ୟାକୁ ପାଇବୁ ତୁହି । ଶରୀର ଗ୍ରହଣ ବିନେ ଏକ ଆନେ ଭୋଗ୍ୟ ନାହିଁ । ସ୍ୱାଧୀ ନାହିଁ । ଜାଣୁ ସାଧୁ ଯେବେ ପତନ ହୋଏ ନାଏ, କେ ଶମ୍ଭୁଲିଙ୍ଗକେ ନୃପତି ହୋଏ । ଏବମ୍ଭୂତ ଶୁଣିଲା ଯହୁଁ, ଈଶ୍ୱରର ଚହୁଁ ଅମୋହ ବଚନ । ଧାଡିକାରେ ବସିଲା ନିଜ ଚଇତନ । ସେ ଜନ୍ମକଥା ସୁମରିଲା । ଘୋର ନର୍କ ବିସରିଲା । ମନ ବୁଦ୍ଧି ଚମକିଲା, ଶରୀର ବାତେ କଦଳୀ ପ୍ରାଏ କମ୍ପିଲା । × × × । ଜନ୍ମ ମରଣ ଜରାଖ୍ୟାତେ, ବ୍ୟାକୁଳ ଚିତ୍ତେ ଚନ୍ଦ୍ରଶେଖର ସ୍ୱାମୀରେ ଉଦ୍ଧରିହୋଇ ମହାଭୟେ ପାଇ କରପଦ୍ମ ଯୋଡ଼ି ଥିର କରି କହିଲା ବ୍ୟଗ୍ରତା ଚିତ୍ତ ଘୁଡ଼ି । ଭୋ ସ୍ୱାମୀ ତୋହର ପଦାରବିନ୍ଦକୁ ଆଶ୍ରେ କରି ମୁଁ ଭ୍ରମ ହୋଇଲି ଯଦ୍ୟପି ମୋତେ ମହାଘୋର ନର୍କକୁ ଦେଇଅଛ ସମର୍ପି । ଭୋ ଦେବ କେବଣ ସେ ଦାରୁଣ ବଚନ ଦେଲୁ ଅଜ୍ଞା । ତହୁଁ ଚଉଦଶ ଭୁବନେ କେ କରିପାରେ ଅବଜ୍ଞା ।"

"କ୍ଷୀରସିନ୍ଧୁ ପାଶ୍ଚୁଣେ ମଇଳଣ ଦେଶେ ଅମୃତତୋୟ ନଦୀର ପଂଶେ ଏକ କଟକ ଅଛି । ସେ କଟକର ନାମ ବସୁଧାମଣ୍ଡନ । × × × ସେ ରାଜ୍ୟରେ ରାଜାଙ୍କ ନାମ ଅନଙ୍ଗ ପଦ୍ମାକର । ପାଟ-ମହିଷୀର ନାମ ଶଶୀପ୍ରଭା ।" ଅଭିନବ ଚଇତନ ପାଟମହିଷୀ ଶଶୀପ୍ରଭାଙ୍କ

ଗର୍ଭରେ ଜନ୍ମଗ୍ରହଣ କଲେ । ତାଙ୍କର ନାମ ହେଲ—ରୁଦ୍ର ସୁଧାନିଧି । ସେ ମୋହିନୀକନ୍ୟା "ଈଶ୍ୱର ଆଜ୍ଞାରୁ କରି ସର୍ବଦା ନବଯୌବନ ସିଦ୍ଧ ହୋଇଲ । ମାନସରୋବରର କୂଳେ ତପ କରୁଥାଅ ବୋଲି ଆଜ୍ଞା ହୋଇଲ । ଥୋଇଥାଏ ଧନ ଥିବୁ ଯେ—ଧର୍ମଧ୍ୱଜ ରାଜାର ଦୁହିତା ହୋଇବୁ । ତଦନନ୍ତରେ ତୋହର ଭର୍ତ୍ତାକୁ ପାଇବୁ ।

× × × ×

ପୃଥ୍ୱୀତଳେକ ବୋଲି କଣ୍ଟକେକ ବସିଲ । ସେ କଣ୍ଟକେ ଧର୍ମଧ୍ୱଜ ବୋଲି ରାଜା ଏକ ହୋଇ । × × × ×

ସେ ରାଜାର ପାଟମନ୍ତ୍ରୀ କୋକିଳାବର୍ଷ ଲକ୍ଷ୍ମୀଙ୍କ ଅନେକ ସେବା କରିଥାଇ । × × ଲକ୍ଷ୍ମୀ ଦେବୀ ପ୍ରସନ୍ନ ହୋଇଲେ । ଲକ୍ଷ୍ମୀ ବୋଇଲେ—"ମୋହର ପ୍ରାପ୍ତେକ ହୋଇ ମୂର୍ତ୍ତି ସେ ଅଛୁ । ଆରେକ ଅବତାରେ ପାର୍ବତୀ ଦେହରୁ ଜାତ କରିଅଛୁ । ତୋହର ଭକ୍ତିବଳେ ତାହାକୁ ଦେବ ଗୋ ମୃଗାକ୍ଷି । ଏ ଯନ୍ତ୍ର ବଦ୍ଧିର—ମୃତ ସଞ୍ଜୀବ କରଣୀ କନ୍ୟାର ହାତ ଧରି × — × "ତୋହର ଭକ୍ତିବଳେ କରି ମୁଁ ତୋତେ ଏହାକୁ ଦେଲି ଝିଅ କରି । ଇତ୍ୟାଦି ।" ରୁଦ୍ର ସୁଧାନିଧି ଏବଂ ମୃତ ସଞ୍ଜୀବ କରଣୀ କନ୍ୟାର ବିବାହ ଓ ମିଳନ ହୋଇଛି 'ରୁଦ୍ରସୁଧାନିଧି' ଗ୍ରନ୍ଥର ପ୍ରତିପାଦ୍ୟ ବିଷୟ ।

'ରୁଦ୍ରସୁଧାନିଧି' ଓଡ଼ିଆ ସାହିତ୍ୟରେ କାବ୍ୟାତ୍ମକ ଗଦ୍ୟକାବ୍ୟ । ପ୍ରଥମ ହେଲେ ମଧ୍ୟ ଏଥିର ଲେଖାଶୈଳୀ ଅତି ମନୋମୁଗ୍ଧକର ଏବଂ ପରିପକ୍ୱ । ବର୍ଣ୍ଣନାତ୍ମକ ଗଦ୍ୟର ଉଦାହରଣସ୍ୱରୂପ 'ରୁଦ୍ରସୁଧାନିଧି'ରୁ କେତେକ ଅଂଶ ଉଦ୍ଧୃତ ନ କରି ରହିହେଉନାହିଁ ।

## ପ୍ରକୃତି ବର୍ଣ୍ଣନା

ସ୍ୱର୍ଗ ପାରୁଶରେ କ୍ଷୀର ସମୁଦ୍ର ଲହରୀ ମାରୁଅଛି । ଅମୃତ ସମୁଦ୍ର ଭିତରେ ଶ୍ୱେତହସ୍ତୀ ଗୋଟାଏ ପଶିଲା ପରାଏ ଶୋଭା ପାଉଅଛି । ଚନ୍ଦ୍ରସୂର୍ଯ୍ୟ ସେ ଦୁଇପାଶେ ଘଣ୍ଟା ପରାଏ ରହିଅଛନ୍ତି । ନକ୍ଷତ୍ରମାନେ ସେ ହସ୍ତୀର

ଉପରେ ପୁଷ୍ପବୃଷ୍ଟି କଲାପରି ଦିଶୁଅଛି । ସେ ମେଖଳା ପର୍ଯ୍ୟନ୍ତ ସନ୍ଧ୍ୟା ମେଘମାନେ ନାନା ବର୍ଣ୍ଣ ଧରି ବିଚରନ୍ତେ ବିବିଧ ପ୍ରକାରେ ହସ୍ତୀଙ୍କ ମଣ୍ଡିଲି ପରି ଶୋଭା ଦିଶୁଅଛି । ପଶ୍ଚିମ ଦିଗ ସନ୍ଧ୍ୟାରେ ରକ୍ତ ହୁଅନ୍ତେ ଗଜକୁମ୍ଭରେ ସିନ୍ଦୁର ମଣ୍ଡିଲି ପରି ଶୋଭା ଦିଶୁଅଛି । ଏମନ୍ତେ ସେ ପର୍ବତରେ ମାନସରୋବର ବୋଲି ସରୋବରେକ ଅଛି । ଚନ୍ଦ୍ର ଦେବତା ଜନ୍ମ ହୋଇ ସେହି ବାଟେ ପାତାଳକୁ ଯାନ୍ତି । ସେ ସରୋବର ଚନ୍ଦ୍ରମା ପ୍ରାୟେ ଉଜ୍ଜ୍ୱଳ ଅଟଇ । ଆକାଶ ଗଙ୍ଗା ସଙ୍ଗମ ଅଟଇ । ସେ ସଂଗମରେ ସ୍ନାନ କରନ୍ତେ ଦେବତା ହୋଇ । ସେ ପର୍ବତ ଉପରେ ସରୋବର କୂଳେ ବୃଷଭ ଠୋଟାଏ ଅଛି । ସେ ସୁବର୍ଣ୍ଣ ବୃଷଭର ଶିଙ୍ଗ ଦୁଇ ମାଣିକ୍ୟର । ସେ ଶିଙ୍ଗର ତେଜ ବାଳ ଆଦିତ୍ୟ ପ୍ରାୟ, ପର୍ବତେ ପ୍ରତିବିମ୍ବ ହିଗନ୍ତେ ହସ୍ତୀର ଦୁଇ ପାର୍ଶ୍ୱରେ ଦୁଇ ପତାଙ୍ଗରେଖା ପ୍ରାୟେ ଦିଶୁଅଛି । ସେ ବୃଷଭର ଚକ୍ଷୁ ଦ୍ୱୟ ମର୍କତ ଅଟଇ । ବଜ୍ରୁଲି ଯାନ୍ତି ପ୍ରାୟେ ଜିହ୍ୱା ଅଟଇ ।"

ଏହି ଉଦ୍ଧୃତାଂଶରେ କବି ଉପମା, ରୂପକ, ଉତ୍ପ୍ରେକ୍ଷା, ଅନୁପ୍ରାସ ବିସ୍ମୃତଭାବରେ ବ୍ୟବହାର କରି ପଦ୍ୟର ଧର୍ମ ଗଦ୍ୟରେ ପ୍ରତିଫଳିତ କରିଛନ୍ତି । ପଦ୍ୟ ରଚନାରେ କାବ୍ୟର ବର୍ଣ୍ଣନାଭିଭୂତି, ଶୈଳୀ, କୌଶଳ ପଦମାଧୁରୀ, କଳ୍ପନାବିଳାସ ପ୍ରଭୃତି ଯେପରି ଅଲଙ୍ଘନୀୟ ବିଧି, ନାରାୟଣାନନ୍ଦ ଏହି ଗଦ୍ୟ କାବ୍ୟରେ ସେହିସବୁ ଅକ୍ଷରେ ଅକ୍ଷରେ ପ୍ରତିପାଳନ କରି ଗଦ୍ୟ ଛନ୍ଦକୁ ପଦ୍ୟକାବ୍ୟାତ୍ମକ ଭାବରେ ରଚନା କରିଛନ୍ତି ।

## ପ୍ରାତଃକାଳ ବର୍ଣ୍ଣନା

"କଇଁବନେ ରସିକ ଭ୍ରମରେ ପଦ୍ମବନକୁ ଗମିଲେ । କୁମୁଦ ପରାଗେ ଧୂସର ହୁଅନ୍ତି, ଭ୍ରମରନ୍ତି ଦେଖି ପ୍ରାତବାତେ କମ୍ପିଲି ପଦ୍ମେ ନାହିଁ ନାହିଁ କଲା ପ୍ରାୟେ ଦିଶିଲେ । *

* ଏହା ଭଟ୍ଟି ମହାକାବ୍ୟର ଗୋଟିଏ ଶ୍ଲୋକର ଗ୍ରନ୍ଥନ; ଯଥା—

ପ୍ରଭାତବାତାହତ କମ୍ପିତାକୃତିଃ କୁମୁଦ୍ୱତୀ ରେଣୁ ପିଶଙ୍ଗ ବିଗ୍ରହଃ
ନିରାସ ଭୃଙ୍ଗଂ କୁପିତେବ ମାନଜୀ ନ ମାନନୀଙ୍ଗଂ ସହତେନ୍ୟସଙ୍ଗମ୍ ॥

ଜଳଚର ପକ୍ଷୀ ଅନ୍ଧକାର ସ୍ଥାନରେ ପଶିଲେ । ଶଙ୍ଖଧ୍ୱନିମାନ ବହୁଦିଗ ପୂରିଲେ । କାମୁକୀ ସ୍ତ୍ରୀମାନେ ଭର୍ତ୍ତାଙ୍କ ନିବିଡ଼ ଆଲିଙ୍ଗନ ଗ୍ରହିଲେ । ଚକ୍ରପକ୍ଷୀ ବିଷାଦ ପାଇଲେ । ଚନ୍ଦ୍ରମା ଧୂସର ହୋଇଲା । ଉଷ୍ଣ ଶାର୍ଦ୍ଦୂଳ ବନରେ ଉଚ୍ଚକ୍ରମଣ ବେଗ କଲା ସ୍ତ୍ରୀଙ୍କର ବଦନ ପଦ୍ମ ଶୋଭିଲା । କୁକ୍କୁଟେ ରଡ଼ିଲେ ଇତ୍ୟାଦି ।”

ଏହି ପ୍ରାକୃତିକ ବର୍ଣ୍ଣନା ଯେପରି ନୈସର୍ଗିକ, ସେପରି ସରଳ ଓ ତରଳ । ଏଥିର ଭାଷା ମଧ୍ୟ ଅତି ସରଳ, କୋମଳ, ମଧୁର ଏବଂ ଉଦାର । ନାରାୟଣାନନ୍ଦ ଅବଧୂତଙ୍କର ଶୈଳୀ ଏବଂ ଭାବ ମଧ୍ୟ ଚେତନ ଜ୍ଞାନବର୍ଦ୍ଧକ ଏବଂ ସାଂସ୍କୃତିକ । ଏହି ଗ୍ରନ୍ଥଟି ଓଡ଼ିଆ ଗଦ୍ୟ-ସାହିତ୍ୟରେ ଗୋଟିଏ ସମୁଜ୍ଜ୍ୱଳ ରତ୍ନ । ଭାଷା ଓ ଭାବ; ଶବ୍ଦ ଏବଂ ଅର୍ଥ ଦୁହିଁଙ୍କର ଉଚିତ ସମନ୍ୱୟ ଓ ସମ୍ମିଳନ ଏହି ‘ରୁଦ୍ରସୁଧାନିଧି’ ଗଦ୍ୟକାବ୍ୟରେ ଲକ୍ଷିତ ହୋଇଥାଏ । ଏହା ଓଡ଼ିଆ ସାହିତ୍ୟରେ ଅନୁପମ ଏବଂ ଅଦ୍ୱିତୀୟ । ଅର୍ଥର ନବୀନତା, ସ୍ୱଭାବୋକ୍ତି, ରସର ସ୍ଫୁଟତା ବର୍ଣ୍ଣବିନ୍ୟାସରେ କାନ୍ତ-କୋମଳତା ‘ରୁଦ୍ରସୁଧାନିଧି’ ଗ୍ରନ୍ଥକୁ ମଞ୍ଜୁଳ, ରସାଳ, ରସପେଶଳ ଏବଂ ମନୋମୋହକର କରିପାରିଛି ।

ନାରାୟଣ ଅବଧୂତ ନିଜ ବିଷୟରେ ଏକାନ୍ତ ମୌନ । ତେଣୁ ତାଙ୍କର କାଳ ଏବଂ ବାସସ୍ଥାନ ନିରୂପଣ କରିବା ସମ୍ଭବପର ନୁହେ । କେତେକ ଆନ୍ତର ପ୍ରମାଣବଳରେ ଗ୍ରନ୍ଥକାରଙ୍କ କାଳ ବିଷୟରେ ଅନୁମାନ କରାଯାଇପାରେ; କିନ୍ତୁ ନିଶ୍ଚିତଭାବରେ କିଛି କହିହେବ ନାହିଁ । ମୁଁ ଏଠାରେ କବିଙ୍କ କାଳ ଅନୁମାନ କରିବାର କେତେକ ହେତୁ ଉପସ୍ଥାପିତ କରୁଛି ।

୧ । ପ୍ରାଚୀନ ଓଡ଼ିଆରେ ଦ୍ୱିତୀୟା ବହୁବଚନରେ ‘ନ୍ତି’ ପ୍ରତ୍ୟୟର ବ୍ୟବହାର ଦେଖିବାକୁ ମିଳେ । ସାରଳା ଦାସଙ୍କ ମହାଭାରତରେ ଏବଂ ବଳରାମ ଦାସଙ୍କ ‘ଦାଣ୍ଡୀ ରାମାୟଣ’ରେ ଏହି ‘ନ୍ତି’ ପ୍ରତ୍ୟୟର ପ୍ରୟୋଗ ବିଶେଷଭାବରେ ହୋଇଅଛି । ବଳରାମ ଦାସଙ୍କ ପରବର୍ତ୍ତୀ କାଳରେ ଏ ‘ନ୍ତି’ ପ୍ରତ୍ୟୟର ବ୍ୟବହାର ବିରଳ; ଯଥା—

ବାସୀନ୍ତ ସଇଣ ଆଜ୍ଞା ଦେଲ ସମମାତା । —ବ: ଦା: ସ:
ଛୋଟାଳ ମାନନ୍ତ ତହିଁ ଆଜ୍ଞା ଅବଧାର । —ସ: ମ: ସ:
ଅଦୋଷେ ଉପହାସ କଲ୍ପରେ ଆମ୍ଭନ୍ତ । —ବ: ଦା: ସ:

'ରୁଦ୍ରସୁଧାନିଧି'ରେ ଦ୍ୱିତୀୟା ବହୁବଚନରେ 'ନ୍ତ' ପ୍ରତ୍ୟୟର ବ୍ୟବହାର ବହୁଳ ପରିମାଣରେ ଦେଖିବାକୁ ମିଳେ; ଯଥା — ଭୁସଳନ୍ତ, ବିଷପୃନ୍ତ, ଏମାନନ୍ତ, ଇନ୍ଦ୍ରିୟମାନନ୍ତ, ବିଦ୍ୟାମାନନ୍ତ, କଳୁଷମାନନ୍ତ, ଲକ୍ଷଣନ୍ତ, ହାଡ଼ମାନନ୍ତ, ଅପାଧିମାନନ୍ତ, ସ୍ୱାଦୁମାନନ୍ତ, ପାଠନ୍ତ, ଯାଗମାନନ୍ତ, ଭଣ୍ଡାରମାନନ୍ତ, କୌରବନ୍ତ ପ୍ରଭୃତି ।

୬ । ପଞ୍ଚମୀ ବିଭକ୍ତିରେ "ତହିଁ" ପଦଟି ଉପପଦ ବିଭକ୍ତି ରୂପରେ ଷଷ୍ଠୀ ପ୍ରତ୍ୟୟାନ୍ତ ପଦପରେ ବ୍ୟବହୃତ ହୋଇ ପଞ୍ଚମୀ ବିଭକ୍ତିର "ଠାରୁ" ବା "ରୁ" ଅର୍ଥ ପ୍ରକାଶ କରିଥାଏ; ଯଥା—
ତୋ ତହୁଁ କେହୁ ନାହିଁ ସୃଷ୍ଟି ଉଦ୍ଧରନ୍ତ । —ଦା: ସ:
ସବୁ ତହୁଁ ସାନ ଅଟଇ ବିଚକ୍ଷଣ । —ଦା: ସ:
ମହାଦେବଙ୍କ ତହୁଁ ପୁନେକ ଅବତର । —ଦା: ସ:
ସଦାଶିବ ନାଥ ତହିଁ ଏ ବଚନ ଶୁଣି ।

ଉପପଦ ବିଭକ୍ତି ରୂପରେ 'ତହୁଁ' ପ୍ରତ୍ୟୟର କ୍ରମରେ ବ୍ୟବହାର ସାରଳା ମହାଭାରତ ଏବଂ ବଳରାମ ଦାସଙ୍କ ଦାଣ୍ଡୀ ରାମାୟଣରେ ବିଶେଷ ଭାବରେ ଲକ୍ଷିତ ହୁଏ । ପରବର୍ତ୍ତୀ ଓଡ଼ିଆ ସାହିତ୍ୟରେ ଏହି 'ତହୁଁ' ପ୍ରତ୍ୟୟର ବ୍ୟବହାର ଅନ୍ତ ହେଲା । କିନ୍ତୁ ରୁଦ୍ରସୁଧାନିଧିରେ ପଞ୍ଚମୀ ବିଭକ୍ତିରେ "ତହୁ" ପ୍ରତ୍ୟୟର ବ୍ୟବହାର ବହୁଳ ପରିମାଣରେ ଦେଖିବାକୁ ମିଳେ, ଯଥା—ଈଶ୍ୱର ତହୁଁ, ମନର ତହୁଁ, ମୋହର ତହୁଁ, ତୋ ତହୁଁ, ମାତାର ତହୁଁ ପ୍ରଭୃତି ।

୭ । ପଞ୍ଚମୀ ବିଭକ୍ତିରେ "ହୁଁ" ପ୍ରତ୍ୟୟର ମଧ୍ୟ ବ୍ୟବହାର ବହୁଳ ପରିମାଣରେ ସାରଳା ମହାଭାରତ ଏବଂ ବଳରାମ ଦାସଙ୍କ ଦାଣ୍ଡୀ ରାମାୟଣରେ ଦେଖିବାକୁ ମିଳେ । ପରବର୍ତ୍ତୀ କାଳରେ ସାହିତ୍ୟରେ

ଏହି "ହୁଁ" ପ୍ରତ୍ୟୟର ବ୍ୟବହାର ନ୍ୟୂନ ମାତ୍ରାରେ ଲକ୍ଷିତ ହୁଏ। କିନ୍ତୁ ରୁଦ୍ରସୁଧାନିଧିରେ 'ହୁଁ' ପ୍ରତ୍ୟୟର ବ୍ୟବହାର ମଧ୍ୟ ଅତି ବଢ଼ିଲା; ଯଥା—ଆଜହୁଁ, ପର୍ବତହୁଁ, ଆଜନ୍ମହୁଁ, ଆଜ୍ଞାହୁଁ ପ୍ରଭୃତି।

୪। ସପ୍ତମୀ ବିଭକ୍ତିରେ "ହିଁ" ପ୍ରତ୍ୟୟ ଏବଂ "ଠହିଁ" ପ୍ରତ୍ୟୟ ( ଉପପଦ ବିଭକ୍ତି ରୂପରେ ) ର ପ୍ରୟୋଗ ପ୍ରାଚୀନ ସାହିତ୍ୟରେ ସୀମାବଦ୍ଧ ଥିଲା; ଯଥା—

କ୍ଷତ୍ରିୟ ସମ ନାହିଁ ମହୀ ଭାଗହିଁ। —ଦାଃ ମ:
ପ୍ରୟୋଗ ଆଶ୍ଚର୍ଯ୍ୟ ଅଛି ମୋ ଠହିଁ।

ରୁଦ୍ରସୁଧାନିଧିରେ ଏହି ଦୁଇ 'ହିଁ' ଏବଂ 'ଠହିଁ' ପ୍ରତ୍ୟୟର ବ୍ୟବହାର ବିଶେଷଭାବରେ ହୋଇଅଛି; ଯଥା—

ବାସୁଦେବର ଠହିଁ, ଦୁହିଁଙ୍କର ଠହିଁ, ତାହାର ଠହିଁ ଇନ୍ଦ୍ରର ଠହିଁ, ତୋ ଠହିଁକି, ଉପ୍ତେହିଁ, କନ୍ୟା ଠହିଁ ହବୁହାର ହିଁ ପ୍ରଭୃତି।

୫। ଅମନାତ୍ୟ ଖେଷିଲେ, ସ୍ତୋହେ, ପବନେ କରି, ମହାଙ୍କ ପ୍ରଭୃତି ଅନେକ ପ୍ରାଚୀନ ଶବ୍ଦ ଦେଖିବାକୁ ମିଳେ। ଏଥିରୁ ଅନୁମିତ ହୁଏ ଯେ 'ରୁଦ୍ରସୁଧାନିଧି'ର ଲେଖକ ଅବଧୂତ ନାରାୟଣାନନ୍ଦ ସାରଳା ଦାସ ଏବଂ ବଳରାମ ଦାସଙ୍କ ମଧ୍ୟବର୍ତ୍ତୀ; ଅର୍ଥାତ୍ ସାରଳା ଦାସଙ୍କ ପରବର୍ତ୍ତୀ ଏବଂ ବଳରାମ ଦାସଙ୍କ ପୂର୍ବବର୍ତ୍ତୀ ଅର୍ଥାତ୍ ଚୈତନ୍ୟଙ୍କ ଓଡ଼ିଶା ଆଗମନ ପୂର୍ବରୁ ଅବଧୂତ ନାରାୟଣାନନ୍ଦ 'ରୁଦ୍ରସୁଧାନିଧି' ରଚନା କରିଥିଲେ। ପୂର୍ବୋକ୍ତ କାରଣମାନଙ୍କରୁ ଏହା ପଞ୍ଚଦଶ ଶତାବ୍ଦୀରେ ଲିଖିତ ବୋଲି ଗ୍ରହଣ କରାଯାଇପାରେ।

ପ୍ରଧାନ ଆଲଙ୍କାରିକ ମମ୍ମଟ ଭଟ୍ଟ କହିଛନ୍ତି—

ଶକ୍ତିର୍ନିପୁଣତା ଲୋକକାବ୍ୟ ଶାସ୍ତ୍ରାଦ୍ୟବେକ୍ଷଣାତ୍।
କାବ୍ୟଜ୍ଞ ଶିକ୍ଷୟାଭ୍ୟାସ ଇତି ହେତୁସ୍ତଦୁଦ୍‌ଭବେ।

କବିର କବିତ୍ୱଶକ୍ତି, ଲୋକଚରିତ୍ର ଓ ଲୋକାଚାର ପ୍ରଭୃତିର ପର୍ଯ୍ୟବେକ୍ଷଣ, ଶାସ୍ତ୍ରମାନଙ୍କର ଜ୍ଞାନ ଏବଂ କାବ୍ୟଜ୍ଞ ନିକଟରେ କାବ୍ୟ-

ରଚନା ଶିକ୍ଷା—ଏହି କେତୋଟି ହେଉଛି କାବ୍ୟରଚନାର "ହେତୁ" । ନାରାୟଣାନନ୍ଦଙ୍କର ଲୋକାନ୍ତର ଓ ଲୋକଚରିତ୍ରର ଚିତ୍ରଣ ଏହି ଗ୍ରନ୍ଥରେ ପୂର୍ଣ୍ଣମାତ୍ରାରେ ରହିଅଛି । ତାଙ୍କର ଶାସ୍ତ୍ରୀୟ ଜ୍ଞାନ ମଧ୍ୟ ଅତି ଉଚ୍ଚକୋଟିର ଥିଲା । 'ରୁଦ୍ରସୁଧାନିଧି'ରେ ଛ'ଟିଯାକ ଦର୍ଶନର ମତବାଦ, ତାନ୍ତ୍ରିକ-କାପାଳିକ ମତ, ପାଶୁପତ ମତ ଏବଂ ବୌଦ୍ଧ ମତ ମଧ୍ୟ ପ୍ରସଙ୍ଗକ୍ରମେ ପ୍ରଦତ୍ତ ହୋଇଅଛି । ଏହି ଗ୍ରନ୍ଥରେ ପୁରାଣ ଅନୁସାରେ ପୃଥିବୀର ବର୍ଣ୍ଣନା ଏବଂ ଆୟୁର୍ବେଦ ଅନୁସାରେ ଶରୀର ବର୍ଣ୍ଣନା ମଧ୍ୟ କବିଙ୍କର ବିଭିନ୍ନ ଶାସ୍ତ୍ରଜ୍ଞାନର ପରିଚୟ ଦିଏ । ମାନସିକ ପୂଜାର ପ୍ରକରଣ ମଧ୍ୟ ଏହି ଗ୍ରନ୍ଥରେ ସନ୍ନିବେଶିତ ହୋଇଛି । ବିଶେଷଭାବରେ ଅଦ୍ୱୈତ ମାୟାବାଦ ଏବଂ ଉପନିଷଦ୍‌ର ତତ୍ତ୍ୱ ଏଥିରେ ଆଲୋଚିତ ହୋଇଛି । ଏ ସମସ୍ତ ବିଷୟ କବିଙ୍କ ବହୁଶାସ୍ତ୍ରଦର୍ଶିତାର ପ୍ରମାଣ ପ୍ରଦାନ କରେ । ଏଥିରେ କବିଙ୍କର ସ୍ତୁତି ମଧ୍ୟ ପଞ୍ଚାଶଦ୍ ବର୍ଣ୍ଣଭେଦରେ; ଅର୍ଥାତ୍ 'ଅ'ଠାରୁ 'କ୍ଷ' ପର୍ଯ୍ୟନ୍ତ ଅକ୍ଷରରେ ରଚିତ ହୋଇଛି । ଗଦ୍ୟରେ ଏହିପରି ୫୦ ଅକ୍ଷରରେ ସ୍ତୁତି ରଚନା ହେଉଛି ଓଡ଼ିଆ ସାହିତ୍ୟରେ ଚଉତିଶା ରଚନାର ମୂଳପିଣ୍ଡ । ପରବର୍ତ୍ତୀ କବିମାନେ ଏଥିର ଅନୁକରଣରେ କେବଳ ବ୍ୟଞ୍ଜନ ବର୍ଣ୍ଣମାନଙ୍କର ଅବଲମ୍ବନ କରି ୩୪ ଗୋଟି ଅକ୍ଷରରେ ଚଉତିଶା ରଚନା କରିଥିଲେ ।

ବାଣଭଟ୍ଟ 'ହର୍ଷ-ଚରିତ'ରେ ଗଦ୍ୟ ସମ୍ବନ୍ଧରେ ଲେଖିଛନ୍ତି—

ନବୋଽର୍ଥୋ ଜାତିରଗ୍ରାମ୍ୟା, ଶ୍ଳେଷଃ ସ୍ପଷ୍ଟଃ ସ୍ଫୁଟୋ ରସଃ ।
ବିକଟାକ୍ଷରବନ୍ଧଶ୍ଚ କୃତ୍ସ୍ନମେକତ୍ର ଦୁର୍ଲଭମ୍ ।

ଗଦ୍ୟକାବ୍ୟରେ ଯେଉଁସବୁ ଗୁଣକୁ ବାଣଭଟ୍ଟ ପ୍ରଶଂସା କରିଛନ୍ତି, ସେ ସମସ୍ତ ଗୁଣ ଅକ୍ଷରେ ଅକ୍ଷରେ କିପରି 'ରୁଦ୍ରସୁଧାନିଧି'ରେ ରହିଛି, ତାହା ପ୍ରଦର୍ଶିତ ହୋଇଛି । ନାରାୟଣାନନ୍ଦଙ୍କର ଶୈଳୀ ଗଦ୍ୟଲେଖକଙ୍କ ସକାଶେ ଆଦର୍ଶ ସ୍ଥାନୀୟ । ସେ ପ୍ରତିଭାଶାଳୀ ଅଳଙ୍କୃତ ଗଦ୍ୟ ଲେଖିବାରେ ନିତାନ୍ତ ପ୍ରବୀଣ ଥିଲେ । ତାଙ୍କର ଶୈଳୀରେ ମାଧୁର୍ଯ୍ୟ ଓ ପ୍ରସାଦଗୁଣ ପୂରି ରହିଛି । ନାରାୟଣାନନ୍ଦଙ୍କ ଗଦ୍ୟରେ ସୂକ୍ଷ୍ମ ନିରୀକ୍ଷଣ ଶକ୍ତି, ଚମତ୍କାର

ବର୍ଣ୍ଣନା ପ୍ରଣାଳୀ, ଅକ୍ଷୟ ଶବ୍ଦରାଶି, କଳ୍ପନାବିଳାସ ଏବଂ ବହୁ ଶାସ୍ତ୍ରଜ୍ଞାନ ବିଶେଷଭାବରେ ଉପଲବ୍‌ଧ ହୁଏ ।

## କବିଙ୍କର ଧର୍ମମତ

'ରୁଦ୍ରସୁଧାନିଧି'ର ନାମକରଣରୁ ସ୍ପଷ୍ଟଭାବରେ ପ୍ରମାଣିତ ହୁଏ ଯେ କବି ନାରାୟଣାନନ୍ଦ "ଅବଧୂତ" ଥିଲେ ଏବଂ ଶୈବ ମଧ୍ୟ ଥିଲେ । ଗ୍ରନ୍ଥରେ ଥିବା ପଞ୍ଚାଶତ୍ ବର୍ଣ୍ଣଭେଦରେ ଶିବଙ୍କ ସ୍ତୁତି ପାଠକଲେ, କବି ଶୈବ ଥିବାର ଧାରଣା ଦୃଢ଼ ହୁଏ । କିନ୍ତୁ ଅବଧୂତ ନାରାୟଣାନନ୍ଦ କେବଳ ଶୈବ ନ ଥିଲେ । ତାଙ୍କର ନିଜ ନାମ 'ନାରାୟଣାନନ୍ଦ' ବୈଷ୍ଣବତ୍ୱ ପ୍ରତିପାଦିତ କରିଥାଏ । 'ରୁଦ୍ରସୁଧାନିଧି'ରେ ବିଷ୍ଣୁଙ୍କର ବର୍ଣ୍ଣନ, ପ୍ରଶଂସା ଓ ସ୍ତୁତି ରହିଛି । ଏ ଗ୍ରନ୍ଥରେ ନାରାୟଣାନନ୍ଦ ଜଗନ୍ନାଥଙ୍କୁ ମଧ୍ୟ ସ୍ତୁତି କରିଛନ୍ତି । 'ସର୍ବଂପଦଂ ହସ୍ତିପଦେ ନିମଗ୍ନମ୍'—ନୀତିରେ ଜଗନ୍ନାଥଙ୍କ-ଠାରେ ସବୁଧର୍ମର ସମନ୍ୱୟ ହୋଇଛି । ଭୁବନେଶ୍ୱରରେ ବିଶ୍ୱନାଥଙ୍କ ନିକଟରେ ରହିଥିଲେ ମଧ୍ୟ ନାରାୟଣାନନ୍ଦଙ୍କ ମନ ଜଗନ୍ନାଥଙ୍କଠାରେ ଅର୍ପିତ ହୋଇଥିଲା । ସମସ୍ତ ନଦୀ ସମୁଦ୍ରରେ ମିଳିତ ହେବାପରି ତାଙ୍କ ଧର୍ମମତ ଜଗନ୍ନାଥଙ୍କଠାରେ ଅର୍ପିତ ହୋଇଥିଲା—

"ନୃଣାମେକୋଗମ୍ୟସ୍ତ୍ୱମସି ପୟସାମର୍ଣ୍ଣବ ଇବ" ଇତି ଶମ୍ ।

ଓଁ

ସର୍ବେ ଭବନ୍ତୁ ସୁଖିନଃ ସର୍ବେ ସନ୍ତୁ ନିରାମୟାଃ
ସର୍ବେ ଭଦ୍ରାଣି ପଶ୍ୟନ୍ତୁ ମା କଶ୍ଚିଦ୍ ଦୁଃଖଭାଗ୍ ଭବେତ୍ ।

ଶ୍ରୀ କରୁଣାକର କର
୧୫ । ୩ । ୭୭

# ରୁଦ୍ର ସୁଧାନିଧି

ଶ୍ରୀ ଶିବାୟ ନମଃ:—ଶ୍ରୀ ଏକାମ୍ର ବନ ଆଶ୍ରିତ ଶ୍ରୀ ଭୁବନେଶ୍ୱର ଦେବାର ବରପୁତ୍ର (୧) ନନ୍ଦୋଧି ବାଗ୍ ବିଶେଷ; ଆଗମ ଜନ୍ମ (୨) ପୁରୁଷାବତାର ଶାରଦା; ଶୁଦ୍ଧଧୀରେ ମତ୍ତଗର୍ବିତ, ଦିଗ୍‌ଗଜ ପଣ୍ଡିତଙ୍କୁ ବିସ୍ମୟକେଶରୀ ପଣ୍ଡିତ ଜନସମୂହକୁ ସମ୍ମୋହନକୃତ୍ (୩) ଉନ୍ମତ୍ତ ଯୁବା, କ୍ଷୁଧା ପଞ୍ଚାନନ (୪) ନବକୃତ୍ତି କଣ୍ଠୀରବ, ପଞ୍ଚମ ବେଦ; ଷଟ୍‌ଶାସ୍ତ୍ର, ନବଧା ବ୍ୟାକରଣ; ଅଷ୍ଟାଦଶ ବିଦ୍ୟା; ଗୀତା ପୁରାଣ, ଛତିଶ ସ୍ମୃତି, ନବନାଟକ, ସ୍ତମ୍ଭନ, ମୋହନ, ବଶ୍ୟ, ଉଚ୍ଚାଟନ, ଗୋଟିକ ଅଞ୍ଜନ-ପାଦୁକ, ଲେପନ ରସ ରସାୟନ, ଉଲୁକ, (୫) କୁହୁକ, ମଣି ମନ୍ତ୍ରୌଷଧି (୬) ଇତ୍ୟାଦି କରି ବିଦ୍ୟାପଟଳ (୭) ତପତ କନକ କଣିକା ଏବଂ ଭୂତ (୮) ନାରାୟଣାନନ୍ଦ ଅବଧୂତର ବାକ୍ୟ ବାଣୀ ନବରତ୍ନ, ଦୀପ ଜଡ଼ିତ ମଣି, ବ୍ରହ୍ମାଣ୍ଡ ବୋଧକର ବ୍ରହ୍ମ ସୁଧାର ଗ୍ରନ୍ଥେ ପ୍ରଶସ୍ତ ଜାଣିବେ ଥୋକେ, ନଜାଣି ପୁଚ୍ଛିବେ ନା ବହୁତ ଲୋକେ, ଏଣୁକରି କହିବା ନା ଆଦି ସମ୍ଭବ ପାକେ । ସେ କଥାହିଁ ଅବା କେବଣ ? କପିଳାସ କନ୍ଦରେ ପାର୍ବତୀଙ୍କି ହର ପୁଚ୍ଛାକଲେ ଯେବଣ। ଶିବ ଶିବ ହାଇ ହାଇ, ବ୍ରହ୍ମାଣ୍ଡ ଖଣ୍ଡେ, ଭୂଥାଦି ଖଣ୍ଡେ, ଭୁବ ଖଣ୍ଡ ଖଣ୍ଡେ, କନକାଚଳ ଦଣ୍ଡେ, ବ୍ରହ୍ମ ଶୁକ୍ଳ ଶୂଳଦଣ୍ଡେ (୯) ସଇଲୋକ୍ୟ ବର୍ଗେ, କପିଳାସ ସ୍ୱର୍ଗେ, ମନୋରମ ମନ୍ଦିରେ, ଜଟାଶ୍ରମ

---

୧—'କ' ଭୁବନାଦି ଦେବ ଦେବୀର ବରପୁତ୍ର । ୨—'କ' ପୋଥିରେ ନାହିଁ, ୩—'କ' ପଣ୍ଡିତ ହିବଣ ସମ୍ମୋହକୃତ୍ । ୪—'କ' ଯୁଦ୍ଧ ପଞ୍ଚାନନ । ୫—'କ' ରେ ନାହିଁ । ୭—'କ' ରେ ନାହିଁ । ୬—'କ' ପଟଳ । ୮—'ଖ' ଭବ । ୯—'କ' ରେ ନାହିଁ ।

ନନ୍ଦରେ, ସିଦ୍ଧ ରୁଦ୍ରଗଣମାନଙ୍କର ସଙ୍ଗେ, ଜ୍ଞାନାନୁଭବର ରଙ୍ଗେ (୧) ମାନସ ସରୋବର କୂଳେ, ଚନ୍ଦ୍ର ଉଜ୍ଜ୍ୱଳ ଶଇଳେ, ସୂର୍ଯ୍ୟ ଅସ୍ତମିତେ, କ୍ରୀଡ଼ାରସମତେ, ସେ କାମାଙ୍ଗ ନାଶନ (୨) ବିହରୁ ଅଛନ୍ତି ଶଇଳେନ୍ଦ୍ର ପୁରୀ ସନ୍ନିତେ । ସେ ପରମେଶ୍ୱରଙ୍କର ପରମ ଜ୍ୟୋତି ପର ପୂର୍ଣ୍ଣାନନ୍ଦ ପରମ ପାରଂଗତ ଖଣ୍ଡେନ୍ଦୁ ମଣ୍ଡଳ ଗୃହପାରୁଶରେ ସମସ୍ତ ଦେବତାମାନେ ବେଢ଼ି ଅଛନ୍ତି । ମେଖଳା ଆକାର ହୋଇ ରହିଲେ ସିଦ୍ଧ ରୁଦ୍ରଗଣମାନେ ଅତି ହରଷେ (୩) ଉପମା—ନକ୍ଷତ୍ର ସମୂହର ମଧ୍ୟେ, ଶରଦ ଶୁକ୍ଳ ମେଘର ଉର୍ଦ୍ଧ୍ୱେ, (୪) ଅଶେଷ ଗ୍ରହଙ୍କର ଭଙ୍ଗେ, ଉନ୍ମତ୍ତ ରୋହିଣୀର ସଙ୍ଗେ, ସମ୍ପୂର୍ଣ୍ଣ କଳାଯୁକ୍ତ ଚନ୍ଦ୍ରମାର ପ୍ରାୟେ ଶୋଭା ପାଉଅଛନ୍ତି ବୋଲି ଜାଣିଲୁ ସୁସନ୍ଧେ, (୫) ସେ ମହାତ୍ମା ସିଦ୍ଧ ରୁଦ୍ରଗଣମାନେ କେମନ୍ତ ଅଟନ୍ତି ଶୁଦ୍ଧ ଚଇତନ୍ୟ, ଧନ୍ୟ, ବଦ୍ଧ ପଦ୍ମାସନ, ନିର୍ମଳ ମନ, ନିଶ୍ଚଳ ନୟନ, ଅନୁଭବାନନ୍ଦ ଚିଦ୍‌ଘନ, (୬) ବିଷୟାରେ ବିସର୍ଜନ, (୭) ବିଶ୍ରାନ୍ତ ଶ୍ରବଣ, (୮) ମନ ନୟନ ପ୍ରତିପାଦନ, ଅହିପତ୍ୟ ବାହ୍ନିକ (୯) ପରମଆତ୍ମାରେ ଯୋଗକରି ଅଛନ୍ତି—ଗୁଣକରଣ, ଗଣ ଜୀବନ, ମନ ପବନ, ସମସ୍ତେ ହିଁ ଚେଷ୍ଟାରେ ସ୍ୱଳ୍ପ, ନିର୍ବିକଳ୍ପ, ଜୀବ ନିରାକରଣ, ଅଶରୀର ବୁଦ୍ଧ, ଆଗୃର୍ଯ୍ୟ ସାଧି, ଜ୍ଞାନାନନ୍ଦେ ଯୁକ୍ତ, ସର୍ବଦା ମୁକ୍ତ, ଯାବତ୍ ଅନ୍ତଃକରଣ ଶୁଦ୍ଧ ହୁଅନ୍ତେ, ବିବେକ ଇଚ୍ଛୁକ, ନିର୍ଭୟ ଅଭୟ, ଉଦ୍‌ବେଗ ଅବସ୍ଥା ଗୁପ୍ତ ସେମାନେ କେମନ୍ତ ଅଟନ୍ତି, ନାରାୟଣର ପଦାରବିନ୍ଦରେ ଶରଣ । ସେ ଆତ୍ମାପୁରୁଷ ପରମାତ୍ମାରେ ଲଏ, ନିରାଲମ୍ବ ଧ୍ୟାୟେ, ବ୍ରହ୍ମତତ୍ତ୍ୱ ନିଷ୍ଠ ଅଂଶମୟେ, ସମସ୍ତେ ହେଁ ତ୍ରିଲୋଚନର ଗୃହ ପାରୁଶରେ ମେଖଳାକାର ହୋଇ ରହିଲେ । ସେ ପୂର୍ଣ୍ଣ ସମାଧି ଲୟେ, ମନକୁ ବେଶକୁ ନେଉଅଛନ୍ତି ତାହାଙ୍କୁ ଇନ୍ଦ୍ରିୟମାନଙ୍କର ନାୟକ ଯେ ମେ

---

୧—'ଖ', କରୁ 'କ' ରେ, ମାନ-ଜ୍ଞାନାନୁଭବରଙ୍ଗେ । ୨—'କ' କାମନାଶନ । ୩—'ଖ' କରୁ 'କ' ରେ ସମସ୍ତ ସିଦ୍ଧ ରୁଦ୍ରଗଣମାନେ ବେଢ଼ି ଅଛନ୍ତି ଅତ୍ୟନ୍ତ ହରଷେ । ୪—'କ' ଛନ୍ଦେ । ୫—'ଖ' ଚନ୍ଦ୍ର ଶୋଭା ପ୍ରାପ୍ତେକ ଶୋଭା ପାଉଅଛୁ ଧ୍ୟାନ କରନ୍ତେ ଜାଣିଲୁ ଶୁଦ୍ଧ ବୁଦ୍ଧିଏ । ୬—'ଖ' ଅନୁଭବାନନ୍ଦ ସଚ୍ଚିଦାନନ୍ଦଘନ । ୭—'ଖ' ବିଷୟ ରସରେ ବିଘନ । ୮ 'କ' ବିଷୟା ଉଶ୍ରବଗମନ । ୯—ଅନିତ୍ୟ ଅପ୍ରୀତ ବାହ୍ୟନ 'ଖ' ।

ନାସ୍ତି କରିଅଛନ୍ତି । ଦେହକୁ ମଦଗନ୍ଧ ଟେଲକର ବସ୍ତ୍ର ମ୍ରାସ୍ୟେକ ଏବଂ ଭୂତ ଦେଖି ଅମୃତ ଲୋଚନେ ନିରେଖି, ଜ୍ଞାନ ବୁଦ୍ଧି ଜାଣି, ଦେବେନ୍ଦ୍ର ମୁକୁଟମଣି, ବହ୍ନି ବୁଦ୍ଧି ବିସ୍ମରି, ମନେ ମନେ ବିଗ୍ରହ ବୋଇଲେ ଦେଖି ଜାଣିମାନ! ଏହାଙ୍କର ଅନ୍ତର୍ଗତ ବାଣୀ ଦୋଷ ଜାଣି ପରିମାଣି ବୁଝିବ । ଏତ ସମସ୍ତେ ହେଁ ସୁସ୍ଥ ସମାଧିଯୁକ୍ତ ନଷ୍ଟେ ହୋଇଲେ କି ? ଏମାନେ ହାଦେ ସିଦ୍ଧିଯୁକ୍ତ, ଏ କଥା ନଷ୍ଟେ ବିଡ଼ମ୍ବି ଜାଣିବା, (୧) ଅନ୍ତର୍ଗତ ଦୋଷ ପରୀକ୍ଷା କରି ମଣିବା । ଏବମ୍ଭୂ (୨) ବିଗ୍ରହ, ଜଗତ ପ୍ରଭୁ ହିପୁରାରି, ପାର୍ବତୀଙ୍କି ହକାରି, କଉତୁକ ରସେ-ପରିହାସ କରି, ପଗ୍ରହ କୋମଳ କରି (୩) କର୍ଣ୍ଣ ମୂଳରେ ଆଜ୍ଞାଦେଲେ ହେ ଭଦ୍ରେ ! ହେ କଲ୍ୟାଣି ! (୪) ହେ ଶୁଭ୍ରେ ସୁକୁମାରି (୫) ହେ ଶାକାମ୍ବରି ! ଜଗତ୍ ମାୟା ସ୍ୱରୂପୀ, ପରମ ମୋହିନୀ ରୂପୀ, ବ୍ରହ୍ମାଦି ତୃଣ ପର୍ଯ୍ୟନ୍ତେ, (୬) ହିକୃତି ସ୍ୱରୂପେ (୭) ବାହ୍ୟ ଅଭ୍ୟନ୍ତରେ ଅଛୁ ବ୍ୟାପି, ଏ ତୋହର ବିଭ୍ରମ ମାୟାର ପ୍ରଭାବ ଗୁଣ (୮) ଏମାନଙ୍କର ବୋଧ ଉଦୟେ ହୋଇଲା କି ବୁଦ୍ଧିରୁ ଅଚଳ ନିର୍ମଳ ଗୁଣ, ଏ ସବୁଙ୍କର ଶୁଦ୍ଧ ବିଗ୍ରହ କରି (୯) ନିକଟରେ ପକାଇ ତୁଳିଲେ ଜାଣିମା, ଅଜ ଲଘୁ ଗୁରୁ ପରିମାଣିକା (୧୦) ହେ ଦେବ ! (୧୧) ଏବେ ତୁମ୍ଭେ (୧୨) ଆମ୍ଭର ବଚନେ ଅତ୍ୟନ୍ତ ପ୍ରସନ୍ନେ (୧୩) ତ୍ରଇଲୋକ୍ୟ ମୋହିନୀ କରି କନ୍ୟା ଏକ ଜନ୍ମ କରିବ, ଏ ସିଦ୍ଧ ରୁଦ୍ରଗଣମାନଙ୍କର (୧୪) ଜ୍ଞାନ ବୁଦ୍ଧି ମୋହିବାକୁ ଭାଜନ (୧୫) ହେ ସୁନ୍ଦରି ! ତୁ ତ ସ୍ୱଭାବେ ହେଁ ପରମ (୧୬) ମାୟା, ଲାବଣ୍ୟମୟେ କାୟା, କନ୍ଦର୍ପ ନିତମ୍ବ ମଣ୍ଡଳକୁ ଆଶ୍ରେ କରି (୧୭) ହୋଇଥାଇ ସାହା, ଆମ୍ଭର ଯୋଗ ଭଗ୍ନ କଲା ଯେବେ (୧୮) ସେ ଶକ୍ତି କାମ ଦେବର ଅଛିଟିକି ଜାଣିମାନ! ଏବେ । ଏବେ ତୁମ୍ଭେ

---

୧—'ଖ' । ୨—'ଖ' କଳୁ 'କ' ରେ ଏତେ । ୩—'ଖ' କଳୁ 'କ' ରେ କୋମଳରସ କଉତୁକ କରି । ୪—'ଖ' କଳୁ 'କ' ରେ କଇଲ୍ୟାଣି । ୫—'ଖ' ସୁକୁମାରି । ୬—'ଖ' କଳୁ 'କ' ରେ ଆବ୍ରହ୍ମ ତୃଣ ପର୍ଯ୍ୟନ୍ତେ । ୭—'ଖ' । ୮—'ଖ' 'କ' ରେ ଗୁଣ ନାହିଁ । ୯—ସୂକ୍ଷ୍ମ ବିଗ୍ରହ 'କ' ପୁସ୍ତକେ ଅଛି । ୧୦—'ଖ' 'କ'ରେ କାହାର କେତେ ଲଘୁପରିମାଣିବା ୧୧—'ଖ' 'କ' ରେ ତୁ । ୧୨—'ଖ' ୧୩—'ଖ' । ୧୪—'କ' । ୧୫—'ଖ' କଳୁ 'କ'ରେ ଧ୍ୱଂସିବାକୁ ଭାଜନ । ୧୬—'ଖ' । ୧୭—'ଖ' କଳୁ 'କ' ରେ କାମଦେବ ତୋତେ ନିରନ୍ତରେ ଆଶ୍ରେ କରୁ । ୧୮—'ଖ' କଳୁ 'କ' ରେ ମୋହର ଯୋଗ ଯେ ଭଗ୍ନ କଲନା ପୂର୍ବେ ।

ଆମର ବଚନେ, ଅତ୍ୟନ୍ତ ପ୍ରସନ୍ନେ, ଆମ୍ଭ କଉତୁକ ଲୀଳାକ୍ରୀଡ଼ା ପ୍ରସଙ୍ଗେ ଭସ୍ମ ଗ୍ରୁଡ଼ି, ନାରୀ ଏ ହୋଇ, ସଚରାଚର ମୋହିନୀ କରି, କନ୍ୟା ଏକ ଜନ୍ମ କରିବୁ ।

ସେ କାମଦେବ ମୋହିନୀ କନ୍ୟା ସଙ୍ଗତରେ ଥାଇ, ସହଚର, ବସନ୍ତ ଥିବ ସଖାଯୁକ୍ତ ହୋଇ ପୁଷ୍ପଧନୁ ଧରି ତୋହରେ ତାହାର ସିଦ୍ଧ ହେବ କାର୍ଯ୍ୟ, କାମ ବ୍ରହ୍ମାର ପ୍ରତିଜ୍ଞା ଦେଖି ଜାଣିମାନା ଆଜ । (୧) ସେ ଚଇତନ ସ୍ୱରୂପୀ ଈଶ୍ୱର ଆଜ୍ଞାପାଇ ଆତ୍ମାଶକ୍ତି ପାଶମୁକ୍ତ ପ୍ରାଣୀମାନଙ୍କ ମନକୁ ପୁନରପି (୨)ଅନଙ୍ଗ ପାଶେ ଆକର୍ଷିବାକୁ ଅତ୍ୟନ୍ତ ହରଷ ହୋଇଲ(୩) ସେ ସଚରାଚର ମୋହିନୀ କନ୍ୟାଏ ଜନ୍ମକଲା । ଆପଣା ମନରୁ, କେବଳ ମୁହୂର୍ତ୍ତି ମାତ୍ର ଧ୍ୟାନରହ୍ମ ଆହା ବାବୁ କନ୍ୟା ସେ, ରଚେ ଜଗତ ମୋହିଲ । ପୃଥିବୀ ଶୋହିଲ, ପ୍ରାଣୀମାନଙ୍କର ଧଇର୍ଯ୍ୟ ଉଡ଼ିଲ, ଅନଙ୍ଗ ଅପ୍ରୋନିଧିକ ଆସି (୪) ଜର୍ପିଳାସ କନ୍ଦର ଯାକେ ବେଢ଼ିଲି (୫), ତାହାର (୬) ଧନ୍ୟ ଧନ୍ୟ, କି ଭୂମିଗତ ସୃଷ୍ଟି ? କି ମନ୍ମଥ ରାଜାର କୋଦଣ୍ଡ ଭ୍ରାନ୍ତି (୭); କି ବଜ୍ରକୁଳର କାନ୍ତି, କି ବ୍ରହ୍ମାଦି ଦେବଙ୍କୁ ମୋହିନୀ ଫାଶୀ ? କି ବହ୍ନି ନିର୍ମାଣ କଲି (୮), ଲାବଣ୍ୟ ରାଶି, କି ଅନଙ୍ଗ ଅମିୟ ପୂର୍ଣ୍ଣ କଳସୀ ? କି ଯୋଗୀଜନ ମନ ମୀନ ବଉଶୀ ? କି କାମିନୀ କୁଳ କମଳ ବିଳାସୀ ? କି ମନସିଜ ମନଜ ବନ ଶଶୀ ? କି ବ୍ରହ୍ମଜ୍ୟୋତି ନିର୍ମାଣ ନାଶି (୯) ? କି ବିବେକ ପ୍ରତାପକୁ ହତ ବିତାସୀ ? କି ଈଶ୍ୱର ମୋହିବାକୁ ଇଚ୍ଛିତ ହାସି ? କି ଦେଖି କାମଦେବହିଁ ହେଉଛି ଧଉଁସି ? (୧୦) ଆ ବାବୁ କନ୍ୟାର ସେ ବଦନ, ପୂର୍ଣ୍ଣ ନିର୍ମଳ ଶରଦ ଚନ୍ଦ୍ର, (୧୧) ଦ୍ରହାସ ନୟନ (୧୨) । ମୁନିଜନମାନଙ୍କର (୧୩) ମନ ନୟନକୁ ପାତିଅଛି ଫାନ୍ଦ ? ଜ୍ଞାନତରୁ ଉପାଡ଼ିବାକୁ ନୟନ ଗଙ୍ଗା ନଦୀର ତରଙ୍ଗ, ସ୍ନିଗ୍ଧ

---

୧—କେବଳ ମୁହୂର୍ତ୍ତି ମାତ୍ରକେ ଧ୍ୟାନେ ସେ ମାୟା କନ୍ୟାର ସାଙ୍ଗେ ଥାଇ ସହଚର ସଖାଯୁକ୍ତେ ପୁଷ୍ପଧନୁ ଧରି ତାହାରେ ତୋହରେ ସିଦ୍ଧ ହୋଇବ କାର୍ଯ୍ୟ କାମବ୍ରହ୍ମା ପ୍ରଭାବ ଜାଣିମାନା ଆଜ । ୨—'ଖ' କାରୁ 'କ' ରେ ପ୍ରାଣୀମାନଙ୍କୁ ପୁନରପି । ୩—'ଖ' ୪—'ଖ' 'କ' ରେ ଆଶିକ । ୫—'ଖ' କାରୁ 'କ' ରେ ବୁଡ଼ାଇଲା । ୬—'ଖ' । ୭—'ଖ' । ୮—'ଖ' କାରୁ 'କ' ରେ ନିରମିଲ । ୯—'ଖ' ୧୦—'ଖ' 'କ' ରେ ଧ୍ୱଂସି । ୧୧—'ଖ' କାରୁ 'କ' ରେ ଶରଦ ପୂର୍ଣ୍ଣମୀର ଚନ୍ଦ୍ର । ୧୨—'ଖ' କାରୁ 'କ' ରେ 'ନୟନ କି' । ୧୩—'ଖ' କାରୁ 'କ' ରେ ଯୋଗିଜନମାନଙ୍କୁ ।

ବିଦଗ୍ଧ ମଧୁର ଚଞ୍ଚଳ କଟାକ୍ଷରେ; କୋଟି କୋଟି କାମ ଆସି (୧) ହୋଇଅଛି ସଙ୍ଗ । ନିର୍ବାଣ ମୁକ୍ତି ଗୁଡ଼ି ପାରଇ (୨) ତାହାର ମୁଖ କମଳ ପେଖିଲେ, ଭୁଶମ୍ଭୁ ଅବସ୍ଥା ହୋଇ ପାରଇ ତାହାର ସ୍ତନ ଶଙ୍କର (୩) ଦେଖିଲେ । ବିଧାତା ଦେଖିଲେ ଜଡ଼ଭାବେ କରିବ ପ୍ରଳାପ (୪), ମନ୍ମଥ ରତିସଙ୍ଗ ଗୁଡ଼ିବାକୁ (୫) ନିଷ୍ଟେ କରୁଅଛି (୬) ସଂକଳ୍ପ । ଚନ୍ଦ୍ର ଦରଶନ ମାତ୍ରକେ କାରଣେ ଛୁଟିଲା ଯନ୍ତୁ (୭) କଷ୍ଟେ କଷ୍ଟେ ପ୍ରାଣ ରଖିଅଛି (୮) ତହୁଁ, ଶେଷ୍ଵଣୀର ଅଙ୍ଗ ସଙ୍ଗ ବିରଙ୍ଗ (୯) ପାଇଲା, ସ୍ପର୍ଶ ନ କରିବା ମାତ୍ରକେ ନିମଗ୍ନ ହୋଇ ଜଡ଼ ଆତ୍ମା (୧୦) ଗଗନେ ଉଠିଲା, ଭୋଗକର ନ ପାରି ସେ ଟି କାଳକ ? କଳଙ୍କ ବୋଲି ତାହା ବୋଲନ୍ତି ଅଦ୍ୟାପି (୧୧) । ଅଲେଖ ଜ୍ଞାନ ବୁଦ୍ଧି ମୋହିବାକୁ ଯେ ହୋଇଅଛି ଜନ୍ମ, ବୃହସ୍ପତି ଦେଖିଲେ ହେବେ ମଦନେ ବିଭ୍ରମ । ସ୍ତନ ଯୁଗଳ କଳ୍ପଲତା ଫଳ ପ୍ରାୟେ ପ୍ରକାଶ, ଇନ୍ଦ୍ର ଦେଖିଲେ ସ୍ଵର୍ଗ ଭୋଗ ଗୁଡ଼ି ସେଇକ୍ଷଣି ହୋଇବ ଦାସ । ସ୍ତ୍ରୀ ନିନ୍ଦେକ ବସ୍ତୁ କ ପଳାଇଲା ଭୂମଣ୍ଡଳ ତେଜି, ନାରାୟଣ ପଦ୍ମନେତ୍ର ଦୁଇ ଲକ୍ଷ୍ମୀ କଉତୁକେ ବେନି ହସ୍ତେ ଅଛନ୍ତି ଭୁଜି । ସକଳ ସ୍ତ୍ରୀରତ୍ନ କ ସୃଷ୍ଟିରେ ଚୂର୍ଣ୍ଣିଭୂତ ହୋଇଲା, ଐଶ୍ଵର୍ଯ୍ୟ ମାନନ୍ତି ସେ ମୋହ ନିଦ୍ରାରେ ମୋହିଲା । ଜଗତେଶ୍ଵରୀ ଯାହା ଅତ୍ୟନ୍ତ ସନ୍ଦେହ ଜାତକଲା । ସ୍ତ୍ରୀରୀ ବିଷପୂନ୍ତ ତେଜି ଦାସ ପ୍ରାୟେକ ହୋଇ କନ୍ଦର୍ପ ନିମ୍ନେ ମଣ୍ଡଳକୁ ଆଶ୍ରେକର ରହିଲା । କୁବେର ପଦ୍ମନିଧି ତେଜି ପାରଇଁ ଅର୍ଦ୍ଧ ଯୁଗଳ ଦେଖିଲେ, ଗୁପ୍ତାକୁ ତେଜି ସୂର୍ଯ୍ୟ ଭୂମିଗତ ହୁଅନ୍ତା ନିଶି ନୋହି ଦିବସ ହୋଇଥିଲେ ! ସେ କ୍ରୀଡ଼ାରସ ନଦୀ ଅବା ଲାବଣ୍ୟ ବାରରେ ପୂରାଇଲା (୧୨) । ତ୍ରିପୁର ସୁନ୍ଦରୀମାନଙ୍କର ହିଁ ଆଦର ସରିଲା ଦିଗପାଳମାନେ ଦେଖି ହୋଇଲେ ଜଡ଼ । ଜୀବେ ଅଜୀବେ

---

୧—'କ' ରେ ଆସିନାହିଁ । ୨—'ଖ' 'କ' ରେ ତେଜପାରି । ୩—'ଖ' କନ୍ତୁ 'କ' ରେ ସ୍ତନ ଯୁଗ୍ମ । ୪—'ଖ' କନ୍ତୁ 'କ' ରେ ବିଧାତା ଜଡ଼ ଭାବେ ଦେଖିଲେ କରିବ ପ୍ରଣାମ । ୫—'ଖ' କନ୍ତୁ 'କ' ରେ ତେଜିବାକୁ । ୬—'ଖ' । ୭--'ଖ' । ୮—'ଖ' କନ୍ତୁ 'କ' ରେ ପାଇଲକ । ୯—'ଖ' କନ୍ତୁ 'କ' ରେ ବିଭଙ୍ଗ । ୧୦--'ଖ' । ୧୧--'ଖ' କନ୍ତୁ 'କ' ରେ ଲୁପ୍ତ କରି ନ ପାରି ଯନ୍ତୁ ମୁଖ କାଳକ, କଳଙ୍କ ବୋଲି ତା ଏବେ ବୋଲି ଅଲଖି । ୧୨--ବୁଡ଼ାଇଲା 'ଙ'।

ଜଡ଼ିଲେ ବଢ଼ (୧) ଏବଂ ଭୂତ ପ୍ରକାରେ ରୁଦ୍ର କ୍ରୀଡ଼ା ବନରେ ଅଜୀବର୍ଣ୍ଣବ କାମାନଳକାରେ ମଜ୍ଜିଲେ ଯନ୍ତୁଁ ଆକର୍ଣ୍ଣ ପରିଯନ୍ତେ ପଞ୍ଚବାଣ ପୂରାଇ ମନମଧ ବଗ୍ଭରିଲକ ତନ୍ତୁଁ (୨) ଏବଂ ଭୂତ ପ୍ରକାରେ ସେ ଜଗତ ପ୍ରକୃତ ଅମ୍ବିକା (୩) ଲାବଣ୍ୟ ସମୁଦ୍ର ଲକ୍ଷ୍ମୀ ଉଦ୍ଧର ଆଣିଲା କ (୪) ଅତ୍ୟନ୍ତ ଜଗତ ମାତାର ଯତନେ ସୃଜିଲା ସେ ଅନୁପମାମଦ ସନ୍ଦୀପନୀ କନ୍ୟା । (୫) ସେ କନ୍ୟା ଆଜ୍ଞା ପାଇ ସିଦ୍ଧଙ୍କର ଜ୍ଞାନ ସମୁଦ୍ରେ ମଜ୍ଜିଲା । ମନ୍ମଥ ହସ୍ତୀକ ପାଶେ ଆକର୍ଷି ଆଣିମାକୁ ଅତ୍ୟନ୍ତ ହରଷ ହୋଇ ସେ ସମାଧି ବୁଦ୍ଧି ମହାତ୍ମା ମଣ୍ଡଳର ମଧ୍ୟେ ମିଳିଲା । ରତ୍ନ ଅଳଙ୍କାର ଯୁକ୍ତ ହୋଇ, ଯୋଗବନ୍ଧ କରିବାପାଇଁ, ସେ ମୁକ୍ତପଥ ନିରୋଧିବାକୁ କନ୍ୟାର ଅପାଙ୍ଗ ସଙ୍ଗତେ ମନସିଜ ସଜୀବ ହୋଇଅଛୁ । ପୁଷ୍ପଶର ଯୁଗତେ, କାମଦେବ ସଙ୍ଗତେ, ବସନ୍ତ ଋତୁ ଅଇଲା । ମଇଁସକୁ ସପକ୍ଷ ହୋଇବାକୁ କରି ଆକାଶେ ନିର୍ମଳ ହୋଇ ଚନ୍ଦ୍ରମା ଉଇଁଲା । ମଧୁଯାମିନୀ ହୋଇଲା, ମଳୟ ପବନ ମନ୍ଦ ମନ୍ଦ ହୋଇ ବହିଲା, ଯୁବାଜନମାନଙ୍କର ମନକୁ ପୁନଃ ପୁନଃ କରି ଦହିଲା । ସେ ମନସିଜ ଦର୍ଶନେ, ରମ୍ୟ ଅରଣ୍ୟ ସମସ୍ତ ଜନ୍ତୁମାନଙ୍କୁ ବାଧା ଲାଗିଲା । ସେ ସଙ୍ଗେ ବିହରନ୍ତା . ବଦ୍ୟାଧରୀ-ମାନଙ୍କର ଭର୍ତ୍ତାକୁ ଲୋଭନୀୟ ଇଚ୍ଛାଏ ବଳିଲା । ଶୁଷ୍କ ପାଦପ କଅଁଳିଲା, ପଲ୍ଲବିତ ହୋଇଲା ମହାଗଜମାନଙ୍କର ରମଣ ଅଯୋଗ୍ୟ—ହସ୍ତିନୀ-ମାନେ ସହିଲେ (୮) ଭ୍ରମରେ ପଦ୍ମରେ ରହିଲେ । ଦିବ୍ୟାଙ୍ଗନା-ମାନଙ୍କର ସ୍ତନ ସଙ୍କଟେ ମଳୟ ପବନମାନେ ଶରଣ ପଶିଲେ । ଲଜ୍ଜାଏ ଗଳିଲେ । କୋକିଳମାନଙ୍କର କୁହୁ କୁହୁ ଶବ୍ଦେ ବଳିଲେ । ଅଧିନେ ସାରି ପକ୍ଷିଏ ଭାଷିଲେ । ଭ୍ରମନ୍ତ ପଦ୍ମେ ଲେଉଟି (୯) ଚୁମ୍ବିବାକୁ ସଲଜ୍ଜେ ମନ୍ଦ ମନ୍ଦ ହୋଇ ହସିଲେ । ସେ ଅରଣ୍ୟେ ସମସ୍ତ

---

୧--'କ' ରେ ଅଜୀବ ଜୀବମାନଙ୍କରେ ଲଗିଲା ଜଡ଼ । ୨--'ଖ' ରେ ନାହିଁ । ୩--'କ' ପୋଥିରେ ନାହିଁ । ୪--'କ' ଜୀବ ଅଜୀବମାନଙ୍କରେ ଲାଗିଲା ଜଡ଼ । ୫—ଅତ୍ୟନ୍ତ ଯତନେ ତ ସୃଜିଲା ସେ ଅନୁପମା ମଦନ ସନ୍ଦୀପନୀ 'କ' । ୬—ମନ୍ମଥ 'କ' । ୭—ଚଉ 'କ' । ୮—ମହାଗଜାଙ୍କର ରମଣ ଅଯୋଗ୍ୟ ହସ୍ତିନୀ-ମାନେ ସହିଲେ । ୯—'ଖ' ପୋଥିରେ ଏ ବାକ୍ୟଟି ନାହିଁ । ମନ୍ଦ ମନ୍ଦ ହୋଇ ଭ୍ରମରେ ପଦ୍ମ ଲେଣ୍ଡୁ ରେ ଚୁମ୍ବିବାରେ 'କ' ।

ଜନ୍ତୁମାନେ ହେଁ ଉନ୍ମତ୍ତ ହଣିଲେ, ପ୍ରକୃତେ ଅଙ୍ଗନାମାନଙ୍କର ଭୁଜପଞ୍ଜରେ ଶରଣ ପଶିଲେ ।

ଏବଂ ଭୂତ ପ୍ରକାରେ, ରୁଦ୍ରକ୍ରୀଡ଼ା ବନରେ ଜୀବେ ଅଜୀବେ କାମାନ୍ଧକାରେ ମଜ୍ଜିଲେ ଯହୁଁ ଆକର୍ଣ୍ଣ ପରିଯନ୍ତେ ପଞ୍ଚବାଣ ପୁରେଇ ମନ୍ମଥ ବିଶ୍ଵରିଲ କି ତହୁଁ, ସେ ପାଞ୍ଚ ଶରକୁ ଶିଖାଇ, ବସାଇ, ଅଧ୍ୟାନ, ସନ୍ଧାନ, ମୋକ୍ଷ ମଣ୍ଡଳ କରି ପ୍ରତିଜ୍ଞା କଲା ତହୁଁ । ପ୍ରତିଜ୍ଞା କରଇ ହାଇ ହାଇ ହାଇ । ଆଜ ଜାଣିବାନା ସିଦ୍ଧଙ୍କର ଗର୍ବ, ମୋତେ ପୂର୍ବେ ଜିଣିଲା ପରି ବିଶ୍ଵରିଛନ୍ତି ସର୍ବ । ବଶ୍ୟ ଆଶ୍ଚର୍ଯ୍ୟ ଏ ସମାନ କର୍ମ କଲେ । ସାତ୍ତ୍ଵିକ ଶ୍ରଦ୍ଧାକୁ ଯେବେ ଶାନ୍ତ ହୋଇ ବସ୍ତୁ ଭକ୍ତିକି ଆଶ୍ରେ କରିଗଲେ । ତାହାଙ୍କର ପ୍ରସନ୍ନେ, ନିତ୍ୟାନିତ୍ୟ ଦର୍ଶନେ, ଅନ୍ତଷ୍କରଣ ଚତୁଷ୍ଟୟ କଲେ ଶୁଦ୍ଧି, ପୁଣି ଯମ ନିୟମାଦି ବଳେ ମୋତେ ଜିଣି ନିର୍ମଳ କଲେ ମନ ବୁଦ୍ଧି (୧) । ଶୁଦ୍ଧ ଅନ୍ତଃକରଣ ବିବେକ ଉତ୍ପନ୍ନହିଁ କଲେ (୨) । ହରି ହରି ଅଣିମାଦି ଐଶ୍ୱର୍ଯ୍ୟଙ୍କୁ କୁହୁକ ବୋଲି ବୋଇଲେ । ଏ ଯୋଗିଏ ସ୍ଵର୍ଗ ସୁଧାନିଧି ସ୍ତ୍ରୀ ରତ୍ନମାନଙ୍କୁ ନରକ ବୋଲି ଭାବନ୍ତି । ପ୍ରତ୍ୟକ୍ଷ ଦୃଷ୍ଟି ପ୍ରପାତକୁ ମିଥ୍ୟା ବୋଲି ଭାଷନ୍ତି, ଶାନ୍ତ, ଦାନ୍ତ, ବୁଦ୍ଧି, ସାଧନ ହୋଇଲେ ହେଁ ଏମାନଙ୍କର କୈବଲ୍ୟ ଜ୍ଞାନେ ଲୟେ, ଆମ୍ଭେ ଷଡ଼ (୩) ଭାଇ ରାଜ୍ୟଗୁଡ଼ି ପଳାଇଲୁ ଏ ପାପିଷ୍ଠ ଦୁରାତ୍ମାମାନଙ୍କ ଭୟେ । ଏମାନେ ତ ମୋହର ଦୁଃସାଧ୍ୟ ବୈରି, ଆଜ ଜାଣିମାନା ଏମାନନ୍ତ କେ ପାରଇ ଉଦ୍ଧରି, (୪) ଏତେ ବିଚାରି, ସେ ମକରଧ୍ଵଜ ନିଶରେ ହାତ ଭରି, ପୁଷ୍ପ ଧନୁ ଧରି, ଗୁଣ ଟଙ୍କାର କରି, ପାର୍ବତୀଙ୍କୁ ସୁମରି, ପୂର୍ବ କଥା ବିଚାରି, (୫) ମୋହ ଉତ୍କଟ ପ୍ରତିଜ୍ଞା କରି, (୬) ବୋଇଲା ଚଞ୍ଚଳ ଦୃଷ୍ଟି ଅପାଙ୍ଗ କୋଣେ

---

୧ — ଦମ ନିୟମ ବଳପରି ଏମାନେ ନିର୍ମଳ କରିଅଛନ୍ତି ମନ ବୁଦ୍ଧି 'ଚ'

୨ — ଶୁଦ୍ଧ ଅନ୍ତଷ୍କରଣ ବିବେକ ଦୃଷ୍ଟି ହୋଇଲେ 'କ'

୩ — ଛ 'ଖ'

୪ — ରକ୍ଷାକର 'ଖ

୫ — ବିଯୋଗ 'ଖ'

୬ — ମେରୁର ପୃଷ୍ଠେ 'ଖ'

ଦଦ୍ଵିବ ଆଜ ସିଦ୍ଧଙ୍କୁ ଖଣ୍ଡ ଖଣ୍ଡ କରି (୧)। ସେ ମକରଧ୍ୱଜ ଅତ୍ୟନ୍ତ ମଦେ, ମାୟା କନ୍ୟାର ପ୍ରସାଦେ, ଚିର ବୃଦ୍ଧ ଶିବଙ୍କୁ ଜିଣି ପାରିବି ବୋଲି ନିଶ୍ଚେ କଲା ଅପ୍ରମାଦେ (୨)। ଏମନ୍ତ ସମୟରେ ଚନ୍ଦ୍ର ଜ୍ୟୋତ୍ସ୍ନା ବଳିଲା (୩); ବସନ୍ତ ଋତୁ ଚଳିଲା; କାମାଂଶ ବଳିଲା, ଯେ ତ୍ରୈଲୋକ୍ୟ ମୋହିନୀ କନ୍ୟା ସମାଧି ମଧ୍ୟେ ସିଦ୍ଧ ମଣ୍ଡଳର ମଧ୍ୟେ ମିଳିଲା। କେମନ୍ତ ପ୍ରାୟେ ହୋଇ, (ଉପେକ୍ଷା) ସ୍ଥିରମନ ବିହଙ୍ଗ ସମୂହର ମଧ୍ୟେ ମନ୍ମଥ ପତାକା ଉଡ଼ାଇଲା (୪) ? କି ଧୈର୍ଯ୍ୟ ପର୍ବତମାନଙ୍କୁ ଲାବଣ୍ୟ ବାରି ବୁଡ଼ାଇଲା ! କି କୈବଲ୍ୟ ପରମାନନ୍ଦମାନଙ୍କୁ ଅଣିମାଦି ଅବିଦ୍ୟା ଢାଙ୍କିଲା। କି ବୋଧ ଉଦୟ ଚନ୍ଦ୍ର ଜ୍ୟୋତ୍ସ୍ନା ମାନଙ୍କୁ ମୋହ ମେଘ ପଟଳ ଢାଙ୍କିଲା (୫)! କି ଶାନ୍ତ ରସ କମଳ କୁଞ୍ଜେ ତ ନବ ବସନ୍ତ ବଳିଲା (୬) ପୁନରପି ବ୍ରହ୍ମପାଶ ବୁଦ୍ଧିକି ସ୍ତ୍ରୀ ସୁଖେ ବିଭାଡ଼ିଲା ? ଯୋଗାଭ୍ୟାସ ଅଗ୍ନିକି ଅଧରାମୃତ ବାରିକି ଲିଭାଇଲା। ସେ ଅବିଦ୍ୟା ମୃତ୍ୟୁ ସଞ୍ଜୀବନୀ କନ୍ୟାର ନୂପୁର ବଳୟ କଙ୍କଣଙ୍କର କ୍ୱଣ, କଟି ମେଖଳାର ରଡ଼, ଝିଙ୍କା ଭୃଙ୍ଗ କୋକିଳଙ୍କର ତୁଣ୍ଡ ପାଡ଼, ଏଥିକୁ ସମ୍ପୂର୍ଣ୍ଣ ଯୁକ୍ତ ଅଛି ବସନ୍ତ ଋତୁ ବେଢ଼ି। ଏଥିକୁ ସପକ୍ଷ ହୋଇବା ନିମନ୍ତେ ଚନ୍ଦ୍ର ଧରିଅଛି କରେ କରବାଜଡ଼ି। ଏମନ୍ତ ସମୟେ ପଡ଼ିଲା ସିଦ୍ଧ ରୁଦ୍ରଗଣମାନଙ୍କୁ ଘୋର ଧାଡ଼। ସିଦ୍ଧମାନଙ୍କର ସମାଧି ଭଙ୍ଗିଲା। ତୃଷ୍ଣାୟ ଅବସ୍ଥା ଆସି ଜାଗ୍ରତରେ ଲାଗିଲା। ମନ୍ମଥ ଚକ୍ଷୁଦ୍ୱାରେ ଯାଇ ଲାଗା ଲାଗିଲା। ବିଷୟ ରସେ ରସିବାକୁ ମନ ବୁଦ୍ଧି ଆଜ୍ଞା ମାଗିଲା।

ଈଶ୍ୱର ହିଁ ବଡ଼ ଚମତ୍କାର ପାଇଲେ। ପାର୍ବତୀଙ୍କି ଆଣି ଆଲିଙ୍ଗନ କରି ହରଷେ ବୋଇଲେ। ହେ ସଖେ। ଦହନ (୭) ହୋଇଲା ଅନଙ୍ଗକୁ (୮) କି ମୋହନ ପାଣିରେ ଜିଆଇଲୁ। ହେ ଅମ୍ବୁଜାକ୍ଷି ! ନିବିଡ଼ନୁ କରି କାହୁଁ ଏବେ ଅନଙ୍ଗ ସୃଷ୍ଟି ଏ ଭିଆଇଲୁ। ଆମ୍ଭର ମନପଦ୍ମୁଁ ନୋହିଲା

---

୧ — ଚଞ୍ଚଳ ବୃଷାଳ ନୟନେ ଛେଦିବ ଆଜ ଖଣ୍ଡ ଖଣ୍ଡ କରି 'କ'
୨ — ନିୟମ ପ୍ରମାଦେ 'କ'
୩ — ଚନ୍ଦ୍ର ଉଜ୍ଜ୍ୱଳ ହୋଇ ଉଇଁଲା 'କ'
୪ — ସ୍ଥିରମନ ବିହଙ୍ଗରେ ମନ୍ମଥ ପତଙ୍ଗ ଉଡ଼ାଇଲା 'କ'
୫ — କି ଜ୍ଞାନ ମୁକ୍ତିକି ଆସି ଅଣିମାଦି ବିଦ୍ୟା ଅଟକିଲା 'ଖ'
୬ — କମଳକୁ ଭ୍ରୂଲତା ସର୍ପିଣୀ ଖାଇଲା 'କ'
୭ — ଭସ୍ମ 'କ'
୮ — ଶରୀର 'କ'

ନଶ୍ଚଳ । ଏହିକ୍ଷଣି ଜାଣିମା ଏ ସିଦ୍ଧଙ୍କର କାହାର କେତେବଳ । ଏମନ୍ତ ବୋଲନ୍ତେ ଅଦୃଷ୍ଟ ପଦ ଅଦ୍ଭୁତ ମୋହିନୀ କନ୍ୟାକୁ ଦେଖି ଆଶ୍ଚର୍ଯ୍ୟ ପାଇଲେ ସିଦ୍ଧ ରୁଦ୍ରଗଣମାନେ ସମାଧି ଉପେକ୍ଷି । ଇନ୍ଦ୍ରିୟ ଦୃଶ୍ୟ ଦେଖି, ଅର୍ଦ୍ଧ ଉନ୍ମିଳିତ ଲୋଚନେ ନିରେଖି, ସମାଧି ବୁଦ୍ଧି ଉପେକ୍ଷି, ବିପରୀତ ସମସ୍ତ (୧) ଦେଖି, ଉଚ୍ଛନ୍ନ ହୋଇ, ମହାଭୟ ପାଇଁ, ପ୍ରଳାପ ଶକ୍ତିଜ୍ଞାନେ (୨), ନିରାଲମ୍ବ ଧ୍ୟାନେ କେ ପଳାଇଲେ, କେ ଉପଳ ଅବସ୍ଥାରେ ରହିଲେ, କେ ମୃତ୍ୟୁ ଶବ ପ୍ରାପ୍ତ ହୋଇ ରହିଲେ, ଆହା ଯେ ସିଦ୍ଧ ବୁଦ୍ଧି ସମୂହ ଗୋଷ୍ଠିର ବାବୁ ଉଦ୍‌ବେଗରେ (୩) କେ ଶବ୍ଦ ସ୍ୱରୂପେ ରହୁ-ଅଛନ୍ତି, କେ ସମାଧି ରୂପେ ରହୁଅଛନ୍ତି, କେ ଗଗନେ ଗଗନ ହେଉଅଛନ୍ତି, କେ ଅଭୟ ପଦଧାଉ ଅଛନ୍ତି, କେ ପରମ ଜ୍ୟୋତିରେ ମିଶୁଅଛନ୍ତି, କେ ଚିଦାନନ୍ଦେ ପ୍ରକାଶୁ ଅଛନ୍ତି, କେ ଅବଧୂତ ହୋଇ ଧାଉ ଅଛନ୍ତି, କେ ଶୂନ୍ୟ ଆକାଶେ ସମ୍ଭାଉ ଅଛନ୍ତି, କେ ତତ୍ପର ହୋଇ ଆସୁଅଛନ୍ତି । କେ ନିର୍ଗୁଣ ହୋଇ ପ୍ରକାଶୁଅଛନ୍ତି, କେ ଅନ୍ତର୍ଦ୍ଧାନ ହୋଇ ଖସୁ ଅଛନ୍ତି । କେ ପରମାନନ୍ଦେ ରସୁଅଛନ୍ତି, କେ ନିର୍ବିକଳ୍ପ ଅଭ୍ୟାସ ଅଛନ୍ତି (୪), କେ ଅଜାବଭାବେ ପ୍ରକାଶୁଅଛନ୍ତି, କେ ବହିସ୍ଥ ବୁଦ୍ଧି ନାଶୁଅଛନ୍ତି, କେ କନ୍ୟା ସ୍ୱରୂପେ ପଶୁଅଛନ୍ତି, (୫) କେ ମନ ଭାବୁକ ଆସୁଅଛନ୍ତି, କେ ଜ୍ଞାନ ହରଷେ ଉଲୁସୁ ଅଛନ୍ତି, କେ ସୀମନ୍ତିନୀ ବୋଲି ବଳସୁଛନ୍ତି । କେ ତନୁମନ ବୁଦ୍ଧିକି ଯାଉଛନ୍ତି, କେ ଅଶରୀର ପ୍ରାପ୍ୟେ ବଶୁଅଛନ୍ତି, କେ ନଷ୍ଟ ବୋଲି ଉପହାସୁ ଅଛନ୍ତି, କେ ବହୁରୂପୀ ବୋଲି ଦରହାସୁଅଛନ୍ତି, କେ ରଜ୍ଜୁସର୍ପ ବୋଲି ଆଭାସୁଅଛନ୍ତି (୬), କେ ଶକ୍ତି ବୋଲି ଜାଣିଲେ, କେ ମୃଗ ତୃଷ୍ଣା ପ୍ରାପ୍ୟ ମଣିଲେ, କେ ଆତ୍ମାରେ ରମିଲେ, କେ ନିତ୍ୟାନିତ୍ୟ ଜାଣିଲେ, କେ ମନ ବୁଦ୍ଧି ଦେହ ଚୈତନ୍ୟର

---

୧--ସ୍ୱଭ 'କ'

୨--ପ୍ରକାଶାସକ୍ତ ଜ୍ଞାନେ ।

୩--ଅସିଦ୍ଧ ବୁଦ୍ଧି ସାଧକ ସମୂହଁ ଗୋଷ୍ଠୀର ବାବୁ ଉଦ୍‌ବେଗ ଅବସ୍ଥାରେ ।

୪ --ଅଭ୍ୟାସୁଅଛି ।

୫--ତନୁଅଭ୍ୟବଳ 'ଖ' ।

୬--'କ' ରେ ନାହିଁ ।

ତହିଁକି ଗମିଲେ, କେ ଶବ୍ଦଭୂମି ତରିଲେ, କେ ବ୍ରହ୍ମାଣ୍ଡ ଯାକେ ପୂରିଲେ, କେ ତିନିଅବସ୍ଥାକୁ ଜିଣିଲେ (୧), କେ ଶଶ ବିଷାଣ ପ୍ରାୟେକ ମଣିଲେ, କେ ବିଚାରିଲେ ହୋ, ମହା ପ୍ରଳୟ ନଜାଣେ କେଉଁଣ ସ୍ଥାନ। ତହିଁକି କରି ପାରିବ ଏ ସ୍ତ୍ରୀ ଆଶ୍ରୟ କାମ, କେ ବିଚାରିଲା ହୋ, ମୋହର ତହୁଁ ବିନା ବସ୍ତୁନାହିଁ, ଏ ମାୟା କନ୍ୟାହିଁ ତ ଅଟଇ ମୁହିଁ (୨), କେ ବୋଇଲା ହୋ, ମୋହ୍ବମା ରୂପେ ଆତ୍ମାଭଉସାଇ, ଶୁକ୍ତି ଯେହ୍ନେ ଭ୍ରାନ୍ତିରେ ରଜତ ପ୍ରାୟ ଦିଶଇ। କେବଣ ମହାତ୍ମା ପରମ ବୁଦ୍ଧିରେ ବୋଇଲା, ଇନ୍ଦ୍ର ବୋଲେ ଆସି ଇନ୍ଦ୍ରଜାଲ ହୋଇଲା। କେ ବୋଇଲା ଗନ୍ଧର୍ବ ନଗରେ ଅବା କେତେବେଳେ ଥାଇ, କେ ବୋଇଲା ହୋ, ମନ୍ଦୁଆ କନ୍ଦର୍ପ ଆଜନ୍ମହୁଁ ବାଇ। କେ ବୋଇଲା ହୋ, ବ୍ରହ୍ମାଦ ପଦହିଁ ଯହିଁ ଦିଶଇଭ୍ରମ ତୋହର କମ୍ପାଇ ଏଥି ବିଅର୍ଥେ ଶ୍ରମ। ସେ ତାପତ୍ରୟ ନାଶନ ମହା ପ୍ରଭବ ବ୍ରହ୍ମଜ୍ଞାନ ପ୍ରସାଦେ, ସକଳ ସିଦ୍ଧି ରୁଦ୍ରଗଣମାନେ ରକ୍ଷା ଗଲେ ଅପ୍ରମାଦେ। ତହିଁ ଅଭିନବ ଚୈତନ୍ୟ ନାମେ ରୁଦ୍ର ଗଣେକ ଥିଲା, କୋମଳ କଣ୍ଟକ (୩) ଜ୍ଞାନରେ, ଆରୁକ୍ଷୁ (୪) ଯୋଗରେ, ସେ ଗୁହିଁ ଦେଇ ପଡ଼ିଲା ଏକା ଘୋର ଅନଙ୍ଗ ଧାଡ଼ିରେ, ସେ ମାୟା କନ୍ୟାକୁ ଦେଖିଲା, ସ୍ଥିର କରି ତାହାର ଲାବଣ୍ୟ ସୁଧାନିଧି ନିରେଖି ପେଷିଲା। ତାହାର ଅଚଳ ଚିତ୍ତ ବିଚଳିଲା, ସ୍ଥିରଚକ୍ଷୁ ଚଳିଲା, ହୃଦୟ ସରିଲା, ଚଇତନ ବୁଡ଼ିଲା, ଶରୀର ଚମକିଲା, ବୁଦ୍ଧି ଝମକିଲା, ରୋମଲତା ପୁଲକିଲା, କାମ ଝଲକିଲା; ସନ୍ୟାସ ବିକଲା, ସ୍ୱେଦ ବିନ୍ଦୁ ଗଳିଲା, ଶ୍ୱାସ ଚଳିଲା, ଗଣ୍ଡସ୍ଥଳ ଉଲସିଲା, ଭ୍ରୂଲତା ବିକାଶିଲା, ଶୃଙ୍ଗାର ରସେ ରସିଲା, ଜ୍ଞାନ ମୁଦ୍ରା (୫) ଖସିଲା ସମାଧି ନସିଲା, ଉତ୍କଣ୍ଠା ଦିଶିଲା, ବିକାର ମିଶିଲା, ଖେଦ ଜଳେ ପଶିଲା, ପାଦ ପାଣି ବସିଲା, ମନ କମ୍ପିଲା, ଖେଦ ଜଳ ମାଡ଼ିଲା, ଯୋଗାଭ୍ୟାସ ଛାଡ଼ିଲା, ଉର୍ଦ୍ଧ୍ୱବନ୍ଧ ତୁଟିଲା, ଇଷ୍ଟଭଙ୍ଗ ସୁମରିଲା କନ୍ୟାରସେ ଉଛଳିଲା, ବନିତା ବେଗ ବାନ୍ଧିଲା, ଭବସାଗରେ ଝାସିଲା, ଖେଚରୀ ସ୍ଥାନ ଫିଟିଲା, ପ୍ରେମ ଲତିକା ଦିଶିଲା, ରସ ଜଳଧିତ (୬) ମଜ୍ଜିଲା, (୭) ଜାନୁ କମ୍ପିଲା, ନାଭି ଝାଙ୍କୋଳିଲା, ଅମୃତ ଧାର ଗଡ଼ିଲା, ଛେଦ ଖେଦ ବଢ଼ିଲା (୮) ଯୋଗ ଅଭ୍ୟାସ

---

୧—ଜାଣିଲେ 'କ'। ୨—ଏ ମାୟା କନ୍ୟା ହିଁ ଏ ଅଟଇ ମୁହିଁ 'କ'। ୩ - କୋମଳ କଣ୍ଟକ ଜ୍ଞାନେ 'କ'। ୪—ଆରୁଢ଼ 'କ'। ୫—ସ୍ଥାନ ମୁଦ୍ରା 'ଖ'। ୬—ଛେଦ ଜଳଧିରେ। ୭—ମିଶିଲା 'କ'। ୮—'କ' ରେ ନାହିଁ।

ଛୁଟିଲା, ଏମନ୍ତ ସ୍ୱରୂପ ରୁଦ୍ରଗଣର ଦେଖି ସେ ମାୟା କନ୍ୟାର ଅଭିନବ ଚଇତନ ମୁଖ ଶୃଙ୍ଗ (୧) ସଲଜ୍ଜେ ମନ୍ଦ ମନ୍ଦ ହୋଇ ହସିଲା । ,ସେ ମାୟା କନ୍ୟାର ଜନ୍ମ ସାର୍ଥକ ହୋଇଲା (୨) ପାର୍ବତୀଙ୍କର ଶ୍ରମଧରହିଁ ବ୍ୟର୍ଥ ନୋହିଲା । କାମ ଦେବର ତରଜା ବଳିଲା (୩) ପୁଷ୍ପ ବାଣ (୪) ନେଇ ସେ ରୁଦ୍ରଗଣ ହୃଦୟରେ ଦଳିଲା । ସେ ମନ୍ମଥ ବିଜୟ ଲକ୍ଷ୍ମୀକି (୫) ପାଇ, ଅତ୍ୟନ୍ତ ହରଷ ହୋଇ, ଜ୍ଞାନ ସୃଷ୍ଟି-ଭୁଟାଇ, ନେତ୍ରପଦ୍ମ ଫୁଟାଇ ମତ୍ତଗର୍ବ ପୁରସ୍କାରେ (୬) କୁସୁମଧନୁ ଟାଣିଲା । ହରିହର ପାର୍ବତୀର (୭) ପ୍ରସାଦେ ଅପରାଜୟ ଶତ୍ରୁକୁ ଅନାୟାସେ (୮) ଜିଣିଲା । ଆହା ହନ୍ତା ସେ ଅଭିନବ ଚୈତନ୍ୟ ନାମେ ସିଦ୍ଧ ରୁଦ୍ରଗଣ ଗୋଟିର ବାକୁ ବିଜ୍ମ୍ଭଣ ଅବସ୍ଥାରେ, ନିଷ୍କଳ କୁରଙ୍ଗ ନୟନ ତାହାର ମନମଥ (୯) ପାଶେ ପଡ଼ିଲା । ଶିବ, ଶିବ ଊର୍ଦ୍ଧଗତ ସୁସୁମ୍ଣା ନାଳ(୧୦) ଅଧୋଗତକ ଗଡ଼ିଲା । ବନ୍ଧନ ମୁକ୍ତ ମାତଙ୍ଗ ମନ(୧୧ ଲବଣ୍ୟ ପଙ୍କେ ଲଖିଲା । ହରି ହରି ପରଂମ୍ପରା (୧୨) ଗଲା, ମନବୃଦ୍ଧି ଅନଙ୍ଗ ରଙ୍ଗେ ଭଙ୍ଗିଲା (୧୩), ନିତ୍ୟାନିତ୍ୟ ବସ୍ତୁ ବିଚାର ସ୍ତନସଂକଟେ ରହିଲା, ବ୍ରହ୍ମରନ୍ଧ୍ର ଭେଦିଲା, ପବନ ହିଁ ଇଁଅଳା ନାଳେ (୧୪) ବହିଲା, ଷଡ଼ଗୁଣ (୧୫) ସଂଗୋଷ୍ଠୀ ସରଧାକୁ କି ମୋହିନୀ ବ୍ୟାଘ୍ରୁଣୀ ଖେଦିଲା । କି ଧଇର୍ଯ୍ୟ ନାମ ଗିରିବରକୁ ଅପାଙ୍ଗ ବଜ୍ର (୧୬) ସ୍ୱଚ ଭେଦିଲା, ମହାତ୍ମା ପ୍ରଭବ ଲଜ୍ଜାକୁ ଦ୍ୱହାସ (୧୭) କୃନ୍ତ ମାଇଲା । ଶାନ୍ତରସ କମଳ ପୁଷ୍ପକୁ କି ଭ୍ରୂଲତା ସର୍ପିଣୀ ଖାଇଲା । କଇବଲ୍ୟ ପରମାନନ୍ଦକୁ କି ରତି ସୁଖେ ନିଭାଇଲା, କି ଯୋଗ ଅଭ୍ୟାସ ଅଗ୍ନିକି ଅଧରାମୃତ ବାରି ଲିଭାଇଲା, ଆହାସେ ସିଦ୍ଧ—ରୁଦ୍ରଗଣ ଗୋଟି, ଶରୀର ଯାଇଅଛି ତାହାର ପଞ୍ଚବାଣେ ଫୁଟି । ସେ ଭବ ଜଳଧିରେ ବୁଡ଼ିଅଛି, ତାହାର ଜ୍ଞାନ ଉଦୟ ବୁଦ୍ଧି ଉଡ଼ିଅଛି, ମନ୍ମଥ ଚୋଟେ ପଡ଼ିଅଛି, ତାହାର ଚୈତନ୍ୟ ବୃକ୍ଷ ଛୁଡ଼ିଅଛି, ତାହାର ହୃଦୟରେ ଅପାଙ୍ଗ ବାଣ ଗଡ଼ିଅଛି, ତାକୁ

---

୧ ଓ ୨ । 'କ' ରେ ନାହିଁ । ୩ । 'ଖ'ରେ ନାହିଁ । ୪ । ଶକ୍ତି । ୫ । ଲଜ୍ଜା ପାଇ 'କ' । ୬ । ପୁରୁଷକାରେ 'କ' ୭ । ମାହେଶ୍ୱରୀର । ୮ । ଅନାୟାସେ 'କ' । ୯ । ମନ୍ମଥ 'କ' ୧୦ । ସୁସୁମ୍ନା ନାଡ଼ 'କ' । ୧୧ । ନୟନ । ୧୨ । ପାରଂପର । ୧୩ । ରଙ୍ଗିଲା 'କ' ୧୪ । ଇଡ଼ା । ୧୫ । କ ରେ ନାହିଁ ସତ୍ୟଗୁଣ 'କ' । ୧୬ । ବାଣ 'କ' । ୧୭ । ଦହସିତ ।

ମୋହନ ଫାଶି ଭିଡ଼ିଅଛୁ, ତା ଇନ୍ଦ୍ରିୟମାନ ମଡ଼ିଅଛି, ତାହାର ଭେଦ, ଖେଦ, ଦ୍ୱନ୍ଦ ବଢ଼ିଅଛି । ତା ପଦ୍ମ ଆସନ ଲେଉଟି ଅଛି । ତା ସୁନ୍ଦର ମୁଖରୁ ସ୍ୱେଦ ଝୋପି ଝୋପି (୧) ହୋଇ ଗଳୁଅଛି । ମନ୍ଦ ମନ୍ଦ ପବନେ ଭ୍ରସକ ଯେହ୍ନେ ତେହ୍ନେ ପ୍ରାପ୍ତେକ ହୋଇ ଅଧର ଥୁରୁଥୁରୁ ହୋଇ କମ୍ପୁଅଛି (୨) । ଜୃମ୍ଭଣେ ଅଙ୍ଗଭଙ୍ଗ ହେଉଅଛି । ସାତ୍ତ୍ୱିକ ଭାବରେ ଦେହ ହୋଇଛି ଚମକଲା ଚମକଲା, ଅତର୍କିତ ଜଡ଼େ ଚକ୍ଷୁ ହୋଇଅଛି ତାର୍କିଲା ତାର୍କିଲା । ଏମନ୍ତ ଅବସ୍ଥା ଦେଖି ଈଶ୍ୱର ତାହାକୁ ବଚନ ବୋଲୁ ଅଛନ୍ତି ଅତ୍ୟନ୍ତ କୋମଳ ସୁସ୍ୱର କରି ହେ ବତ୍ସ ! ହେ ଅଭିନବ ଚୈତନ୍ୟ । ସିଦ୍ଧ ନୋହିଲା ତୋହର ଭୋଗ ଆସକ୍ତେ ମନ, ସେ ଯେବଣ ମନ୍ମଥ ମୋତେ ନଲ କାତର, ତୋତେ ଜାଣିମାର ତାର କେତେ ମାତ୍ର । ଏବେଠୁ ଉତ୍ତମ ନରେନ୍ଦ୍ର କୋଳରେ ଜନ୍ମ ହେବୁ ଯାଇଁ, ଆସମୁଦ୍ରାନ୍ତ ପୃଥ୍ୱୀ ଭୋଗ କର ତହିଁ । ଯୋଗୀର (୩) ଯହୁଁ ନିର୍ବିକଳ୍ପ ବୁଦ୍ଧି କଳ୍ପନା (୪) କଲେ ନଷ୍ଟେ ହୁଅଇଁ ସାଧି, ତୁ ହାଦେ ବାଞ୍ଛାକଲୁ ଯେମନ୍ତ, ଯୋଗ ଭ୍ରଷ୍ଟର ହାଦେ ଫଳଇଁ ତେମନ୍ତ ! ଏହ୍ନ କନ୍ୟାକୁ ପାଇବୁ ତହିଁ, ଶରୀର ଗ୍ରହଣ ବ୍ୟନକେ ମୃତ୍ୟୁମଣ୍ଡଳେ ଆନେ ଭୋଗ୍ୟନାହିଁ । ଜାଣୁ ସାଧୁ ଯେବେ ପତନ ହୋଇ ଯାଏ, କେ ଶମ୍ଭୁଲିଙ୍ଗ କେ ନୃପତି ହୁଏ ଏବେ ଯା ତୁ ସକଳ ବେଦନା ସହ, ଅନଙ୍ଗ ପଦ୍ମାକର ରାଜାର ପାଟବଂଶୀ ଶଶିପ୍ରଭା ନାମେ ରାଣୀ ତାହାର ଗର୍ଭରେ ରହ । ସେ ଅଭିନବ ଚୈତନ୍ୟ ନାମେ ରୁଦ୍ରଗଣ, ଏମନ୍ତ ଶୁଣିଲା ଯହୁଁ ଈଶ୍ୱର ତହୁଁ ଅମୋଘ ବଚନ, ଖଟିକାରେ ବସିଲା ତାହାର ଦେହେ ଚଇତନ । ଜନ୍ମମରଣ କଥା ସୁମରିଲା । ବିଷମ୍ଭ ବିଷମ, ଘୋର ନରକ ବିସୋରିଲା, ମନବୁଦ୍ଧି ଶଂକିଲା (୫) ଶରୀର ବାତେ କଦଳୀ ପତର ପ୍ରାପ୍ତେକ ହୋଇ ମହାଭୟ ପାଇ (୬) କମ୍ପିଲା । କାମାନ୍ଧକାର ଛାଡ଼ିଲା, ଜନ୍ମମରଣ ଦୁଃଖ ଚିତୋଇ ବୋଇଲା, ଆରେ ନଷ୍ଟେ ମତେ ଅବିଦ୍ୟା ବ୍ୟାଘ୍ରିଣୀ ପୀଡ଼ିଲା, (୭) ଜନ୍ମହୋ ବୋଲିବା ମାତ୍ରକେ କ କଳ ଦେବତା ଘୋଟିଲା । ମୁଖ ବିବର୍ଣ୍ଣ ଦିଶିଲା । ତୁଣ୍ଡ ସୁଖିଲା । ସାହାସ

---

୧—ବିନ୍ଦୁ ବିନ୍ଦୁ ହୋଇ 'କ' । ୨—ନୟନ କମ୍ପିଲ କମ୍ପିଲ ହୋଇ ଅଧର ଥୁରୁ ଥୁରୁ ହୋଇ ଚଳୁଅଛି 'କ' । ୩—ଯୋଗୀଯେହ୍ନେ 'ଖ' । ୪—ତୋହର କଳ୍ପନା ନଷ୍ଟ ହୋଇବ । ୫ । ଝମକିଲା 'ଖ' । ୬ । 'କ' ରେ ନାହିଁ ।

ଉଡ଼ଲା । ଚନ୍ଦ୍ରାଙ୍କୁର ଘୋଟିଲା । ଲୋଚକ ପଡ଼ଲା । ବାଣୀ ଭଜିଲା ।

ସେ ଆକୁଳଚିତ୍ତେ (୧) ତରୁଣେନ୍ଦୁଶେଖର ସ୍ତମ୍ଭରେ ଉଭା ହୋଇ, ମହାଉତ୍କଣ୍ଠ, (୨) ପାଇ, କରପଦ ଯୋଡ଼ି । ବେଗ ଶତ୍ରୁ ଗୁଡ଼ (୩) ଅବନୀରେ ଗଡ଼ି, କରପଦ ଯୋଡ଼ି, କାକୁସ୍ଥ ହୋଇ ବୋଇଲା । ହେ ନାଥ ତୋହର ପାଦପଦ୍ମକୁ (୪) ଆଶ୍ରେକରି ମୁଁ ଭୂମି ହୋଇଲି ଯଦ୍ୟପି, ମାୟା ମୋହ ପାପିଷ୍ଠକୁ ପରବଶମୀ କରି ମୋତେ ଘୋର ନର୍କକୁ ଦେଉଅଛ ସମର୍ପି, ହେ ଦେବ ଦେବେଶ ଯେବଣ ସେ ଦାରୁଣ ବଚନ ମୋତେ ଦେଲ ଆଜ୍ଞା, ତାହା ତ୍ରୈଲୋକ୍ୟ ବ୍ରହ୍ମାଣ୍ଡେକେ (୫) କରିପାରେ ଅବଜ୍ଞା ତ ଜନ୍ମାନ୍ଧ ଷୋଡ଼ଶ ବିକାର ଦୁଃଖ ମୁଁ ସ୍ତମ୍ଭରେ କହିବି, ଅତ୍ୟନ୍ତ କାକୁସ୍ଥ ହୋଇ ବୋଇଲା ହେ ନାଥ ! ମୁଁ ତାହା କେମନ୍ତ କରି ସହିବି । ହେ ନାଥ ! ତୁତ ସର୍ବଜ୍ଞ, ସର୍ବେଶ୍ୱର, ସର୍ବାପ୍ତ (୬) ସର୍ବମୟ, ସର୍ବ ସ୍ୱରୂପ, ସର୍ବଦ୍ରଷ୍ଟା ସର୍ବଆତ୍ମା, ସର୍ବହର୍ତ୍ତା, ସର୍ବକର୍ତ୍ତା, ସର୍ବସ୍ଥାୟୀ, ସର୍ବସାକ୍ଷି ରୂପ, ସର୍ବଜୀବ-ଜୀବନ ବ୍ୟାପକ, ସର୍ବାନ୍ତର୍ଯାମୀ, ତଥାପି ମୁହିଁ ଅପରାଧୀ ହୋଇ କହୁଅଛୁ ସ୍ୱାମୀ । ହେ ନାଥ ! ସେ ଜନନୀ ଜଠରେ, ମଳଭାଣ୍ଡ ପୃଷ୍ଠରେ, ମୂତ୍ର ନଦୀର ତଟରେ ପିଳୋହର ନିକଟରେ, ନାଡ଼ୀ ଚର୍ମଙ୍କର କୋଠରେ, ତ୍ରିକୋଣ ଅଗ୍ନିପୁଟ ଚର୍ମଅମେଧ ପୁଟରେ, ତିନ ଡହୁଡ଼ଙ୍କ ସଙ୍କଟରେ (୭) କମଠର ପ୍ରାୟେ ଅଙ୍ଗ ସଙ୍କୋଚଉଥିବ (୮) ଓଁତହିଁ ମହାବିଷମ ସଂକଟରେ ଶିବଶିବ । ତହିଁକୃମିମାନେ ଚଳୁଥିବେ (୯) କର୍ଣ୍ଣ ନାସାଦ୍ୱାରେ ଗଳୁଥିବେ + ଅନନ୍ତ ନାଡ଼ୀମାନେ ଛନ୍ଦଥିବେ + ଅଙ୍ଗଶ୍ରେଷ୍ଠମାନ (୧୦) କର ଚରଣାଦ ସହିତେ ଜଡ଼ ବାନ୍ଧଥିବେ, ଶରୀର ଯାକେ ଘୋଡ଼ୁଥିବେ + ପୁଣି ବଜ୍ରା ମାନଙ୍କର ଜଡ଼ବାଏ, ଜନନୀ ଉଠିବା ବସିବାଏ + ଝକଚ ବଁକଚ ହାଣ୍ଡି ମାନଙ୍କର ତାପ ସହିବାଏ, ଜଠରାଗ୍ନି ଜଳିବାଏ + ବାତ ପିତ୍ତ ଶ୍ଳେଷ୍ମ ବ୍ୟାଧି ପିଡ଼ିବାଏ + ରୁଧିରମାନଙ୍କର ଗଡ଼ିବାଏ (୧୧) + ଦୁଷ୍ଟ ଆହାରଙ୍କ ପଡ଼ିବାଏ + ନର୍କର ତାପସମୂ (୧୨) ସହିବାଏ + ଜନନୀ ଉଠିବା ବସିବାଏ

---

୧—ଜନ୍ମ ମରଣ ଖଣ୍ଡେ 'କ' । ୨—ଭସ୍ମ 'କ' । ୩—'କ' ରେ ନାହିଁ । ୪—'ଖ' ପଦାରବିନ୍ଦକୁ । ୫—'କ' ଚତୁର୍ଦ୍ଦଶ ଭୁବନେ । ୬—'କ' ରେ ନାହିଁ । ୭—ଡହୁଡ଼ର ନିକଟେ । ୮—'କ' ସଂକୋଚୁଥିବ । ୯—ଚରୁଥିବେ । ୧୦—'କ' ରେ ନାହିଁ । ୧୧—'କ' ସଢ଼ିକାଏ ୧୨—'କ' ଜ୍ୱରଙ୍କର ତାପ ।

+ଲଳାମାନଙ୍କର ଖସିବାଏ+କଣ୍ଠଗ୍ରାସ ମାନଙ୍କର ଜଳିବାଏ+ସପ୍ତଧାତୁ ପଡ଼ିବାଏ+ସପ୍ତ ଆଧାର ଜଡ଼ିବାଏ+ନାଡ଼ୀମାନ ବୁଲିବାଏ+ପ୍ରାଣାଦି ପବନ ବନ୍ଧିବାଏ+ତାପତ୍ରୟ ସନ୍ଧିବାଏ+ଚର୍ମ ପୁଟିକାରେ ରନ୍ଧିବାଏ+ତହିଁରେ ମୁହୁର୍ମୁହୁ ହୋଇ ଯାଉଥିବ ମୂର୍ଚ୍ଛା, କେମନ୍ତ କରି ସେ ତାପମାନ ଅଙ୍ଗେ ସହୁଥିବ । ହେ ନାଥ ! ସେ ଭୟଙ୍କର ନରକକୁ ମୋତେ ଦେଉଅଛ ଠେଲି । ଜନ୍ମ ବେଳର କଷ୍ଟ (୧) କହିଲେ ହେଁ ନ ସରଇ । ହରିହରି, କେବଳ ସୁମରିବା ମାତ୍ରକେହେଁ ଜୀବ ନ ଯାଇ ପାରଇ । ମାତାର ପ୍ରସବ କାଳେ କୁମ୍ଭୀନରକର ନାଳେ (୨) +ପବନଙ୍କର ବଳେ+ପୂତି ଗନ୍ଧ ରୁଧିରଙ୍କର ପିଚ୍ଛିଳେ+ଜୀବନର ବିକଳେ+କୁତ୍ସିତ ଲଳ ସ୍ରବ ବାଟେ+ହାଡ଼ଙ୍କର ସଂକଟେ+ଅତ୍ୟନ୍ତ ଆକୁଳେ+ପରମ ଆୟୁଷର ବଳେ+ମୁଣ୍ଡବାଟେ ପବନ ଖସୁଥିବ । ପୁଣ ପୁଣ କ୍ରମାହେ ପଡ଼ି ସ୍ଥାନେ ସ୍ଥାନେ ବସୁଥିବ । ମୃତ୍ୟୁ ଦେବତା (୩) ଥିବ ନିରନ୍ତରେ ଆକର୍ଷି+କାଳ ଦେବତା (୪) ଟାଣୁଥିବ ଗଳାରେ ଲଗାଇ ଅଜ୍ଞାନ ମୋହ ଫାସି+ଦଶ ପବନେ ଊର୍ଦ୍ଧ୍ୱଗତ ହୋଇ ପଶୁଥିବେ+ବ୍ୟାଧି ସର୍ପିଣୀମାନେ ବିକଟ ଦଂଷ୍ଟ୍ରା ଦେଖାଇ (୫) ହସୁଥିବେ+କଣ୍ଠାଗତ ପ୍ରାଣେ, ଧର୍ମ ଧର୍ମ ସୁମରଣେ, ରୁଧିର ଗନ୍ଧ ସଙ୍କୀର୍ଣ୍ଣ ବିଷମ ଦାଉ, ଶର୍ଙ୍ଗିମା ବସଉଁ କଷ୍ଟେ କଷ୍ଟେ ପ୍ରାଣ ପାଇ ଖସିବାର ; ବିକଳେ କଷ୍ଟେ କଷ୍ଟେ ପ୍ରାଣ ପାଇ ପଡ଼ିବ ତଳେ (୬) । ମହାସର୍ପ ଯେମନ୍ତ ବାହାର ହୋଇ ଅତ୍ୟନ୍ତ ସଙ୍କଟ ବଳେ ହେ ପରମେଶ୍ୱର ! ଯେତେବେଳେ ପୃଥ୍ୱୀରେ ପଡ଼ିବ କୋଽହଂ କୋଽହଂ କରି ଧ୍ୱନିଏ କରିବ । ଅଜ୍ଞାନ ସମୁଦ୍ରେ ମଜ୍ଜିବ । ପୁନରପି ବୁଦ୍ଧି ତେଜିବ । ଆପଣାକୁ ଆପଣେ ହରିବ । ସ୍ତନ ଲଳାପାନେ ମଜ୍ଜିବ (୭) । ବପୁ ହୋଇଥିବ ମଳେ (୮) ମଳିନ ।

---

୧--'ଖ' ଦୁଃଖ

୨--'କ' କୁଣ୍ଡ ନର୍କାଦି ନାଳେ ।

୩—'କ' ମୃତ୍ୟୁ

୪--'ଖ' କାଲ କଣ୍ଠରେ

୫--'କ' କଟ ବିକଟ ହୋଇ

୬—'କ' ରେ ନାହିଁ

୭—'କ' ଭଜିବ

୮—'କ' ରେ ନାହିଁ ।

ଜାଗ୍ରତ ସ୍ୱପ୍ନ ସୁସୁପ୍ତିରେ ହୋଇଥିବ ବିଲୀନ । ହେ ଜଗତ ଆତ୍ମା (୧) ସଦାଶିବ ! ମତେ ଈଶ୍ୱର ଭାବ ଛଡ଼ାଇ କରୁଅଛ ଜୀବ । ଆଦ୍ୟ ମଧ୍ୟ ପ୍ରାନ୍ତ ସମସ୍ତହିଁ କଠୋର । ହରି ହରି ପ୍ରଭୁମାନଙ୍କର ହୃଦୟ ହିଁ ସେ ଏଡ଼େ ନିଷ୍ଠୁର । ହେ ନାଥ ! ତଦନ୍ତରେ, କୁମାର ବୟସେ ଅକାରଣ ଶିଶୁଙ୍କର ରଙ୍ଗ କ୍ରୀଡ଼ା ରସେ + ଶରୀର ଆବେଶେ + ବିଦ୍ୟାର (୨) ଅଭ୍ୟାସେ + ପିତାମାତା ସହିତେ ଗୁରୁଜନମାନଙ୍କୁ ଭୟ ପାଉଥିବ ବିଶେଷ ।

ହେ ନାଥ ! ତଦନ୍ତରେ ଯୁବ ବୟସେ + ଅହଂମିଶ୍ର ବୁଦ୍ଧି ଏ ହୋଇବ + ଆଧ୍ୟାତ୍ମିକ, ଆଧି ଭୌତିକ, ଆଧି ଦୈବିକ ତାପତ୍ରୟ ଅଗ୍ନିରେ ଶରୀର ଦହିବ । ମନର ଶୋକ, ମୋହ, ପ୍ରାଣର କ୍ଷୁଧା, ପିପାସା, ଦେହର, ଜରା ମୃତ୍ୟୁ ଏ ଷଡ଼ ଉର୍ମି ବେଢ଼ିବ । ସମସ୍ତ ଅବସ୍ଥାନମାନ (୩) ସ୍ଥାବର ପ୍ରାୟେକ ହୋଇ ଏ ଶରୀର ସହିବ ବିଷୟ ବିଷ ଧାରିବ + ଧୈର୍ଯ୍ୟ ସରିବ + କ୍ଷୋଭ ବଳିବ + ତୃଷ୍ଣା ବଳିବ + ବ୍ୟାଧି ଆକର୍ଷିବ + ହିଂସା ବସିବ + ଆଶା ଦଶିବ + ନିର୍ଗୁଣ ଛନ୍ଦିବ + ଜନ୍ମମରଣ ରୁନ୍ଧିବ + କର୍ମ ବାନ୍ଧିବ + ଅବିଦ୍ୟା ରୁନ୍ଧିବ + ମୋହ ବଢ଼ିବ + ବିବେକ ଉଡ଼ିବ + ଚିନ୍ତାଜ୍ୱରେ ବୁଡ଼ିବ + ମାୟା ମୋହିବ + ଛନ୍ନ ଦଶିବ + ଅଜ୍ଞାନ ଘୋଟିବ + ଷଡ଼ଉର୍ମି ବେଢ଼ିବ + ବିଭ୍ରମ ବଳାତ୍କାର କରିବ + ନଶ୍ୱରୟ ଦେହ ମୁଁ ବୋଲି ମୁକ୍ତ ପଥକୁ ନ ନେବ + ଜ୍ଞାନ ଉଡ଼ିବ + ଶାନ୍ତି ଗୁଡ଼ିବ + ସ୍ନେହ କ୍ଷୀଡ଼ିବ + ସମୟ ଫୁଲିବ + ଶକ୍ତି ଭୁଲିବ + କନ୍ଦର୍ପ ମାରିବ, ଅଜ୍ଞାନ ଜଡ଼ିବ, ଶତଭ୍ରମ ବଢ଼ିବ, ବିବେକ ଉଡ଼ିବ, ସ୍ନେହ ବଢ଼ିବ, ଲୋଭ ପୀଡ଼ିବ ମନ ଗଳିବ, ଶତ୍ରୁ ଭଳିବ, ଅବିଦ୍ୟା ଭ୍ରମ ବଳାତ୍କାରେ ମୁକ୍ତିପନ୍ଥାକୁ (୪) ନେବ + ଶତ୍ରୁର ଚଞ୍ଚଳ + ବୁଦ୍ଧିର କଳ୍ପନା + ନିଦ୍ରାର ସ୍ୱପନ + ଅବିଦ୍ୟାର ଅଭ୍ୟାସ + ନଶ୍ୱରୟ ଶରୀରରେ ହୋଇଥିବ ପ୍ରକାଶ । ଏ ଦେହ ନଶ୍ୱରୟ ମୁଁ ବୋଲି ମନ ବୁଦ୍ଧି ଘେନମ । ବ୍ୟାଧିର ପରନିୟା ଔଷଧକୁ ସୁଖ ଭୋଗ ବୋଲି ମନ ବୁଦ୍ଧି ଘେନମ । କେବଣ ପ୍ରକାରେ ତୃଷା ବ୍ୟାଧି ଲୋଡ଼ିବ ପଣା ପେୟାଦିରସ । କ୍ଷୁଧା ବ୍ୟାଧି ଶାନ୍ତ କରଇ ଔଷଧ

---

୧—ଜଗତ କର୍ତ୍ତା

୨—ଅବିଦ୍ୟା 'କ'

୩—ପାରଂ ପର କର 'କ'

୪—ମୁଁ ପଦକୁ 'କ'

ପ୍ରକାରେ ଅନ୍ନବ୍ୟଞ୍ଜନାଦି ବିବିଧ ଗ୍ରାସ । କ୍ଷୁଧା ତୃଷା ନଥାଇ (୧) ଯେବେ ଅନ୍ନ ପାଣି କଏ (୨) ଲୋଡ଼ଇ ତେବେ । ଗ୍ରୀଷ୍ମଋତୁରେ ଯେବେ ଶରୀର ପୋଡ଼ଇ । ସେ ତାପ ବ୍ୟାଧିକି ଲୋକ ଚନ୍ଦନ ଅଉଷଧ ଲୋଡ଼ଇ । ହେମନ୍ତ ଋତୁରେ ଯେବେ ଶୀତ ବାଧା (୩) କରଇ । ବେଭାରେ ହେଁ ଚନ୍ଦନରୁ (୪) ଅଧିକ ସୁନ୍ଦର ଆଦର ସରଇ । କାମ ବ୍ୟାଧି ଯେବେ ହୋଇ ପ୍ରବଳ । ସ୍ତ୍ରୀ ଭୋଗେ ଶାନ୍ତ ହୋଇ ସେ ମନ୍ମଥ ଅନଳ । ନିଦ୍ରା ବ୍ୟାଧିକତ ଶଯ୍ୟା ପ୍ରତିକାର । ଇନ୍ଦ୍ରିୟ ସୁଖଭୋଗ କଣ୍ଠ ଅଗ୍ନି କି ଦେଖାଇ ବାର ଆକାର । ଏ ଶରୀର ଅଟଇ ବ୍ରଣ ବ୍ୟାଧିର ଆକାର । ଅନ୍ନ ଔଷଧ ଲେପ୍ୟ ଏହାକୁ ପ୍ରତିକାର । ଔଷଧ ନିମିତ୍ତ ଜଳପାନ କରି । ଜୀର୍ଣ୍ଣ ପଟ ବନ୍ଧନ ନ୍ୟାୟେ ବସ୍ତ୍ର ପରିଧାନ କରି । ଜନ୍ମ ମରଣ ଜରା ଏ ଶରୀରର ଧର୍ମ । ତୋହର ପାଦ ବ୍ୟତିରେକେ ନୋହିଲା କର୍ମ । ଅନାତ୍ମାମତେ ଅନିତ୍ୟ ଶରୀରକୁ ଆତ୍ମା ବୋଲି ସହୁଁ କରିଥିବ ମତ । ତହୁଁ ବ୍ୟାଧି-ମାନଙ୍କର ପ୍ରକ୍ରିୟା ଔଷଧିକୁ ଭୋଗ ପ୍ରାୟେ ମଣି ହେଉଥିବ ଉଚିତ ।

ହେ ନାଥ ! ଯୁବା ବୟସର ଅବସ୍ଥା ଦୁଃଖିତ କହିଲେ ନ ସରଇ । ଅସ୍ଥି ମାଂସେ ନିର୍ମିତ ସ୍ତ୍ରୀ ଶରୀରକୁ ଅତ୍ୟନ୍ତ ହରଷେ ରମଣ କରଇ (୫) । ଲାଳ ପୂରିତ ଅଧର ଅମୃତ ପ୍ରାୟେ ମଣି ପିଅଇ, ଚର୍ମ ଫୁଟିକାରେ (୬) ରକ୍ତ ମେଦ ପୂରିଇଲା ସ୍ତନ ପାଇଲେ ହେଁ ଖାଅଇ । ଚଳଚଳ ଚକ୍ଷୁ ପାଣି ଫୋଟକାର ଅପାଙ୍ଗ ଦେଖିଲେ ହେ (୭) ଜରଇ । ଅମେଧ୍ୟ ରୁଧିର ପୂତିଦୁର୍ଗନ୍ଧ ପଥରେ କୃମିର ପ୍ରାୟକ ହୋଇ, ମହାମୋହ ବଳରେ ଚୁମ୍ବନ ଦେଇ, ନିସ୍ତରିଲା ପ୍ରାୟେ ହୋଇ, ହରଷେ ରମଣ କରଇ । ଏମନ୍ତ ବସ୍ତୁ ଯେଉଁ ଅନାତ୍ମ ଅମିତ ଶରୀରକୁ ଆବୋରି, ଏବିବିଧ ଦୁଃଖମାନ ପାଉଥାଇ + ମୃଗତୃଷ୍ଣା ଜଳେ ପଡ଼ି + ଶିବଶିବ । ଏ ଦେହରେ ଯେବେ

---

୧—ନଥିବ 'କ'
୨—କିମ୍ବା 'କ'
୩—ବାଧା 'ଖ'
୪—ଚନ୍ଦ୍ରକୁ 'ଖ'
୫—ସ୍ତ୍ରୀ ରୂପକୁ ଦେଖିଲେ ତରଇ 'କ'
୬—ମୁଣିରେ 'ଖ'
୭—ଦେଖାଇଲେ 'କ'

ଜଗତକର୍ତ୍ତା ବିଧାତା ଭ୍ରାନ୍ତିରେ ଚର୍ମ ମାତ୍ରକ ଢାଙ୍କିବାକୁ ବିସ୍ମୃତେ ଯାଶୋରନ୍ତି (୧) + ରୁଧିରମାନେ ଗଳୁଥାନ୍ତେ, କୃମିମାନେ ଚଳୁଥାନ୍ତେ + ଅସ୍ଥିମାନେ ଦିଶୁଥାନ୍ତେ + ଜାଳମାନେ ମିଶୁହୁଅନ୍ତେ + ମଜ୍ଜାମାନେ ବହୁଥାନ୍ତେ, ମାଂସମାନେ ଶୁଖୁଥାନ୍ତେ, ବସାମାନେ ତରଳଯାନ୍ତେ, କାକମାନେ ବସୁଥାନ୍ତେ, ଶୃଗାଳମାନେ ଧାଉଁଥାନ୍ତେ + ଗୃଧ୍ରମାନେ ଖାଉଥାନ୍ତେ + ଶ୍ୱାନମାନେ ବେଢ଼ିଥାନ୍ତେ + ମାଛିମାନେ ଦଂଶୁଥାନ୍ତେ (୨) + ଏମନ୍ତ କରି ଯେ ଆମିଷ ସ୍ରୋହା (୩) ଜନ୍ତୁମାନେ ନିରନ୍ତରେ ଗୋଡ଼ାଇ ଧରୁଥାନ୍ତେ । କେ ଅଛି କାହାକୁ ନିବାରି ପାରନ୍ତେଟି + ଏମନ୍ତ ହୋଇ ଏ ଅନିତ୍ୟ ଶରୀର । ସମସ୍ତ ବିପତ୍ତିମାନଙ୍କର ଏ ଅଟଇ ଘର । ମେଦ ଅସ୍ଥି ନିର୍ମାଣ ଅତ୍ୟନ୍ତ ଜଡ଼ । ଶରୀର ବନ୍ଧି କେବା ହୋଇବ ବଡ଼, ବ୍ୟାଧିମାନଙ୍କର ଏତ ବଢ଼ିବା ସଦନ । ନିରନ୍ତରେ ଲକ୍ଷ କରି ମାରୁଥାଏ ମଦନ (୪), ଅନୁବ୍ରତେ (୫) ନବଦ୍ୱାରେ ସ୍ରବୁଥାଇ ନରକ । ବାହ୍ୟ ଅଭ୍ୟନ୍ତରେ ବିଚାରିଲେ କେହି ନୁହଇ ସରକ, ଏ ତ୍ରିଗୁଣ ବନ୍ଧନ ଦଉଡ଼ି ଜଡ଼ ଶରୀରକୁ ଦୁସହ ଦୁଃଖ ଯେତେକ + ଅହଂକାର ପ୍ରାପ୍ତେକ ହୋଇ (୬) ଯୁବାବସ୍ଥାରେ ମୁଁ ଗାଇବି (୭) ତେତେକ ।

ହେ ନାଥ ! ଏବର ଅନ୍ତରେ ଯେ ହୋଇବ ଜରା । ଏ ଶରୀର ଦିଶିବ ନଷ୍ଟ ବିଦ୍ୟାର ତରଙ୍ଗ ପରା । ଭ୍ରମରକୁ ଦୂଷଣ କରଇ ଯେବଣ ମୂକେଶ । ସେ ଯମ ରାଜାର ଶ୍ୱେତ ଚାମର ପ୍ରାୟେ ଦିଶିବ ପ୍ରକାଶ (୮) । ମନୋପୃଳକୁ ନିନ୍ଦଇ ଯେବଣ ସେ ଚକ୍ଷୁ । ସେ ମର୍କଟର ବିକୃତ ନୟନ ପ୍ରାଏ ହୋଇବ (୯) ଦେଖୁଁ ଦେଖୁଁ । ଶୁଦ୍ଧ

---

୧—ଏ ମୂର୍ତ୍ତିମନ୍ତ ଜଡ଼ ଶରୀରକୁ ଆଚ୍ଛାଦିତ ହୋଇ ଯେବେ ଏ ଚର୍ମମାତ୍ର ନ ଥାନ୍ତାଟି—'କ'

୨—ଜଡ଼ୁଥାନ୍ତେ 'ଖ'

୩—ସ୍ପୃହା 'କ'

୪—ମେଦ ଅସ୍ଥି ସମୂହର ମଧ୍ୟେ ଅନୁବ୍ରତେ ପ୍ରଲାପକରି ମାରଇ ମଦନ 'କ'

୫—ଅନବରତ 'ଖ'

୬—ମଣି 'କ'

୭—ପାଇବିନା

୮—ଶ୍ୱେତ ଚାମର ପ୍ରାପ୍ତେକ ହୋଇବ ପ୍ରକାଶ 'କ'

୯—ଶୁଷ୍କ ଶବର ପ୍ରାପ୍ତ ଦିଶିବ ଦେହ ଭାନ୍ତ 'ଖ'

ସୁବର୍ଣ୍ଣ ପ୍ରାୟେ଼କ ଯେବଣ ସେ ଶରୀର କାନ୍ତ । ସେ ଶୁଷ୍କ ଶୁଶୁମ୍ବର (୧) ପ୍ରାୟେ଼କ ହୋଇବ କାନ୍ତ । ସିଂହ ବହମ ପ୍ରାୟେ଼କ ଯେବଣ ସେ ମଝ୍ଯା । ସେ ଲଙ୍ଗଳ କାଠର ପ୍ରାୟେ଼ ଦଶିବ (୨) କୁବୁଜା । ତୁଣ୍ଡରୁ ନିରନ୍ତରେ ଗଳୁଥିବ ଲାଳ । ବକ୍ଷସ୍ଥଳ ମାଡ଼ିଥିବ କାଳା ହାଡ଼ମାଳ କଂକାଳ ସେ ଦେହ ଦଶଇ । ଫପୋଡ଼େ ଆସି ବଳତ ଗଳିତ ମିଶଇ । ନୟନ ଗଳଇ ତଳକୁ କରଇ ତୁଣ୍ଡ । ବାତେ ପାଦପ ପ୍ରାୟେ଼ ହୋଇ ହଲୁଥାଇ ମୁଣ୍ଡ+ନାଭି ଲେଉଟାଇ+ବଳ ତୁଟଇ, ଚରଣ ନ ଉଠଇ (୩) ଉଠିଲେ ଫୁଟଇ, ଲଉଡ଼ି ଧରି ଥରଥର ହୋଇ ଉଠଇ । ଭେଡ଼ା କେ ବସଇ । ହସିଲେ କାଶଇ । ଇନ୍ଦ୍ରିୟମାନେ ଭିତରକୁ ପଶନ୍ତି । ତରୁଣ ଲୋକମାନେ ଦେଖିଲେ ହେଁ ହସନ୍ତି !

ହେ ନାଥ ! ଭୋଗଇଚ୍ଛା ସରଇ+ସପ୍ତଧାତୁ ମରଇ+ସଦ୍‌ବୁଦ୍ଧି ହରଇ+ବଭଲ କରଇ+ପ୍ରପଞ୍ଚ ଦଶଇ + କେଶ ଖସଇ + ଥାନ ପଶଇ, ଧଇର୍ଯ୍ୟ ସରଇ (୪) + ଶିର ଫାକୋଡ଼ଇ (୫) + ରୋମ ଟାଙ୍କୋରଇ+ହୃଦୟ ଚମକଇ+ଜାନୁ କମ୍ପଇ (୬)+ନିଶ୍ୱାସ ଧକଇ +ନିଦ୍ରା ଯାଇଥିଲେ, ସ୍ୱପ୍ନ ଅବସ୍ଥାରେ ପ୍ଳବକହିଁ ଚମକନ୍ତି, ପ୍ରଳାପ କରଇ, କୋମଳ ଆହାର ହିଁ ନ ଜରଇ (୭)+ଅଗ୍ନି କ୍ଷୀଣ (୮)+ଦୂର ଶବ୍ଦ ନ ଶୁଭଇ ଶ୍ରୁତିଲୀନ । ଯୁବାସ୍ତ୍ରିମାନେ ଦେଖିଲେ ହେଁ ହସନ୍ତି (୯), କର୍ଣ୍ଣମୂଳ ପଶିଯାଇ ଦାନ୍ତ ପଡ଼ିଯାଇ+ଅମୃତ ସମାନ ଗ୍ରାସ ପାକୁଳଆଇ ଖାଇ, ଅଶୁଚିମନ୍ତ ହୋଇ ଅମୃତାଦ୍ୱ ଲେହ ପାଇ, ଲେହଇ ମନ୍ଦେ ମଳନ । ଆତ୍ମର ଧର୍ମ ଯାଇ ଶରୀର ଖିନ୍ନ । ଦୂର ଶବଦ ନ ଶୁଭଇ ଶ୍ରୁତି ଗଳଇ ହା ଧିକ ଧିକ, ଏଭଳ ବଡ଼ମ୍ବନା ଅବସ୍ଥାରେ । ଯେ ମଣିରତ୍ନ ମୁକୁତା ଗୁନ୍ଥଇ

୧—ଶୁଷ୍କ ଶବର ପ୍ରାୟ ଦଶିବ ଦେହ ଭ୍ରାନ୍ତି 'ଖ'
୨—ହୋଇବ ।
୩—ଚରଣ ଲେଟଇ 'କ'
୪—ନାଶଇ 'କ'
୫—ସଂକୋଚଇ 'କ'
୬—କମ୍ପାଇ 'ଖ'
୭—ଜରନ୍ତି 'ଖ'
୮—ଖିନ୍ନ 'କ'
—'କ'ରେ ନାହିଁ ।

ନଶାକାଳେ । ତାଙ୍କୁ ଶ୍ୱେତ ବୃଷଭ ନ ଦିଶଇ ଦିନ ଦୁଇ ପ୍ରହର ବେଳେ । ଲୋକ ନ ପୁଚ୍ଛଇ । ଯେବଣ ପତ୍ନୀକ ନିରନ୍ତରେ ଅହର୍ନିଶ ଭାବଇ, ତାହାର ନାମ ଧଇଲେ ଏହାକୁ ଅମୃତ ବିଷ ପ୍ରାୟ ଲାଗଇ । ବାବୁ ଏ କଷ୍ଟ ଦଶାରେ ବୁଦ୍ଧି ସୁଦ୍ଧି, ଦାନ, ଧ୍ୟାନ, ଧଇର୍ଯ୍ୟ ଶଉର୍ଯ୍ୟ, ଆଗୃର ବିଗୃର, ଶାନ୍ତ କାନ୍ତ, ସୁର ସୁନ୍ଦର, ଧୀରବୀର, ଲାଜ ଉପାୟ, ଉଦ୍‌ବେଗ ଉତ୍ସାହ, ଧର୍ମକର୍ମାଦି କରି ସମସ୍ତ ଗୁଣହିଁ ଯାଇ । ଏକା କେବଳ ତୃଷ୍ଣାମାନଙ୍କ ତରୁଣ ହୋଇଥିବାକୁ ଥାଇ । ହରି ହରି ଅନର୍ଥରେ ଏ ଜନ୍ମ ଗୋଟାର ବାଲ୍ୟତ ଭାବଯାଇ ଅଜ୍ଞାନ ମତେ । ତରୁଣ ଭାବ ଯାଇ ବନିତା ଭୋଗ (୧) ଆସକତେ (୨) । ବୃଦ୍ଧ ହୋଇଲେ ତ ବ୍ୟାଧି ଧାରଇ । କୋଦ୍ରକୋଶ (୩) କୃମିର ପ୍ରାୟେକ ଆପଣା ପାଶରେ ପଡ଼ି ଆପଣାହିଁ ମରଇ । ପ୍ରାତଃକାଳ ମଳମୂତ୍ର ମୋଚନାଦିରେ ଯାଇ ମଧ୍ୟାହ୍ନ କାଳତ କ୍ଷୁଧା ପିପାସେ ଖାଇ । ସାୟଂ କାଳେତ ମଦନେ ମତ୍ତ । ରାତ୍ର କାଳେତ ମୃତ୍ୟୁପିଣ୍ଡର ପ୍ରାୟେକ ହୋଇ ତତ୍‌କାଳ ନିଦ୍ରାରେ ଗତ । ଆଉକାହିଁ ପରମାନନ୍ଦର ପଦ୍ମପାଦ (୪) ହୋଇବ ପ୍ରାପତ ।

ଏମନ୍ତେ ସେ ଅଭିନବ ଚୈତନାମେ ରୁଦ୍ରଗଣ ବୃଦ୍ଧା ଅବସ୍ଥା କହି ମରଣ ଦୁଃଖ ସୁମରିବା ମାତ୍ରକେ ଅବନୀରେ ପଡ଼ିଲେ ମୂର୍ଚ୍ଛାଗତ ହୋଇ । ସେହିକ୍ଷଣି ଚେତନା ପାଇଲେ+କ କାଳ ଝିମାଇଲେ+ଗଦଗଦ ହୋଇ ଶୋକେ ବୋଇଲେ+ଏ ଜନ୍ମ ମରଣ ନରକ ସମୁଦ୍ରୁଁତ ଜନ୍ମମରଣ ବାସନା ବନ୍ଧର ବଳେ ତରିବାକୁ ନ ହୋଇଲେ+ଭୋ ପରମେଶ୍ୱର ଖଣ୍ଡେନ୍ଦୁ ମଉଳ । ମୃତ୍ୟୁ ଦଶାର କଷ୍ଟ (୫) କହିବ ବୋଲି ପାଦପଦ୍ମେ ଦେଲେ ତାହାର ନିଜ ମୌଳି (୬)+ସେ ଅଭିନବ ଚୈତନ ସୁମରଇ ହରି ହରି । ତାହାର ମୁଖ କମଳ ଅଛି ଲୁଳି, ଗଣ୍ଡସ୍ଥଳୁଁ ସ୍ୱେଦ ଗଳି, ବଦନେ ପଡ଼ୁଛି ଧୂଳି, ନୟନୁ ନୀର ଗଳି,+ବେଦନା ହୃଦୟରେ ଜଳି+ଶରୀର ମଣୁଅଛି ସଳି, କାମ ଦେବକୁ ଦେଉଅଛି

---

୧—ସଙ୍ଗତେ 'ଖ'

୨—ଆସକ୍ତ 'କ'

୩—କୁସି ଆଉ 'କ'

୪—ପଦାରବିନ୍ଦ 'କ'

୫—କଥା 'କ'

୬—ନେଇ ପଦାରବିନ୍ଦେ ସମର୍ପିଲେ ମଉଳି ।

ଗାଳ+ଆରତେ ହେଉଅଛୁ ବଭଳ+ବକଳେ ଅତ୍ୟନ୍ତ ଆକୁଳ, ଜୀବ ଯାଉଅଛୁ ଟଳ+କରପଡ ଅଛୁ ଯୋଡ଼, ସାଷ୍ଟାଙ୍ଗ ପ୍ରଣାମେ ପଡ଼+ମରଣ ଦୁଃଖ କହୁଅଛୁ କାକୁସ୍ଥ ହୋଇ ଅବନୀ ପରେ ପଡ଼ ।

ହେ ନାଥ ! ଗଭୀର ଜାଗ୍ରତ ମୁହୂର୍ତ୍ତି କହୁ ଦିବସ ଥାଉଁ । ବଚନ ଭ୍ରଷ୍ଟ ହୋଇ କଥା କହୁଁ କହୁଁ । ଚେତନା ବୁଡ଼ଇ, ପ୍ରକୃତ ଆନ+ଜ୍ଞାନ ବୁଡ଼ି ବିବର୍ଣ୍ଣ ଦିଶଇ ନୟନାଦି ସ୍ଥାନ+ଛନ୍ନଛାମ (୧) ହାସ ପ୍ରାସ, ତାପତାପ, ଆଧିବ୍ୟାଧି, ଊର୍ମିଦାହ,+ଜ୍ୱରଜଡ଼, ଶ୍ୱାସକାଶ, ପ୍ରଳାପ ହାସ, ଭ୍ରମଝାମ, ମୋହ ଶ୍ରମ, ଭେଦଖେଦ, ତୃଷାକ୍ଷୁଣା, ଅଙ୍ଗଭଙ୍ଗ, ଶୀତପୀତ, କମ୍ପଧମ୍ପ, ଜୀର୍ଣ୍ଣସୀର୍ଣ୍ଣ, ଜନ୍ମ କର୍ମ ଇତ୍ୟାଦି କରି ସମସ୍ତ ଦୋଷ ଆସି ଆଶ୍ରେ କରନ୍ତି । ଦୁଷ୍ଟ ଆହାରଙ୍କର ସମଂଧରୁ ପ୍ରଥମରେ ମହାବ୍ୟାଧିମାନେ ନାଭିମଣ୍ଡଳରୁ (୨) ସଞ୍ଚରନ୍ତି । ତେଣୁ ପବନମାନେ ହୁଅନ୍ତି ଅତ୍ୟନ୍ତେ ସ୍ଥିର । ଶ୍ଳେଷ୍ମା ବ୍ୟାଧି ସମ୍ପୂର୍ଣ୍ଣ ହୋଇ ବ୍ୟାପଇ ଶରୀର । ତେଣୁ ପାଣିର ଉରୁଁ ଅଗ୍ନି ପଳାଇ । ସୁଷୁମ୍ନା ନାଡ଼ୀକି ବୋଲି ପବନ ବଳାଇ ।

ମନପବନ ଅଗ୍ନି ଏ ତିନହେଁ ଏକ ମୁଖେ ପଦ୍ମସୂତ୍ରେ ସୁଷୁମ୍ନା ବାଟେ ପଶୁଥାନ୍ତି ଦୁଃଖେ ଦୁଃଖେ । ଅମୃତ କଳାମାନ ପୋଡ଼ୁଥାନ୍ତି । ଷୋଡ଼ଶ ଡମ୍ବରୁ ଫେଡ଼ୁଥାନ୍ତି (୩) ସେ ଡମ୍ବରୁ ଖଣ୍ଡି ଏ ଖଣ୍ଡି ଏ ଫିଟୁଫିଟୁ ବ୍ୟାକୁଳ ଯେତେ । ଶତେ ନାଗର ଜ୍ୱାଳା ନୋହିବଟି ତେତେ । ପ୍ରାଣ ପବନ କଣ୍ଠ ଦେଶକୁ ଧାଇଁ+ହାକୁଟିଆଇ ହୋଇ ଉଠଇ ଧଇଁ+ଏକ ଏକ ଧଇଁ ହୃଦୟୁ ପଦ୍ମରୁନ୍ଧନ୍ତି+କ ଖାଷକୁନ୍ତ ଯେକଣ ଶରୀର ମହନ୍ତି । ବିଷମ ଶ୍ୱାସ ପ୍ରବଳରେ କାଠିମାନେ ଭାଙ୍ଗନ୍ତି (୪) । ନାଡ଼ିମାନେ ଗୁଡ଼ିଆଇ ହୋଇ ମୂର୍ଦ୍ଧନା ଟଳନ୍ତି (୫) । ସେ ନାଡ଼ୀ ମାନଙ୍କର ବୁଲନ୍ତେ ସପ୍ତଧାତୁ ମରଇ । ହସ୍ତୀ ଭିତରେ ପଶି ଯେହ୍ନେ ସିଂହ ବିଦାରଇ । ଶ୍ଳେଷ୍ମା ବ୍ୟାଧି କଣ୍ଠ ଦେଶରେ ବସି । ପରମହଂସ (୬) ପର୍ଯ୍ୟନ୍ତେ ଥାଇ ଆହବି । ପବନ

---

୧—ଛାମ 'କ'
୨—ନାଭି କମଳରେ 'କ'
୩—ଫୁଟୁଥାନ୍ତି 'କ'
୪—ଭାଜୁଥାନ୍ତି 'କ'
୫—ମୁର୍ଦ୍ଧନରେ ଲାଗୁଥାନ୍ତି 'କ'
୬—ବ୍ରହ୍ମ 'କ'

ବାଟ ମାନଙ୍କରେ ଜଳପୂରନ୍ତେ । ବ୍ୟାନ (୧) ପବନ ଊର୍ଦ୍ଧ୍ୱକୁ ଉଠଇ ତ୍ୱରିତେ । ବାଟ ନ ପାଇ ସନ୍ଧୁଁ ପବନ ଆକୁଳ । ହରି ହରି । ମୂର୍ଦ୍ଧନା ଫାଟିବା (୨) ପ୍ରାୟେ ତହିଁର ବ୍ୟାକୁଳ । ବାତପିତ୍ତ ଶ୍ଳେଷ୍ମା ଯେ ହୃଦୟରେ ଜଡ଼ ୍ସେ ଶରୀର ପ୍ରଳୟ ଜଳ ବ୍ୟାପୀ ପବନକୁ ଘଉଡ଼ଇ (୩) । ସେ ଜୀବନ ପଳାଇ ଯାଇ ଏକା ମେରୁଦଣ୍ଡାକୁ ଆଶ୍ରେକରି । ଏଥିକି ବଇଦ ଚକିତ୍ସାଏ ବୋଲନ୍ତି ଛାଡ଼ିଅଛି ନାଡ଼ୀ ।

ତଳେ ତଳେ ପବନ ଛାଡ଼ିବାର ବେଳେ । ବ୍ରହ୍ମଅଗ୍ନିରେ ପଶିଲି ପ୍ରାୟେ ଜ୍ୱାଳା ସେ କାଳେ । ପ୍ରଳୟ ଅନଳ ସଙ୍ଗତେ, ପ୍ରାଣାଦି ପବନ ସମେତେ, ମନ ବୁଦ୍ଧି ଅହଙ୍କାର ଚଉତେ, ବ୍ରହ୍ମରନ୍ଧ୍ର ବାଟେ, ଅତ୍ୟନ୍ତ ସଂକଟେ, ଊର୍ଦ୍ଧ୍ୱଗତ ହୋଇ ପଶୁଥାନ୍ତି + ରକ୍ତଧାତୁମାନଙ୍କୁ ଶୋଷୁ-ଥାନ୍ତି । ଡମ୍ବରୁମାନେ ଯେତେବେଳେ ଭେଦୁଥାନ୍ତି + ରସ ବୈଦ୍ୟମାନେ ସେତେବେଳେ ଚେତନ୍ତି + ତଦନ୍ତରେ ଅଗ୍ନି ଯାଇ ଭ୍ରମର ଗୁମ୍ଫାରେ ପଶଇ । ତୁଣ୍ଡ ବିସ୍ତାର କରି, ଆଖି ଖୋସାଇ, ଘଟିକା ଦ୍ୱାରେ କବାଟ ପଡ଼ଇ । କଣ୍ଠ କପୋଳରୁ ଝାଳ ଗଳଇ । ସ୍ଥାନ ଆଦି ବନ୍ଧମାନ ଲେଉଟଇ । ହଂସ କୋଠରୁ ପାଣି ସରଇ । ଭ୍ରମର ଗୁମ୍ଫାରୁ ଅଗ୍ନି ଚଳଇ । ତ୍ରିବେଣୀ ଘାଟରେ ପଶି ବକବକ ଜଳଇ । ଅଗ୍ନି-ତରେ ଜୀବନ ଭାସଇ । ଶ୍ରୀହଟ ପାଟଣାରେ ଜୀବନ ପଳାଇ ପଶଇ । କେବଳ ଅନ୍ତର୍ଲୀନ ପ୍ରାଣଥାଇ କଣ୍ଠ ଦେଶର ସଙ୍ଗେ, ସାଡ଼ଙ୍ଗା (୪) କରିଥାଇ ସକଳ ଅଙ୍ଗେ । ଅଗ୍ନି ଶିଖା ଯେବେ ଲାଗଇଶ୍ରୀହଟେ । ଜୀବନ ପଳାଉଥାଇ ସିସୁମ୍ନା ବାଟେ । ଇଅଳା ପିଙ୍ଗଳା ଦୁଇ ଦ୍ୱାର ପଡ଼ଇ । ମଲା ବୋଲି ଲୋକ ତେତେବେଳେ ଲୋକଙ୍କୁ ଛାଡ଼ଇ । ଶିର ବୁଲଇ କମ୍ପାଇ ନୟନ । କାଉଁରି ମଣ୍ଡଳେ ଯାଇ ଲାଗଇ ଦହନ । ତେତେବେଳେ ଗ୍ରହଣ କଲା ଶରୀର (୫) ନାଶଇ । ଯାତନା ଶରୀର ଆସି ଶନ୍ୟରେ ବସଇ । କୃତାନ୍ତର ଦୂତ ଧାଡକାରେ (୬) ମିଶଇ । କାଳ

---

୧ — ପ୍ରାଣ 'କ'

୨ — ଫୁଟିଲି 'କ'

୩ — ପ୍ରଳୟ ପବନକୁ ଘେନି ଜୀବନକୁ ଘଉଡ଼ଇ 'କ'

୪ — ସାରଙ୍ଗା 'କ'

୫ — ପାର୍ଥିବ 'କ'

୬ — ଝାଡକାରେ 'ଖ'

ଦଣ୍ଡ ଫାଶୀ ଲଗାଇ ଆକଷଇ । ପୁନଃ ପୁନଃ କଷ୍ଟ ଦୁଃଖ ଦେଇ ପୀଡ଼ନ୍ତି । ପିଶାଚଗଣମାନେ ଆସି ଭିତରେ ବେଢ଼ନ୍ତି । ଧ୍ରୁବମଣ୍ଡଳେ ଯାଇ ଅଗ୍ନି ଲଗଇ ଯେବେ । ପରମ ହଂସ ଉଡ଼ିବାକୁ ଲୋଡ଼ଇ ତେବେ । ନବଚନ୍ଦ୍ରବୋଲି ପୋଡ଼ଇ ଅଗ୍ନି । ସଙ୍ଗତେ ଥାଇ ମନ ପବନ ବେନି । ସେ ଚନ୍ଦ୍ରେ ଚନ୍ଦ୍ରେ ଅଗ୍ନି ଲଗିବାର ବେଳେ । ସେ ଦୁଃଖ ସହିବାକୁ ନାହିଁ କେ ତ୍ରୈଲୋକ୍ୟ ମଣ୍ଡଳେ । ତହୁଁ ଉତ୍ତରେ ସେ ଜୀବନ ବେଗେ ବେଗେ । ପଳାଇ ପଶଇ ସହସ୍ର ଦଳ କମଳ ଲଗେ । ତହିଁ ତାପ ପ୍ରକାଶର ଯେତେବେଳେ ପ୍ରଳୟ ପବନର ବଳେ+ସେଠାରୁ ଜୀବନ ପଳାଇ ଅତ୍ୟନ୍ତ ବିକଳେ

ତ—କେଉଁଣ ଠାବରେ ସହୁଁ ନ ପାରଇ ରହି । ପୁନରପି ଚନ୍ଦ୍ର ବିମ୍ବ ଭିତରେ ପଶଇ+ଅତ୍ୟନ୍ତ ଭୟ ପାଇ+ତହିଁ ଉପରେ ଆଉ ଯିବାକୁ ଠାବ ନାହିଁ । +କାଳ ଗ୍ରାସିଲେ ଆଉ ଗୁଡ଼ିପିବ କାହିଁ । + ସେଠାରୁ ଅଗ୍ନି ଉଠଉ ଯେବେ ଚମତ୍କାରେ । ପ୍ରାଣ ଚନ୍ଦ୍ରକୁ ଯାଇଁ ଛୁଅଇଁ ଧାଡ଼ିକାରେ । ଖସଇ ଇନ୍ଦୁ, ଝରଇ ବିନ୍ଦୁ, ମରଇ ଜୀବ । ସ୍ଥୂଳ, ସୂକ୍ଷ୍ମ, ଶୂନ୍ୟ ଲିଙ୍ଗ ଶରୀର । ଏ ତିନି ପଦାର୍ଥର ନାନା ଅବସ୍ଥା ସରଯାଇ । ଶୁଭାଶୁଭ କର୍ମବନ୍ଧୁ କରି ଯଥୋଚିତ ଯୋନି ପାଇ । ଏଥୁ ପୁନରପି ଜନ୍ମ । ପୁନରପି ମରଣ , ପୁନରପି ଜନନୀ ଜଠରେ ଶୟନ । ଜନ୍ମମରଣ । ଏ ଚକ୍ରପ୍ରାପ୍ତ ହୋଇ କରୁଥିବ ଭ୍ରମଣ । ଭୋଳାନାଥ ! ବୁଦ୍ଧିରଧନ୍ଦେ (୧) +ତ୍ରିଗୁଣ ବନ୍ଧେ, (୨) ମନ୍ମଥର ଅନ୍ଧେ; ଅରି ପଟଳଙ୍କର ବଳେ, ଜୀବାଦିକର୍ମେ, ଜନ୍ମ ମରଣ ଶ୍ରମେ, ମମତା ପାଶେ, ଐଶ୍ୱର୍ଯ୍ୟ ଆଶେ କ୍ରୀଡ଼ା ରସେ+ବନିତା ବଶେ, ସଂକଳ୍ପ (୩) ଜାଳେ + ଦୁଷ୍ଟ ଚିତ୍ତର ବଳେ, ଅନ୍ତର୍ଗତର ଅଶୁଦ୍ଧେ,+ଅନାସୃତ ବନ୍ଧେ (୪) ବ୍ୟାପାର ଗୃହେ, ତୃଷ୍ଣାର ସ୍ନେହେ, ଇନ୍ଦ୍ରିୟମାନଙ୍କର ଲାଳନେ,+ ମନବୁଦ୍ଧିଙ୍କର ପାଳନେ+ପୁତ୍ର କଳତ୍ର ଧନ ଧାନ୍ୟେ,+ଭ୍ରାନ୍ତ ଅଜ୍ଞାନେ ମାନାଭିମାନେ, ଅବିଦ୍ୟା ମଳନେ (୫) +ମନ ବୁଦ୍ଧି ଚଳନେ+

---

୧—ରନ୍ଧ୍ରେ 'କ'
୨ 'କ' ରେ ନାହିଁ
୩—ସକଳ 'ଖ'
୪—ବୁଦ୍ଧିଏ 'କ'
୫—ଅବିଦ୍ୟା ଧନେ 'ଖ'

ବାସନା ମାର୍ଗେ+ଷଡ଼ଉର୍ମିଙ୍କର ସଙ୍ଗେ, ଅବସ୍ଥା ନଚ୍ଛେ (୧) ବିଷୟ୍ସ୍ତ ଜଡ଼ ଆଶ୍ରୟେ+ପୁନ କଳନାଦ ରଞ୍ଜନେ+ଅହଙ୍କାର ଛନ୍ଦେ, ପୁନ କଳନାଦ ଧନ୍ଦେ (୨) ପୁରୁଷକାର ଅରଜନେ । ଅହଙ୍କାର ଶରଣେ ବିପତ୍ତି କାରଣ କରି ନର୍କ ସମୁଦ୍ରେ ହେଠ ବୁଡ଼ ହେଉଥିବ (୩) ସମସ୍ତ ଦୁଃଖମାନ ପାଉଥିବ, ସମସ୍ତ ଦୋଷମାନ ଅଦୋଷ ବୋଲି କହୁଥିବ ! ଆକାଶର ଯେମନ୍ତ ଅନ୍ତ ନାହିଁ, ଏ ଜନ୍ମ ମରଣ ଦୁଃଖ ହେ ପରମେଶ୍ୱର ସରିବ କାହିଁ ?

ହେ ନାଥ ! ତୋତେ (୪) ଆଶ୍ରେକରି ନୋହିବ କର୍ମ' ମୁକ୍ତ । ଏ କଥା ମହା ପ୍ରଭୁଙ୍କର ହୋଇବ ଅଯୁକ୍ତ (୫) । ସେ ଅଭିନବ ଚୈତନ୍ୟ ନାମେ ରୁଦ୍ରଗଣ ଏବଂଭୂତ ବଚନମାନ କହିଲ । ଅନେକ କାକୁସ୍ଥ ହୋଇଲ । କରପତ୍ର ଯୋଡ଼ି ଜଗତଈଶ୍ୱର ଶ୍ରୀ ମୁଖକୁ ଚାହିଁଲ । ପଞ୍ଚାଶ ବର୍ଣ୍ଣେରେ ସ୍ତୁତି କରୁଅଛୁ । ଶିବାୟ ନମଃ ଶିବ ଶିବ ଶିବ । ଜୟ ଜୟ କୁନ୍ଦ କୁମୁଦ କୁରଙ୍ଗଧର (୬) କର୍ପୂର କରକା କର ହେମ ଧବଳ, କମ୍ବୁସମକଣ୍ଠ । କୋକନଦ ମାଳା ଆଭରଣ । କର କଳିତ ବ୍ରହ୍ମ କପୋଳ । କାକୋଦର କଙ୍କଣ । କୁରଙ୍ଗ ଚର୍ମ କଟି (୭) ଶୋଭନ । କାଳାନଳ ନୟନ । କର୍ଣ୍ଣେ କୁଣ୍ଡଳ ମଣ୍ଡିତ । କୃଷ୍ଣବର୍ଣ୍ଣ ଭୁଜଙ୍ଗ ମକର କର (୮) କଳା ନିଧିଧର । କଳା ପ୍ରବଣ (୯) । କାଳିକା ସେବିତ ଚରଣ ତଳ । କାଳାନ୍ତକ ରୂପ । କପିଳ କପିଳାନନ (୧୦) । କପିଳାସ କନ୍ଦର ନିବାସନ । କାମାଙ୍ଗନାଶନ । କଇବଲ୍ୟ (୧୧) ବରପ୍ରଦ । କୈବଲ୍ୟ ସ୍ୱରୂପ । କୁଧରନନ୍ଦିନୀ କୁଚ କୁମ୍ଭ କୁଙ୍କୁମ ଲେପନ (୧୨) । କର

---

୧—ଅବସ୍ଥା ଭୁଞ୍ଜିଣ୍ଟେ 'ଖ'

୨—ମନସ୍ତ 'ଖ'

୩—ହେଠାମୁଣ୍ଡି

୪, ୫—ତୋହର ପାଦପଦ୍ମକୁ ଆଶ୍ରେ କରି ମୁଁ ହୋଇବ ମୁକତ ଏ କଥା କି ମହାପ୍ରଭୁଙ୍କୁ ହୋଇବ ଯୁଗତ 'କ'

୬—ଅର୍ଦ୍ଧ ତ 'କ'

୭—କରି 'ଖ'

୮—ଧର 'ଚ'

୯—ଖଚିତ 'କ'

୧୦—କପିଳାଶନ 'ଙ'

୧୧—କୈବଲ୍ୟ 'ଖ'

୧୨—କୁଚକୁମ୍ଭ ମର୍ଦ୍ଦିତ କର 'ଖ'

କମଳ କଳିତ କର । କାମିନୀ କଦମ୍ବ ବନ୍ଦିତ । କୁଳଟା କୁଳ କଣ୍ଟକ । କାମାଙ୍ଗନା (୧) ହରଷ ଖଣ୍ଡନ । କାଳନ୍ଦୀ କୁମୁଦ ବନ୍ଧୁ ମୁଖ ଚୁମ୍ବନ । କାର୍ତ୍ତିକେଶ୍ୱର ସେବିତ ଚରଣ ପଙ୍କଜ । କୁଶଧର କମଳା ପତି ବନ୍ଦିତ ଚରଣ । କଶ୍ୟପ କୁଳ କୁମୁଦ । କମଳ କଳାଧର । କପଟ କୁଣ୍ଡଳ କୁଣ୍ଡଳ ଶୋଭିତ ଶିର । କୁରଙ୍ଗ କୁଠାର ଶୋଭିତ କର । କାମ ରୂପ ଧର । କାମପ୍ରଦ । କାମ କଳ୍ପଦ୍ରୁମ । କାମ ରୂପିଣୀ ପୀନ କଠିନ କୁଚ କଲଶ କଠୋର । କମଳକର ମର୍ଦ୍ଦିତ କଠୋର ହୃଦୟ । କରୁଣା କୂପାର । କୁଣ୍ଡଳମା ଶକ୍ତି ଭେଦିତ । କଳିତ କମଳ କୋଷକର । କଳାନିଧି । କମଳ ନୟନ ଦ୍ରବ୍ୟ ସ୍ୱରୂପ । କୁଟିଳ ବର୍ଜିତ । କୁଟିଳ ଜଟାଜୁଟ ମଣ୍ଡିତ ଶିର । କାଞ୍ଚନ ଶୈଳ (୨) ନିବାସିତ । କାମାନ୍ଧ ରିପୁଗଣ ବିବର୍ଜିତ । କପୂର କାନ୍ତିକ ବିବର୍ଜିତ । କାମଚନ୍ଦନ କାଠିଣ୍ୟ ଜଳ କଳିତ କଳେବର । କଳା କଳ୍ପ କଳେବର । କମଠ ପୃଷ୍ଠ କଠୋର ଶୂଳଧର । କୁମାର ବରପ୍ରଦ । କୁମାରୀ କ୍ଷଣ ପୂଜିତ । କାଳାନ୍ତକ । କାଳମୁଖ । କମଳା ପତି ସେବିତ । କାଳ ବିବର୍ଜିତ । କୃଷ୍ଣାମ୍ବିକ ଜୟ ଜୟ ଶିବ ଶମ୍ଭୋ ! ୧୭ ।

ଜୟ ଜୟ ଖଣ୍ଡ ଇନ୍ଦୁ ମୁକୁଟ । ଖଣ୍ଡ (୩) ମଣ୍ଡଳଗତ । ଖଟ୍ୱାଙ୍ଗଧର (୪) ଖଣ୍ଡ ପରଶୁଧର । ଖାଦ୍ୟ ଖାଦିତ ସୁହୃଦାକୃତ । ଖଗପତି ଆସନ ସୁହୃଦ । ଖେଚରଧାରୀ । ଖପ୍ରାନ୍ତକ । ଖଳିତ ନୟନ । ଖପର ଧାରଣୀ ରମଣ । ଖାନ୍ତକ ମୁଖ । ଖଗପତି ଆସନ ସୁହୃଦ । ଜୟ ଜୟ ଶିବ ଶମ୍ଭୋ ୧୮ । ଜୟ ଜୟ ଗଗନ ଗତି । ଗଗନାନ୍ତକ । ଗଗନ ଶରୀର । ଗଗନ ଚନ୍ଦ୍ର (୫) ସମ୍ଭୂତ । ଗଗନ ସମାନ ରୂପଧର । ଗଙ୍ଗାଶେଖର । ଗିରିଜାର୍ଦ୍ଧ ଶରୀର । ଗିରି ନିବାସନ । ଗୋବର୍ଦ୍ଧ ପ୍ରଦ । ଗୋଲ୍ ହାଟ ମଣ୍ଡଳଗତ । ଗୋ କର୍ଣ୍ଣ ଗଣ ଅଳକ (୬) ମଣ୍ଡନ । ଗୁଣାତୀତ । ଗଣପତି ପିତର । ଗୁହାଶୟ । ଗରଳ କଣ୍ଠ । ଗୋଧର । ଗୋମୟ ଭସ୍ମଗୁଣ୍ଠି

---

୧—କୋକାଙ୍ଗନା 'କ'
୨—କାଞ୍ଚନା ଚଳ 'କ'
୩—ଖମଣ୍ଡଳ 'ଖ'
୪—କର 'ଖ'
୫—ଚନ୍ଦ୍ର 'କ'
୬—ଗଳକ 'ଙ'

ଲେପିତ ଗାତ୍ର । ଗୋତ୍ରଯ୍ୟ । ଗୋପାଳକ । ଗାୟତ୍ରୀ ଗାୟନ ଗ୍ୟାନ ଚକ୍ଷୁ ଗୋ ଆସନ । ଗୋ ଗଣ୍ଡସ୍ଥଳ ମଣ୍ଡିତ କର । ଗୋପ୍ୟ ଗୋପ । ଗଙ୍ଗାପତି ଗମନ । ଗମ୍ଭୀର ଗମନ । ଜ୍ଞାନ ପରାୟଣ ॥୧୯॥ ଜୟ ଜୟ ଘଣ୍ଟାରବ ଶବ୍ଦାତ୍ମକ ସୂକ୍ଷ୍ମ । ଘନ ଘୋଷଣ ପିନାକ (୧) ଗୁଣ କର୍ଷଣ । ଘୂର୍ଣ୍ଣିତ ନୟନ ଘଞ୍ଜଦଳ ସହସ୍ରାର ବନ୍ଦ (୨) ସଦନ ॥୨୦॥ ଜୟଜୟ ନର୍ମଳ ନିତ୍ୟ (୩) ନିର୍ବିଶେଷ । ନିରାମୟ ନିର୍ଗୁଣ, ନିଷ୍କଳ, ନିରଦ୍ଧ୍ୟ, ନୀଳ ନଳିନ ନୟନ । ନାନ୍ତ ନର୍ମଳ, ନିଷ୍ପ୍ରପଞ୍ଚ ଶରୀର । ନଗ ନନ୍ଦିନ ନାଭି ବନ୍ଦିତ ନୀରଜ ଚରଣ । ନାଗ କନ୍ୟାସ୍ତନ ମର୍ଦ୍ଦନ କର ପଙ୍କଜ । ନୀଳୋତ୍ପଳ ଦ୍ୟୁତି ନୀଳକଣ୍ଠ । ନୀଳାଚଳପତି ଆତ୍ମନ ॥୨୧॥ ଜୟଜୟ ଚନ୍ଦ୍ରଚୂଡ଼ ଲଳିତ । ଚଞ୍ଚଳା ପତି ଚରଣ ପୂଜିତ । ଚୃମୀକର ସମଗୃରୁ ଗାତ୍ର । ଚଇତନ୍ୟ ସ୍ୱରୂପ । ଚେତନା ସାମ୍ୟ । ଚିତ୍ତ ସାନନ୍ଦ ଲକ୍ଷଣ । ଚିନ୍ତାତୀତ ସତ୍ୟ ସ୍ୱରୂପ । ଚଳାଚଳ (୪) ବର୍ତ୍ତୀନ । ଚକ୍ରଧର ଚର୍ଚ୍ଚିତ ଚରଣ । ଚନ୍ଦ୍ର ବଦନୀ ଚୁମ୍ବିନାଧର । ଚୂର୍ଣ୍ଣ କୁନ୍ତଳା ଲେଖନ କର । ଚିତ୍ର ପତ୍ର ଲେଖା ବଳଗତ କୁଚ କୁମ୍ଭୀ କୁମ୍ଭ ସମାଗମ । ଚୂତ ସାୟକ ନାଶକର । ଚାପ—ଗୃଳିତ (୫) ଭ୍ରୂଲତା । ଚୃମରୀ ଚକ୍ଷୁ ବାମାଲିଙ୍ଗିତା । ଚତୁଃଷ୍ଟି ଚନ୍ଦ୍ରଶେଖରୀ ନିତମ୍ବାଶ୍ରିତା । ଚତୁର୍ଦ୍ଦଶ ଲୋକ ପିତା । ଚନ୍ଦ୍ରଚଣ୍ଡକରାଗ୍ନି ଅବଲୋକିତ । ଚତୁଃଷଷ୍ଟି ଯୋଗିନୀ ମୁଖ ଚୁମ୍ବିତ । ଚଣ୍ଡିକା ମୁଖଚନ୍ଦ୍ର ଚକ୍ରବାକ ।୨୨। ଜୟ ଜୟ ଛିତ୍ରଧର ଛଦ୍ମ ଅନନ୍ତ ଫଣୀ ଚନ୍ଦ୍ର ସମଧବଳ । ଛଳିତ ସକଳ ଚରାଚର । ଛଦ୍ମ ମାୟାତ୍ମନ ଛିଣ୍ଣ ବିଭଜନ । ଛାୟାସମ ମାୟାଭ୍ରମ । ଛରଣ ଜଗତ । ୨୩ ।

ଜୟ ଜୟ ଜଗତ ନାଥ ଜଗତ ଶରଣ । ଜନନୀ ଜଠର ନିବାରଣ । ଯମଭଗ୍ନୀ ଯମୁନା ସମାନ ଜଟାଜୂଟ ମଣ୍ଡନ । ଯଜ୍ଞ କନ୍ୟା ଶୋଭନ । ଜାଗ୍ରତ, ସ୍ୱପ୍ନ, ସୁସୁପ୍ତି ଅବସ୍ଥାତ୍ରୟ ମୋକ୍ଷଣ । ଜଗତ ପରିପାଳନ । ଜଟିତ ଜନ୍ତୁ ସମ । ଜଗତ ଜନରକ୍ଷଣ । ଜ୍ୱଳାୟ

---

୧ – ପିନକ୍କା 'ଜ'
୨—ହଦ୍ୱନ୍ଦ୍ୱ ଉଦନେଶ 'ଖ'
୩ – ନିତ୍ୟ ନନ୍ଦ
୪—ଚେଲାଞ୍ଚଳ 'ଖ'
୫—ଗଳିତ 'ଖ'

କାରଣ । ଜଗତ ପଞ୍ଚନବ ଚେତନ । ଜାଜ୍ଜ୍ୱଲ୍ୟମାନ । ଜ୍ୱଳନସମ ପ୍ରଖର ତେଜ । ଜଙ୍ଗମ ଗଣେଶ୍ୱର । ଜନୁପତି ଭୟ ନିବାରଣ । ଜମ୍ଭଭେଦୀ ଜଗତ ପର ପାଳନ । ଜଳଧିନନ୍ଦିନୀ ପତି ଜୀବନ । ଯଶଃ ଜନ ଶାସନ । ଜଗତ ଜନ ପ୍ରଳୟ କାରଣ । ଜଡ଼ ତମିର ନାଶନ (୧) । ଜୟ ଜୟ ଝଗଡ଼ ଭବ ନାଶନ । ଝଷ କେତନ ଦହନ । ଝାଡକାରେ ନିସ୍ତାରଣ । ଝରତ ନିପଥଗାମିର ଧାରଣ (୨) ଜୟ ଜୟ ନରକ ଉଦ୍ଧାରଣ । ନତ୍ୟ ସେବନ । ନିଶାକର ବଦନ । ନାମ ସୁମରଣ ପାପ ବିମୋଚନ । ନିଗମୟ ଗୁଣ ଜ୍ଞାନ । ନନ୍ଦ ନନ୍ଦନ ପୂଜା ଗ୍ରହଣ । ନିଶ୍ଚିନ୍ତ (୩) ସହଜାନନ୍ଦ । ନବ ପଞ୍ଚଜନ ଆତ୍ମନ ଜୀବନ । ନାଶକର ତାପ ବିମୋଚନ । ନିର୍ମଳ ଗୁଣ ଗାୟନ ପରାୟଣ । ନୃତ୍ୟ ରୂପଣ (୪) । ନାଗାଭରଣ । ୨୫ । ଜୟ ଜୟ ଟଳଟଳ ମହାବଳ ମହାରସ ସ୍ତମ୍ଭନ କରଣ । ଟଳଟଳ ତ୍ରିଜଗତ ତାଣ୍ଡବ ଆରୋପଣ । ଟୋପରଚନା ଟିକ ପାଣ୍ଡବ ରକ୍ଷଣ । ୨୬ । ଜୟ ଜୟ ଠିକ ଅମରାଧି ଅମର । ଠଣ ପାବର୍ତ୍ତୀ ପ୍ରାଣେଶ୍ୱର । ଠାବ ଠାବ ବିବର୍ଜିତ । ଠୁଳଶୂନ୍ୟ ରକ୍ଷିତ । ଠିକ ଧୂର୍ତ୍ତ ଠାବ ଦେଶ ବ୍ରାହ୍ମଣ ଉଦର ସ୍ଥିତ । ଠିକ ଜଳଧିପତି ରୁମ କୂଟେ ଠାବ । ଠୁଣିକା କାଶ ପ୍ରସିଦ୍ଧ । ୨୭ ।

ଜୟ ଜୟ ଡମ୍ବରୁ ଆଡ଼ମ୍ବର । ଡ଼ରିତ ଚତୁର୍ଦ୍ଦଶ ଭୁବନ । ଡମ୍ବାକାର ବ୍ରହ୍ମାଣ୍ଡର କାରଣ । ଡାଦପାନ୍ତ କମଳ ନିବାସ । ଡାଡ଼ମ୍ବ ଜଗତ ଭୂତ । ଡାକନୀ ଗଣ ସେବିତ । ୨୭ । ଜୟ ଜୟ ଢମପଣ (୫) ଦର୍ପ ଗଞ୍ଜନ । ଢାଳେ ଦନୁଜଗଣ ନିସଦନ । ଢଳହଳ (୬) ପଞ୍ଚବଦନ ଶୋଭନ । ଢଳ ହଳତ ନିର୍ମଳ ଗଙ୍ଗାକଲ୍ଲୋଳ ଭାର ଗ୍ରହଣ । ୨୮ । ଜୟ ଜୟ ଅଣଅକ୍ଷର ଅରହିତ । ଅଣ ଅପ୍ରାଧି ଭୂତ ରକ୍ଷଣ । ଅଣିମାଦି ଐଶ୍ୱର୍ଯ୍ୟ ଦାୟକ । ଅଣଗୁଣ କୋଟି ମେଦିନୀ ନାୟକ । ଅଣ କ୍ଷୋଭିତ ସୁରଭି ସୁତ ବାହନ । ଅଣଖ (୭) ପଞ୍ଚ କୁସୁମ ସାୟକ । ଅଣଖେ ଅନ୍ଧ-କା

---

୧—'କ' ରେ ନାହିଁ

୨—କରଣ 'କ'

୩—ନିଶ୍ଚିତ 'ଖ'

୪—ନୃତ୍ୟାରୋପଣ 'କ'

୫—ଗଣ 'କ'

୬—ଢଳଢ 'କ'

୭—ଅଣ ଅଗ୍ନିକୃତ 'କ'

ସୁର ନାଶକ । ଅଣଜାତ୍ତ ସ୍ୱରୂପ । ଅଣାକୃତ ସ୍ୱରୂପ । ଅଣିଗୁଣ ପବନ କର୍ମ ଆଦ୍ଧାର । ଅଣଙ୍ଗ ଶର ନବାରଣ ମୋକ୍ଷ କରଣ ।୨୯। ଜୟଜୟ ତ୍ରିଭୁବନ ନାୟକ ତ୍ରିଲୋଚନ । ତ୍ରିବିଧ ତାପ ବିମୋଚନ । ତ୍ରୈଲୋକ୍ୟେଶ୍ୱର । ତ୍ରିଶୂଳଧର । ତଳ ପ୍ରମାଣେ ପଞ୍ଚାଶ କୋଟି ମେଦମ୍ମ ବିସ୍ତାର ମୁକୁଟ ଶେଖରେ ସ୍ଥିତ । ତ୍ରି ସନ୍ଧ୍ୟାଶ୍ରିତ । ତ୍ରିକାଳଜ୍ଞ । ତ୍ରିକାଳ କୃତ (୧) ? ତ୍ରିକାଳ ସାତ୍ତ୍ୱିକ । ତ୍ରିଲସା ଶୋଭିତ । ତ୍ରିକାଳଜିତ । ତ୍ରିକାଳଧୃତ । ତୃଷ୍ଣାସ୍ଥ କମଳମ୍ମ ଭେଦକ (୨) । ସ୍ତ୍ରୀ ଅର୍ଦ୍ଧାଙ୍ଗିକ । ତ୍ରିଭୁବନୈକବୀର, ତ୍ରୈଲୋକ୍ୟନାଥ (୩) । ତ୍ରିକୋଣାଗ୍ନି ସନ୍ଦୀପନ । ତ୍ରୈଲୋକ୍ୟ ଆତ୍ମନ । ତ୍ରିଗୁଣ ମୟ । ତ୍ରିଗୁଣାଧାର । ତ୍ରୈଲୋକ୍ୟ ତ୍ରିକାଳାନ୍ତକ (୪) । ତ୍ରିଲିଙ୍ଗା ଶ୍ରୟ । ତ୍ରିଶିର ଭୁଜଙ୍ଗଧର । ତ୍ରିଲୋକ ଜନ ପୂଜିତ । ତ୍ରୈଲୋକ୍ୟ ସାଗରାଦ୍ଧ ତୃଣ ପର୍ଯ୍ୟନ୍ତ ବ୍ୟାପକ । ତ୍ରିପୁରାନ୍ତକ । ତ୍ରିପୁର ଶତ୍ରୁ + ସୀମନ୍ତମ୍ମବୃନ୍ଦ ସିନ୍ଦୂର ସୀମନ୍ତମଣି ସନ୍ଧାରଣ ନାଶନ ତ୍ରିଦ୍ଧାମଧାମାଧିପ । ତ୍ରିମଥନ ବିଧ୍ୱଂସନ । ତରୁଣ ସୁଧାକର ଶେଖର ॥୩୦॥ ଜୟଜୟ ସ୍ଥୂଳ ଶୂନ୍ୟ ବିବର୍ଜିତ । ଥାବର ଜଙ୍ଗମ କୀଟ ପତଙ୍ଗାଦ୍ଧ ସମ୍ଭୂତ । ସ୍ଥଳ କମଳ ସମ କୋମଳ ଶରୀର । ସ୍ଥାବରେନ୍ଦ୍ର ନନ୍ଦମ୍ମ ସ୍ତନଯୁଗ୍ମ ଆଲିଙ୍ଗନେ ଘୃମିତ (୫) ନେତ୍ରପଦ୍ମ । ସ୍ଥବର ଯୋଗାଶ୍ରୟ । ସ୍ଥଳ ଜଳ ଅନଳ ପବନ ଗଗନ ମୟ । ସ୍ତମ୍ଭନ, ମୋହନ, ଗୁଟିକ (୬), ଅଞ୍ଜନ, ପାଦୁକ, ଲେପନ ଅଷ୍ଟଧାତୁ କରଣ ॥୩୦॥

ଜୟଜୟ ଦଣ୍ଡପତ୍ତ ଦଣ୍ଡ ଉତ୍ପାଟନ । ଦଂଷ୍ଟ୍ରାକରାଳ କାଳଗଣେ ବେଷ୍ଟିତ । ଦାରୁଣ ତମିଶ୍ର ବନ ପଟଳ (୭) ଦାବାନଳ । ଦନ୍ତୀମୁଖସେବନ ଦଶପବନ ବ୍ରହ୍ମାରନ୍ଧ୍ରାରୋପଣ । ଦଶଦ୍ଦିଗମ୍ବର । ଦଶସମ (୮) ସମ୍ପୂର୍ଣ୍ଣ । ଦେବଗଣ ଦଳନ । ଦକ୍ଷାଧ୍ୱର ଧ୍ୱଂସନ । ଦଇତ ନସୂଦନ । ଦେବ

---

୧—ନୟ ‘କ’

୨—ରୁନ୍ଦକ ‘ଖ’

୩—ନାୟକ ‘କ’

୪—‘କ’ ରେ ନାହିଁ ।

୫—ଘୂର୍ଣ୍ଣିତ ‘କ’

୬—ଗୋଟିକ ।

୭—ତମର ଘନ ପଟଳ ‘କ’

୮—ଦଶମ ‘ଖ’

ଦେବଶ୍ୱର । ଦେବକୀ ସୁତ ବନ୍ଦିତ । ଦରଶନେ (୧) ନିର୍ବାଣ ଦାୟକ । ଦଇତା ଦଇତ ବିବର୍ଜିତ । ଦୀର୍ଘ ସ୍ୱପ୍ନାପହାରକ । ଦକ୍ଷ ଯଜ୍ଞାନ୍ତକ ଦୃଶ୍ୟାଦୃଶ୍ୟ ବିବର୍ଜିତ । ଦୁର୍ଦ୍ଦଣ୍ଡ ଭୁଜଦଣ୍ଡ । ଦୁର୍ଜୟ ଦୈତ୍ୟଗଣ ନାଶନ । ଦୈତ୍ୟ ବଳ ଦର୍ପ ନିରାକରଣ । ଦହନ ଦିବାକର ଶଶିନେତ୍ର । ଦନ୍ତାଧର ବିଧ୍ୱଂସନ (୨) ଦାସଜନ (୩) ଦୁଃଖ ହାରଣ । ଦୁର୍ଲ୍ଲଭ ପୁରୁଷ । ଦାମୋଦର ପ୍ରିୟ । ଦୁଷ୍ଟ ଦୁର୍ବାସନା ଦାମ ଛେଦନ । ଦଶଦଳ କମଳ (୪) କୋଷଗତ ଦ୍ୱାଦଶାଦିତ୍ୟ ତେଜ । ଦୟାର୍ଦ୍ର ଚିତ୍ତ । ଦୈତ୍ୟେନ୍ଦ୍ର ବରପ୍ରଦ । ଦାରୁଣ ଶତ୍ରୁନିସୂଦନ । ଦ୍ୱିଦଳ କମଳ ନିବାସ । ଦ୍ୱାଦଶ ପଦ୍ମ ଦାମ ଶରୀର । ଦରହସ୍ତ୍ର କମଳାସନ । ଦୁର୍ଗା ମୁଖମଣ୍ଡଳ ମଣ୍ଡିତ ଗଣ୍ଡସ୍ଥଳ । କୁଣ୍ଡଳୀ କୁଣ୍ଡଳ ଚଣ୍ଡକର ଖଣ୍ଡିତ କରଦଣ୍ଡ । ଦଣ୍ଡିତ ଦଇତ । ଦାୟାର୍ଦ୍ର ହୃଦୟ । ଦାସ ବତ୍ସଳ । ଦୁର୍ଦ୍ଧର୍ଷ ଜଳଜକୁଳ ନିବାରଣ । ଦୁର୍ଗମ ତିମିର କୁଳ ଦିବସେଶ୍ୱର । ଦିନେଶ୍ୱର । ଦାରିଦ ତିମିର ପଟଳ ମୋଚନେ ଚଣ୍ଡାଂଶୁ କିରଣ । ଦୟା ନିବାସନ । ଦୂର୍ଣ୍ଣୟ ଖର ବାକ୍ୟ ବାରଣ । ଘନ ନିବାସନ । ଦୂର୍ଣ୍ଣିବାରଣ ଦାରଣ ॥୩୧॥

ଜୟ ଜୟ ଧ୍ୟାନ ପୂର୍ଣ୍ଣ । ଧ୍ୟାନ ଧାରଣ । ଧ୍ୟାନ କାରଣ । ଧ୍ୟାନ ପରାୟଣ । ଧ୍ୟାନ ପାରଂଗତ ଧ୍ୟାନାଦିଗମ୍ୟ । ଧ୍ୟାନ ପିଧାନ । ଧ୍ୟାନ ନିଧାନ । ଧ୍ୟାନ ଭୂତ । ଧ୍ୟାନାଶ୍ରିତ । ଧ୍ୟାନ କୃତ । ଧ୍ୟାନ ଧୃକ୍ । ଧ୍ୟାନ ସ୍ୱରୂପ । ଧ୍ୟାନ ବିଲକ୍ଷଣ (୫) ଧ୍ୟାନମୟ । ଧ୍ୟାନ ଶରୀର । ଧ୍ୟାନ ବ୍ୟାପକ । ଧ୍ୟାନାତ୍ମକ(୬) । ଧରଣୀଧର । ଧରଣୀ ଧର ବତ୍ସଳ(୭) । ଧରଣୀଧୃତ ପରିପାଳକ । ଧରଣୀ ବର । ଧରଣୀ ଶରୀର । ଧରଣୀଧର ନନ୍ଦିନୀ ଅଧର ମଧୁ ଆସ୍ୱାଦନେ ଅଷ୍ଟ-ପଦ । ଧରଣୀ ଆତ୍ମିକ । ଧରଣୀ ଆଦି ମହାଭୂତବ୍ୟାପକ । ଧରଣୀ ଧର ଧାରଣ । ଧୃତ୍ୟା ତ୍ମକ । ଧୃତ୍ୟାଦି ମହାଭୂତ ବ୍ୟାପକ । ଧୃତ ସ୍ୱରୂପ । ଧୂମ

---

୧—ଦର୍ଶନ 'ଖ'

୨—'ଖ' ରେ ନାହିଁ ।

୩—ଦାସ ଗଣ ।

୪ - ପବନ 'କ'

୫—ଧ୍ୟାନ ଲକ୍ଷଣ 'କ'

୬—ଧ୍ୟାନନ୍ତକ 'ଖ'

୭—ବସନ 'କ'

ସଂକାଶ ପାଣ୍ଡୁର । ଧୂଳି ଧୂସର । ଧରାଧର (୧) ପତି ସର୍ବ ସୂଦନ । ଧୂମ-କେତୁ । ଧୀର ଜନ ପାଳନ । ଧଇର୍ଯ୍ୟ ଧୀର । ଧରଣୀ ଅଶେଷ ଜନ ପାଳନ । ଧରଣୀ ପ୍ରତି ବନ୍ଦିତା ଧୀରଧୀସଦନ । ଧୀରଧୀ ନାଥ । ଧୀରଧୀଶ୍ୱର । ଧୀର-ବୋଧ ସ୍ୱରୂପ । ଧୀରଧୀ ନିର୍ମଳ କରଣ । ଧୀରଧୀ ପ୍ରଦୀପ । ଧୀର ଧୀ ଅଚଳନ କୃତ । ଧରଧୀ ମୟ । ଧୀରଧୀ ନିବାସ । ଧୀରଧୀ ସଚେତନ (୨) କରଣ । ଧୀରଧୀ ଧ୍ୟାନ ଗମ୍ୟ । ଧବଳ ସ୍ୱରୂପ । ଧବଳ ବୃଷ ବାହନ (୩) । ଧବଳ ଗଙ୍ଗ ଶେଖର । ଧବଳ ପ୍ରକାଶ । ଧବଳ ନିଧାନ । ଧବଳ ପରମ ହଂସ । ଧ୍ୟାନ ଧାରଣା ସମାଧି ଗମ୍ୟ ଧ୍ୟାନାଧୀଶ । ଧ୍ୟାନ ଧୀମଣ୍ଡଳ । ଧୀର ଧୈର୍ଯ୍ୟ ଶୁଦ୍ଧ ଚଇତନ୍ୟ । ଧ୍ୱାନ୍ତାନ୍ଧକାର ବିଖଣ୍ଡନ । ଧଇର୍ଯ୍ୟ ସ୍ୱରୂପ । ଧୃତ ଧବଳ ଚନ୍ଦ୍ରଲଲାଟ । ଧଇର୍ଯ୍ୟ ଶରୀର । ଧର୍ମ ସଂସ୍ଥାପନ । ଧର୍ମମୟ । ଧର୍ମଜ୍ଞ (୪) । ଧର୍ମ ମୂର୍ତ୍ତି । ଧର୍ମ ସଞ୍ଜୀବନ । ଧର୍ମ ପରିପୂର୍ଣ୍ଣ । ଧ୍ରୁବ ମଣ୍ଡଳ ଧାରଣ । ଧର୍ମାଧର୍ମ ବିବର୍ଜିତ । ୩୨ ।

ଜୟ ଜୟ ନବ ନୀରଜ ଦଳ ନୟନ । ନାଦନାଦନ ମଧ୍ୟ ନୟନ ମନ ବୁଦ୍ଧି ଅଗୋଚର । ନରପତି ନଗପତି, ନାଗପତି, ନାକ ପତି + ନଳିନୀ ପତି + ନାଦପତି + ନୟନପତି + ନନ୍ଦନ ବନୀତି + ନିଧିପତି + ନକ୍ଷତ୍ର ପତି । ନିଶାଚର ପତି । ନିର୍ବାଣ ପତି । ନୀଳାଚଳ ପତି ଚିନ୍ତିତ ପଦଦ୍ୱୟ ନାଡ଼ୀଚକ୍ର ନିସୂଦନ ନବଧା ପ୍ରକାର ଜଗତ କୃତ ।୩୩। ଜୟ ଜୟ ପରମ ପୁରୁଷ । ପରମ ପାରଙ୍ଗତ । ପ୍ରଳୟ ପର (୫) ପୁରୁଷ । ପରାପର ପୂରିତ । ପ୍ରକାଶ ପରମାତ୍ମକ । ପରାପର (୬) ବିବର୍ଜିତ । ପରମ ଧାର୍ମିକ । ପରମ ଧାମ । ପରମ ଜ୍ୟୋତି ପର । ପରମେଶ୍ୱର । ପଞ୍ଚ ବ୍ୟାପାରକ । ପଞ୍ଚଶବ୍ଦୋ ପରମ ପୂର୍ଣ୍ଣାନନ୍ଦ ପରମ ପବନ । ପୁରୁଷେଶ୍ୱର । ପରମ ନିର୍ବାଣ ଦାୟକ । ପ୍ରକୃତି ଈଶ୍ୱର । ପରମ ଆତ୍ମା ସ୍ୱରୂପ । ପରାପର । ପୁଣ୍ଡରୀକାକ୍ଷ ହୃଦୟ ପଙ୍କଜ ଚିନ୍ତିତ । ପାତାଳ ଆକାଶ ବ୍ୟାପକ । ପାତାଳ ତଳ ନିବାସ । ପଞ୍ଚ-

---

୧—ଧରାଧର 'ଖ'
୨—ସଙ୍କେତ 'କ'
୩—ବୃଷଭ ରୂଢ଼ 'କ'
୪—ଧାର୍ମିକ
୫—ଅଗ୍ର 'କ'
୬—ପାରଂପର 'କ'

ବନ୍ଧ । ପଞ୍ଚ ବାଣ ବିଧ୍ୱଂସକ । ପଞ୍ଚଭୂତାତ୍ମକ । ପରଂ (୧) ବ୍ରହ୍ମ । ପଞ୍ଚାନନ ପରମାଲିଙ୍ଗନ । ପରଶୁଦ୍ଧର । ପଦ୍ମକର । ପଦ୍ମିନୀ ପାର୍ବତୀ ପଦ୍ମମୁଖ ପାନକୃତ । ପଦ୍ମମୁଖୀ ପୁଲକ ପୟୋଧର କର । ପରମ ଶାନ୍ତ । ପରମ ତେଜ ସ୍ୱରୂପ । ପୟୋନିଧି ମନ୍ଥନ ପୀତ ବିଷ । ପାବନୀ ଗଙ୍ଗାଧର । ପୁରୁଷ ପ୍ରକୃତି ବିବର୍ଜିତ । ପୁରୁଷ ପ୍ରକୃତି ଶରୀର । ପ୍ରଣବାତ୍ମକ । ପ୍ରଣବେଶ୍ୱର । ପ୍ରଣମ୍ୟା ପ୍ରଣମ୍ୟ (୨) ବିବର୍ଜିତ । ପୁଣ୍ଡରୀକ ଚର୍ମ ଆସନ । ପାର୍ବତୀ ପ୍ରାଣ । ପିଙ୍ଗଳାଞ୍ଚିତ ପାନକୃତ । ପଞ୍ଚବିଂଶତି ତତ୍ତ୍ୱ ବିନର୍ଜିତ । ପୁଷ୍ପଗିରି ପବନାରୋପଣ । ପରମ ହଂସ । ପଞ୍ଚ ଇନ୍ଦ୍ରିୟ ନିବାରଣ (୩) ପୁଷ୍ପିତ ପଦ୍ମମାଳା ଭରଣ । ପନ୍ନଗ ବସନ । ପିଙ୍ଗଳ ନୟନ । ପଞ୍ଚ ସ୍ତୁତ ପ୍ରିୟ ନୃତ୍ୟ ଦରଶନ । ପ୍ରଣତ ପ୍ରସନ୍ନ । ପ୍ରକୃତୀଶ୍ୱର ପରମ ଚଇତନ (୪) । ପଞ୍ଚାଶ ବର୍ଣ୍ଣଭେଦ ପଦ୍ମାଣ୍ଡ ଧ୍ୟାନ । ପାଞ୍ଚଜନ୍ୟ ଶଙ୍ଖ ସମଗ୍ରୀବ । ପଣ୍ଡିତ ଗଣ ପୂଜିତ ।।୩୪।।

ଜୟ ଜୟ ଫଣିପତି ବଳୟ । ଫଣି ପତି କୁଣ୍ଡଳ । ଫଣିପତି ଉପବୀତ । ଫଣିପତି କଟିବସନ । ଫଣିପତି କମଳାସନ । ଫଣିପତି କରଧୃତ ଶୋଭନ । ଫଣିପତି ଶେଷମୁଖ ଅଶେଷ ଆଳୟ (୫) । ଫଣିପତି ନାଦ ପୂରିତ । ଫଳିତ ମୁନିଜନ ଚଇତନ୍ୟ । ଫଳିତ ଯୋଗି(୬) ଜନ ଧ୍ୟାନ ତରୁ ଫଳ ।୩୫। ଜୟ ଜୟ ବିବସ୍ୱତ । ବିଶ୍ୱ ବିଡ଼ମ୍ବିତ । ବିଶୁଦ୍ଧ ବୁଦ୍ଧି ବୃନ୍ଦ ବନ୍ଦିତ (୭) ଚରଣ । ବିଶ୍ୱ ପ୍ରପଞ୍ଚ ବ୍ରହ୍ମାଣ୍ଡ କାରଣ । ବିଷଧର ବଳୟ । ବଳବାହୁ ବିଶାଳ । ବିବସ୍ୱତ ମଣ୍ଡଳ ସଂସ୍ଥିତ । ବିବସ୍ୱତ ସମ ଦୁର୍ନିରୀକ୍ଷ । ବ୍ରହ୍ମମୟ । ବାରଣାନନ ପୂଜିତ । ବିବୁଧ ବୃନ୍ଦ ବନ୍ଦିତ ଚରଣ । ବ୍ରହ୍ମ ବ୍ରହ୍ମଜ୍ଞାନ (୮) ରୋପଣ । ବ୍ରହ୍ମାବିଷ୍ଣୁ ଚରଣେ ବନ୍ଦିତ । ବ୍ରହ୍ମାଣ୍ଡ ମଣ୍ଡିତ । ବ୍ରହ୍ମାଣ୍ଡ ମୂର୍ତ୍ତି । ବ୍ରହ୍ମାଣ୍ଡ

---

୧—ପଞ୍ଚ 'ଖ'
୨—ପ୍ରଣା ପ୍ରାଣ 'କ'
୩—'କ' ରେ ନାହିଁ ।
୪—ଉତ୍ସନ୍ନ ପବନ 'କ'
୫—ଗାସ୍ୱନ 'କ'
୬—ମୁନ 'କ'
୭—ବସୁଧାବ ବୃନ୍ଦ ପୂଜିତ 'କ'
୮—ବ୍ରହ୍ମାଗ୍ନି 'କ'

କରତା । (୧) ବ୍ରହ୍ମ ସ୍ୱରୂପ । ବ୍ରହ୍ମମାତୃକାଦି ଈଶ୍ୱର । ବ୍ରହ୍ମମୂର୍ତ୍ତି । ବଶିଷ୍ଠାଦି ଋଷିଗଣ ପୂଜିତ । ବନମାଳା ଭରଣ । ବଜ୍ରଚ୍ଛେଦ୍ୟ । ବିଶ୍ୱେଶ୍ୱର ବିଶ୍ୱ-ସମ୍ଭୂତ ଦାସ (୨)। ବଡ଼ବା ନଳ (୩) ନୟନ । ବିଷମଶର ବିନାଶନ । ବିଜିବର୍ଯଂଜନ ବନ୍ଦିତ । ବିଳାସିନୀଗଣ ତ୍ରାଣ । ବାସୁଦେବ ବୈର ବିନାଶନ। ବୟୋବୃଦ୍ଧ ବନ୍ଦିତ । ବାତାଶନ । ବାତବେଗ । ବୃଷଭାସନ । ବିଷୟ (୪) ଗଦ ବିମୋଚନ । ବିଭ୍ରମ ମାୟା ଛେଦନ । ବାମ ଦେବ ଗଣାଧିପ । ବରୁଣ ବଲ୍ଲଭ ଜଟାଭିଳାଷ । ବୁଧ ବୁଦ୍ଧି ପ୍ରକାଶ । ବିମଳ ବୁଦ୍ଧି ଗମ୍ୟ । ବାସନାଜାଳ ବିଶ୍ୱ ଘନବାତ । ବାଳ ବୃଦ୍ଧ ତରୁଣ ବିବର୍ଜିତ । ବଳି ଫଳିତ ବିନାଶନ । ବଳବନ୍ତେଶ୍ୱର । ବ୍ରହ୍ମଗଣ୍ଡୀ ହୃଦୟ ଭେଦନ (୫) । ବସୁମତୀ ବର୍ଣ୍ଣିତ ବ୍ୟୋମ କୂପ । ବ୍ରାହ୍ମଣ ଗଣ ସୁହୃଦ । ବରହୀ ମଣ୍ଡିତ । ବ୍ରହ୍ମାମଣ୍ଡଳ ପଣ୍ଡିତ । ବନ୍ଦଗତି । ବ୍ରହ୍ମଇନ୍ଦ୍ର ଭେଦିତ । ବ୍ରହ୍ମ ପ୍ରଳୟ । ବ୍ରହ୍ମ ସ୍ୱରୂପ । ବୃଷ ବୈରିଗଣ ବିଘ୍ନ ବିନାଶନ । ବିନାୟକ ବର ଦାୟକ । ବୀଣା ଧ୍ୱନି ବାଦନ ପ୍ରିୟ । ବିଜୟୀ ତ୍ରିଭୁବନ ଶତ୍ରୁଗଣ । ବିଷମ ଶର ଦୁର୍ହୃଦ (୬) । ବସୁମତୀ ସୁତ ବୁଧ ବୃହସ୍ପତି ବାସବ ରିପୁ ଗୁରୁ ବିଧୁ ବିବସ୍ୱତ ସୁତ ସହିତ ଗ୍ରହଗଣ ସେବିତ ଚରଣ ତଳ ।।୩୬ ।।

ଜୟ ଜୟ ଭୂଧର ଶରଣ (୭) । ଭୂଧର ଭୂଷଣ । ଭୂଧର ନନ୍ଦିନୀ ପ୍ରତିଗ୍ରହ (୮) । ଭୂମଣ୍ଡଳ ମଣ୍ଡିତ । ଭ୍ରମମତ ମାୟା ଖଣ୍ଡିତ । ଭ୍ରମାତୀତ (୯)। ଭାର୍ଗବାଦି ଋଷି ବନ୍ଦିତ । ଭାଲଲୋଚନ ଉଦ୍ଦୀପିତ । ଭାଗୀରଥୀ ଶିର ଶୋଭିତ । ଭବମଣ୍ଡଳ ନିବାସ (୧୦)। ଭଗବନ୍ତ

---

୧—କରଣ 'କ'
୨—ବିଶ୍ୱବାସ 'କ'
୩—ବଡ଼ବାଗ୍ନି 'କ'
୪—ବିତର୍କ ପଦ 'କ'
୫—ଛେଦନ 'ଖ'
୬—ସହୃଦୟ 'ଖ'
୭—ସଦନ 'କ'
୮—ପ୍ରତିଗ୍ରହୀ 'କ'
୯—ଭୂମ୍ୟାଗତ 'ଖ'
୧୦—ଭୂମି ମଣ୍ଡଳ '(

ମୁଖାମ୍ଭୋଜ ଚୁମ୍ବିତ ଭ୍ରମର (୧) । ଭାନୁ ମଣ୍ଡଳ ନୟନ । ଭାସ୍କର ସ୍ୱରୂପ । ଭକ୍ତଙ୍କର ଅସୁର ନିବାରଣ । ଭୀମରୂପ । ଭୂତଗଣ ବେଷ୍ଟିତ । ଭଦ୍ରେଶ୍ୱର । ଭଦ୍ରେଭ କୁମ୍ଭ ସମ ଭବାନୀ କୁଚ କୁମ୍ଭ ବିଭୂଷଣ । ଭୈରବ । ଭୈରବିଗଣ ଈଶ୍ୱର । ଭାବାଭାବ ବିବର୍ଜିତ । ଭୁଜଙ୍ଗ ଶୋଭିତ (୨) ଶରୀର । ଭବଭାବାନ୍ତକ । ଭବଭୟ ଲୟ ସ୍ଥିତି କାରଣ । ଭର୍ଗଭାଗାନ୍ତର ବିନାଶନ । ଭୈରବ ଗଣେଶ୍ୱର । ଭରିତ ଶରୀର । ଭାଗ୍ୟବନ୍ତ ଗଣ ସେବନ । ଭାଗ୍ୟାଭାଗ୍ୟ ବିବର୍ଜିତ । ଭୃତ୍ୟଗଣ ଦୁଃଖ ବିନାଶନ । ଭୂବ ମଣ୍ଡଳେ ଭଗବନ୍ତ । ଭଗବନ୍ତ ସେବିତ । ଭ୍ରମର କୁହର ନିବାସ । ଭୂବ ଅନ୍ତରୀକ୍ଷ ପୂରିତ । ଭଗବତି ଗଣ ସେବିତ । ଭବଲୋକେଶ୍ୱର । ଭୂମ୍ୟାଦି ପଞ୍ଚଭୂତାତ୍ମକ । ଭଗବତୀ ମୁଖାମ୍ବୁଜ ଉଦ୍ଭାସିତ । ଭୃଙ୍ଗପଂକ୍ତିସମ ଭ୍ରୂଲତା ଚୁମ୍ବନେ ଲଳାୟିତ । ଭୋଗବନ୍ତ ପୁର ରକ୍ଷିତ । ଭକ୍ଷାନ୍ନ ଭୋଜନ । ଭ୍ରାନ୍ତି ବିବର୍ଜିତ । ଭୁବନେଶ୍ୱର । ଭୁବନ ତ୍ରୟ ପୂଜିତ । ଭୁବନ ତ୍ରୟ ସର୍ଜିତ । ଭୁବନ ତ୍ରୟ ଧାରଣ । ଭୁବନ ତ୍ରୟ କାରଣ । ଭୁବନ ତ୍ରୟାତ୍ମକ । ଭୁବନ ତ୍ରୟ ତାରଣ । ଭୁବନ ତ୍ରୟ ପ୍ରାଣ । ଭୁବନ ତ୍ରୟ ଭାଣ୍ଡ ବାରଣ । ଭାବ ଗ୍ରହଣ । ଭାବଗମ୍ୟା ଭାବାଭାବ ହୀନ । ଭୂତାଧିପ । ଭୂତାବାସ । ଭୂତମୟ । ଭୂତ ଧାରଣ । ଭୂତଗଣ ଜୀବନ । ଭୂତାନ୍ତ କୃତ । ଭୂତାଭୂତ ବିବର୍ଜିତ । ଭୂତାନ୍ତ ଚରଣ (୩) । ଭବିତବ୍ୟ ହର । ଭୂତଗଣ ତାରଣ । ଭୂତାତ୍ମା । ଭସ୍ମ ବିଲେପନ । ଭ୍ରାମକ ମଣିମତ ଜଡ଼ ଚେତନା କାରଣ । ଭୂମଣ୍ଡଳ ଧର ମେଖଳ । ଭବ (୪) ଚରଣେ ଶରଣ । ୩୭ ।

ଜୟ ଜୟ ମାଧବ ମାୟାଧବ । ମାୟାଧର । ମାୟାକର । ମାୟା ଶରୀର । ମାୟାତୀତ । ମାୟାମୟ । ମାୟାସୃଜ । ମାୟା କୃତ । ମାୟା ନାଶନ । ମାୟା ମୟ ପ୍ରକୃତି ବିବର୍ଜିତ । ମମେତି ମମତା ପାଶ ବିବର୍ଜିତ । ମୁନିମନ ମାନସ ହଂସ । ମୌଳି ମନ୍ଦାକିନୀ । ମାଳତୀ

---

୧—କୃତ ଭ୍ରମ 'ଖ'
୨—ଶୋଭ 'କ'
୩—ଭୂତାନ୍ତର (କ)
୪—ଭୁବନ 'ଖ'

ମାଳବତ ଶୋଭନ । ମହେଶ୍ୱର । ମହେନ୍ଦ୍ର (୧) ବନ୍ଦିତ ଚରଣ । ମହିଷାସୁର ମର୍ଦ୍ଦିନୀ ମଧୁରାଧର ଚୁମ୍ବିତ । ମନ ନୟନ ଅଗୋଚର । ମନ ନୟନ ସଞ୍ଚିତ । ମନ ନୟନ ମଧ୍ୟ ନିବାସ । ମନ ନୟନାଦି ସମ୍ଭୂତ । ମନ ନୟନ ପ୍ରକାଶ । ମନ ନୟନାତ୍ମକ । ମନ ନୟନାଦି ବିଲକ୍ଷଣ । ମନ ନୟନାଦି ବିବର୍ଜ୍ଜିତ । ମାତଙ୍ଗ ତନୟା ସ୍ତନ (୨) ଆଲିଙ୍ଗନ । ମତ୍ତ ମାତଙ୍ଗ ଚର୍ମ୍ମ ପରିଧାନ । ମହାଭୂତ ସ୍ୱରୂପ । ମହାକାୟ । ମହାକାୟ ବେଷ୍ଟିତ । ମଳୟାଚଳ ବିହାର । ମଦନ ସଦନ ବିବର୍ଜ୍ଜିତ । ମହାମୂର୍ତ୍ତି । ମହାଶ୍ରୁତି । (୩) ମହାଧୃତି । ମହାମତି । ମହା ବାହୁ । ମହୀଧ୍ର ବନ୍ଦିତ । ମନୋଭବ ମନ୍ଥନ (୪) ।ମୃଡ଼ାଣୀ ମୁଖ ମାଳତୀ ମଧୁକର ମଧୁରସ ପାନ । ମଙ୍ଗଳ । ଗଣନାଥ । ମଙ୍ଗଳାଳୟ । ମଙ୍ଗଳା ମୁଖମଣ୍ଡଳ ଚୁମ୍ବିତ । ମାଣିକ୍ୟାଦି ଦିବ୍ୟାହାର । ମୂଳସ୍ତମ୍ଭ । ମୁଗ୍ଧ ମନୋହାରି ଗଣ ମନ ନୟନାରବିନ୍ଦ ପୂଜିତ । ମୁଣ୍ଡମାଳା ଭୂଷଣ । ମୁଣ୍ଡ ନାଶିନୀ ଜଘନ ମଣ୍ଡନ ମଣ୍ଡିତ । ମହାଦେବ । ମନ୍ତ୍ରାତ୍ମକ । ମନ୍ତ୍ର ସ୍ୱରୂପ । ମନ୍ତ୍ରଜ୍ଞ । ମନ୍ତ୍ରମୟ । ମନ୍ତ୍ରା- ମନ୍ତ୍ର ବିବର୍ଜ୍ଜିତ । ମନ୍ତ୍ରାଶୟ । ମନ୍ତ୍ରଗମ୍ୟ । ମନ୍ତ୍ରାତ୍ମକ (୫) । ମନ୍ତ୍ର ଶରୀର । ମନ୍ତ୍ରେଶ୍ୱର । ମିତ୍ରାମିତ୍ର ବିବର୍ଜ୍ଜିତ । ମୃତ୍ୟୁଞ୍ଜୟ । ମୃତ୍ୟୁ ସ୍ୱରୂପ । ମୃତ୍ୟୁ ବିନାଶନ (୬) । ମୃତ୍ୟୁ ବର୍ଜ୍ଜିତ । ମୃତ୍ୟୁ ବିବର୍ଜ୍ଜିତ । ମୁକ୍ତ ବନ୍ଧାଦି ବିବର୍ଜ୍ଜିତ । ମୁକ୍ତେଶ୍ୱର । ମଧୁସୂଦନ ବନ୍ଦିତ । ମଧୁପାନ ସକ୍ତ । ମଧୁ ସହଚର ବିନାଶକ । ମହାଶୂନ୍ୟ । ମେଘସ୍ୱନ । ମହା ଶ୍ରୁତ । ମହାମୂର୍ତ୍ତି । ମିତ୍ରାମିତ୍ର ବିବର୍ଜ୍ଜିତ । ମହାନିଶାଧିପ । ମହାଧିପ । ମହିମା ସାଗର । ମହାବୀର ବିମର୍ଦ୍ଦନ । ମାତାପିତା ବିବର୍ଜ୍ଜିତ । ମୂଳାଧାରାଦି ଚକ୍ର ବିଭେଦକ । ମକାର ସ୍ୱରୂପ । ମହା ମୁଦ୍ରା ନିବନ୍ଧ (୭) । ମଧୁମତୀ ମାୟାନିଧାନ । ମଣିପୂର କମଳ ବିନାଶ । ମୁନୀନ୍ଦ୍ର ବନ୍ଦିତ । ମାୟା ସଂହାରକ । ମୃଗ

---

୧ — ମହୀଧ୍ର 'ଖ'
୨ — "ସ୍ତନ" କରେ ନାହିଁ ।
୩ — 'କ' ରେ ନାହିଁ
୪ — ବନ୍ଦନ 'କ'
୫ — 'କ' ରେ ନାହିଁ ।
୬ — ନିବାସ 'ଖ'
୭ — ନିବନ୍ଧୀ 'କ'

ଲକ୍ଷଣ । ମୃଗତୃଷ୍ଣାବତ ଜଗତ ମାୟା ନିଧାନ । ମୃଗ ଧାରଣ । ମୃଗ ପତି ଚର୍ମ କଟି ମଣ୍ଡନ (୧) । ମୃଗନୟନୀ ମଣ୍ଡଳ ସୁହୃଦୟ । ମୀନ (୨) କେତନ ମନୋରମା ଦୁଃଖାନ୍ତ କର । ମଙ୍ଗଳ ସୂତ୍ର ବିନାଶକ । ମହାମାୟା ମନ ନୟନ (୩) ମରାଳ ମାନସ ସରୋବର ମାତୃକେଶ୍ୱର । ମଣିଭଦ୍ର ସେବିତ ନିରନ୍ତର । ମରାଳ ବାହାନ ଅଧିଦୈବତ । ମାନିନୀ ନୟନ ମନ ମନୋହର । ମେରୁ ମନ୍ଦର ଜ୍ୱଳ ଅନଳ ସମ ଶରୀର । ମୁନି ମନ କଇରବ ଚନ୍ଦ୍ର । ୩୮ ।

ଜୟ ଜୟ ଜଗତ ନାଥ ଜୀବନ ସମ । ଦମ ନିୟମ ଆସନ ପ୍ରାଣାୟାମ ପ୍ରତ୍ୟାହାର ଧ୍ୟାନ ଧାରଣା ସମାଧି ପୂର୍ତ୍ତି । ଯୋଗିଜନ ମନ କୁମୁଦ ଯାମିନୀ ନାଥ । ଯଜନ ଯଜନାଦି କର୍ମ ରହିତ । ଯଜ୍ଞଭୃତ୍ । ଯଜ୍ଞେଶ୍ୱର । ଯଜ୍ଞ ପରିପୂର୍ଣ । ଯଜ୍ଞ ନାଶନ । ଯଜ୍ଞ ବିବର୍ଜିତ । ଜନ୍ମାଦି ଦୁଃଖ ନାଶନ । ଜଗତ ପରିପୂର୍ଣ । ଜଗଦୀଶ୍ୱର । ଜଗତା ଜଗତ ବିବର୍ଜିତ । ଜନ୍ମାଦି ଦୁଃଖ ବିନାଶନ । ଯମପାଶ ବିମୋଚନ । ଯୋଗ ରୋପଣ । ଯୋଗପରିପୂର୍ଣ । ଯୋଗେଶ୍ୱର । ଯୋଗଗମ୍ୟ । ଯୋଗପ୍ରିୟ । ଯୋଗାତୀତ । ଯୋଗାତ୍ମା । ଯୋଗମୟ । ଯୋଗ ନିରତ । ଯୋଗାଳୟ । ଯୋଗାତ୍ମିକ । ଯୋଗାଶ୍ରୟ । ଯୋଗିଗଣ (୪) ସେବିତ । ଯୋଗଗର୍ଭ । ଯୋଗାରୂଢ଼ । ଯୋଗ ସ୍ୱରୂପ । ଯୋଗାନ୍ତ କୃତ (୫) । ଯୋଗା ଯୋଗ ବିବର୍ଜିତ । ଯୋଗ ପୁରୁଷ । ଯାଚକେଶ୍ୱର । ଜାତ ଶରୀର ଅନ୍ତକୃତ୍ । ଯାଜ୍ଞବଲ୍କ୍ୟାଦି ଋଷି ପୂଜିତ । ଯଜ୍ଞ ବ୍ରହ୍ମ ଶବ୍ଦାଦି ବନ୍ଦିତ ପ୍ରିୟ । ୩୯ ।

ଜୟ ଜୟ ରାମଚନ୍ଦ୍ର ବନ୍ଦିତ । ରାମ ରମାଧାନ । ରାମାନନ୍ଦ । ରମ୍ୟ କନ୍ଦର ନିବାସ । ରାଜୀବ ନୟନ(୬) । ରକ୍ତ ପଦ୍ମାଭରଣ । ମାହେଶ୍ୱରୀ ବଦନ ଚୁମ୍ବନ । ରମାରମଣ । ରଙ୍ଗନାଥ । ରଣ ପଣ୍ଡିତ । ରଜନୀକର

---

୧ – ବନ୍ଧନ 'ଖ'

୨ – ମୃଗ 'ଖ'

୩ – ମନୋମୟ 'କ'

୪ – ଜନ 'ଖ'

୫ – ଯୋଗାନ୍ତକ କୃତ୍ 'କ'

୬ – 'ଖ' ରେ ନାହିଁ

ଶେଖର(୧) । ରଜନୀକର ସମ ଶୁକଳ ଶରୀର । ରଜନୀକର ସୁହୃଦ ବିନାଶନ । ରଜନୀକର ନୟନ । ରଜନୀକର ମୂର୍ଦ୍ଧା ସଂସ୍ଥିତ । ରଜନୀକର ମୁଖୀ ବଲ୍ଲଭ । ରଜନୀକର ଶତ୍ରୁ ନିସୂଦନ । ରଜନୀ ଦିବସ ସନ୍ଧ୍ୟା ତ୍ରିନୟନ । ରଜତ ପର୍ବତ ବିଳସିତ ।ରୁଦ୍ର ସ୍ୱରୂପ (୨) । ରସ ଦଳ କମଳ ନିଧାନ । ରମଣୀ ଗଣ ସେବନ । ରକ୍ତ ପଦ୍ମ ପତ୍ର ଇକ୍ଷଣ । ରାଜାଧିରାଜ ରାଜେଶ୍ୱର । ରାଜରାଜେଶ୍ୱର । ରାଜଗଣ ବନ୍ଦିତ । ରତି ମୁଖ କମଳ ରଜନୀକର । ରତି ରଙ୍ଗ ବିବର୍ଜିତ (୩) । ରତି ପରିପୂର୍ଣ୍ଣ । ରତିରସ ବିଶେଷଣ । ରତିନାଥ ନିସୂଦନ । ରତ୍ନାକର ବନ୍ଦିତ ଚରଣ । ରତ୍ନାକର ପତି ଶିର ଧର (୪) । ରତ୍ନାକର ନିବାସ । ରତ୍ନାକର ରଞ୍ଜିତ । ରତ୍ନାକର ଶୋଭନ । ରତ୍ନାକର କ୍ଷୟ ପୂଜିତ । ରତ୍ନାକର ସାଇଁ ପ୍ରିୟ । ରତ୍ନାକର ଫେନ ସମ ଧବଳ । ରତ୍ନାକର ବନ୍ଦିତ ଚରଣ । ରତ୍ନାକର ସମ ସମ୍ପୂର୍ତ୍ତି । ରତ୍ନାକର ଗର୍ଜନ (୫) ବିଷଧର ମେଖଳ । ରଜନୀଚର ବର ରମଣୀ ଗଣ ରତ୍ନ ଛାଟଙ୍କ (୬) କଙ୍କଣ ଲକ୍ଷ୍ମୀ ବିନାଶକ । ରସନାଦି ଇନ୍ଦ୍ରିୟ ଦମିତ । ରୂପାରୂପ ବିବର୍ଜିତ ରଜନୀ ପ୍ରିୟ । ରଜନୀ ବିହାର । ରଜନୀଜିତ । ରଜନୀନାଥ । ରଜନୀ ଦିବସ ବିବର୍ଜିତ । ରସଜ୍ଞ ରସରଞ୍ଜନ । ରସାତ୍ମକ । ରସ ସମ୍ଭୂତ । ରସାଦି ଆଶ୍ରମ । ରସମୟ । ରସ ଶରୀର । ରସ ନାଥ । ରସ ସ୍ତମ୍ଭିତ । ରସାରସ ବିବର୍ଜିତ । ରଜ୍ଜୁ ସର୍ପ ମତ (୭) ମାୟାଦି ନାଥ । ରଙ୍ଗ କୁସୁମ ପ୍ରିୟ । ରୋମ କୂପେ ବ୍ରହ୍ମାଣ୍ଡଧର । ରୂପଧୃକ୍ । ରୂପାଖ୍ୟାତ (୮) । ରଚିତ କଙ୍କଣ ଭୁଜ ଶୋଭିତ । ରବି ସହସ୍ର ସମ ପ୍ରକାଶ । ରାଗାଦି ଦୋଷ ବିବର୍ଜିତ । ରାଜୀବ ରାଜିତ ଶରୀର । ରସାତ୍ମକ । ରାତି ଦିବସ ସଂସ୍ମରଣ । ରତିପତି ବିଧ୍ୱଂସନ । ରତିପତି ଶତ ବିନିନ୍ଦିତ ବଦନ । ରୁକ୍ମଣୀରମଣ ରମ୍ୟ ।୪୦।

---

୧ — ବଦନ 'ଖ'
୨ — ରହିଦ୍ର ରୂପ 'କ'
୩ — ବିନର୍ଜିତ 'ଖ'
୪ — ରତ୍ନାକରେପୂର୍ତ୍ତି ଶ୍ରୀଧର 'ଖ'
୫ — ଜଗତ ଜନ ପୂଜନ 'ଖ'
୬ — ହାଟକ 'ଖ'
୭ — ଗତ 'କ'
୮ — ରୂପାଜତ୍ 'ଖ'

ଜୟ ଜୟ ଲିଙ୍ଗଳଧର । ଲଜ୍ଜାଽଲଜ୍ଜା ବିବର୍ଜିତ(୧) । ଲଭ୍ୟାଲଭ୍ୟ ବିବର୍ଜିତ । ଲାଭାଲାଭ ବିହୀନ । ଲଳିତ ଲଳନା ଅର୍ଦ୍ଧ ଶରୀର । ଲିଙ୍ଗାତ୍ମକ । ଲିଙ୍ଗ ଶରୀର । ଲିଙ୍ଗଳଧବ । ଲିଙ୍ଗ ଶରୀର । ଲିଙ୍ଗାତ୍ମକ । ଲିଙ୍ଗ ଶରୀର ବିବ୍ରତ । ଲିଙ୍ଗଧର । ଲିଙ୍ଗରାଜ । ଲମ୍ପଟାଦି ଦୋଷ ରହିତ । ଲୋଷ୍ଟ୍ର କାଞ୍ଚନାଦି ସମ । ଲେପରସାଦି ବିଦ୍ୟାପ୍ରଦ । ଲୟ ନେତ୍ର ପରିପୂର୍ଣ୍ଣ । ଲୟ ନେତ୍ରାଶ୍ରିତ । ଲୟାତ୍ମକ (୨) । ଲୟା ଲୟ ବିବର୍ଜିତ । ଲୟ ନିଧାନ । ଲୟ ସ୍ୱରୂପ । ଲୋକାଲୋକ ପର୍ବତାଶ୍ରୟ । ଲୋକନାଥ । ଲୋକାଶ୍ରିତ । ଲୋକ ଚତୁର୍ଦ୍ଦଶ ଈଶ୍ୱର । ଲୋକାଲୋକ ପୂଜ୍ୟ । ଲୋଚନ ମନଧ୍ୟାନ(୩) । ଲୋଲାଦ୍ଭିତ ମାୟା ବିବର୍ଜିତ । ଲମ୍ବୂଙ୍କ । ଲଭ୍ୟାତୁର । ଲମ୍ବୋଦର ଲୟଗମ୍ୟ । ଲବ୍ଧବୋଧ ସ୍ୱରୂପ । ଲୋମକୂପେ ସ୍ଥିତ ସ୍ୱେଦ କାରୁଣ୍ୟ ଜଳ । ଲୋମସାଦି ଋଷି ବନ୍ଦିତ । ୪୧ ।

ଜୟ ଜୟ ବନ୍ଧୂକାଧର । ବନ୍ଧ ମୁକ୍ତ ବିବର୍ଜିତ । ବଙ୍କାନାଳ କୋବିଦ । ବ୍ରହ୍ମରନ୍ଧ୍ର ବନବାସନ । ବାଳେନ୍ଦୁ ମୁକୁଟ ମଣ୍ଡିତ (୪) ଶିର । ବାକ୍ ପାଣି ପାଦ ପାୟୁ ଉପସ୍ଥ ଇନ୍ଦ୍ରିୟ ବିବର୍ଜିତ । ବାଡ଼ବାଗ୍ନି ଉଦର । ବାସବ ଭୁଜ । ବସୁମତୀ ନିତମ୍ବ । ବସୁଧା (୫) ଚରଣ । ବ୍ରହ୍ମ ବଦନ । ବିବସ୍ୱତ ନୟନ । ବାଗୀଶ୍ୱରୀ ବଚନ । ବିଶ୍ୱ ଶରୀର । ବିଶ୍ୱେଶ୍ୱରୀ ବାଉଜବନ ବିବସ୍ଥାନ । ବଜ୍ର ବିଧ୍ୱଂସନ । ବିଷମ ଦୁଃଖ (୬) ନାଶନ । ବେଦବଳ୍ଲୀ ସ୍ତୁତ ବନ୍ଦିତ । ବ୍ରହ୍ମା ବନ୍ଦିତ ଚରଣ । ୪୨ ।

ଜୟ ଜୟ ଶଶଧର ଶେଖର । ଶାରଙ୍ଗକର । ଶମ ଦମାଦି ନିରତ । ଶରଦଚନ୍ଦ୍ର ସହସ୍ର କାନ୍ତି । ଶରଦଚନ୍ଦ୍ର ସମ ବଦନ । ଶାରଙ୍ଗ ଚର୍ମ ବସନ । ଶାରଙ୍ଗ ନୟନୀ ବଦନ ଚୁମ୍ବନ । ଶାଶ୍ୱତ

---

୧ – 'କ' ରେ ନାହିଁ
୨ – ଲକ୍ଷ୍ମ୍ୟାତ୍ମକ 'କ'
୩ – ନିଧାନ 'କ'
୪ – ବାଳଇନ୍ଦୁ ମୁକୁଟ ଶିର 'କ'
୫ – ବସୁନ୍ଧରା 'କ'
୬ – ବୃଦ୍ଧି 'ଖ'

ଶାନ୍ତ ସ୍ୱରୂପ । ଶଙ୍ଖ ପଦ୍ମ ନିଧିଦାୟକ (୧) । ଶଙ୍ଖଚକ୍ରଧର ହୃଦୟ ନିବାସ । ୪୩ ।

ଜୟ ଜୟ ଶିବ ଶମ୍ଭୋ । ଜୟ ଶ୍ରୀହଟ୍ଟ ପାଟଣା ବିହର । ଶଶାଙ୍କ ଶେଖର । ଶୁଦ୍ଧ ଚଇତନ ସ୍ୱରୂପ । ଶୁଦ୍ଧାନ୍ତକରଣ । ଶୂଳଧର । ଶଶିମଣ୍ଡଳ ମଣ୍ଡିତ କୁନ୍ତଳ (୨) । ଶାତକୁମ୍ଭକଟିମେଖଳ । ଶାକମ୍ବରୀ ଶ୍ୟାମଳ ଶରୀର ଆଲିଙ୍ଗିତ । ଶଙ୍କର ଶିବ ହର ନାମିତ । ଶ୍ରିୟାଲିଙ୍ଗନ । ଶ୍ରୀବନ୍ଦିତ । ଶ୍ରୀକରଣ । ଶ୍ରୀପଦ । ଶ୍ରୀକଣ୍ଠ । ଶ୍ରୀଶ୍ୱର । ଶ୍ରୀରଙ୍ଗ ନିଧାନ ସଂସ୍ଥିତ । ଶ୍ରୀକାଳ ଗଣ ବେଷ୍ଟିତ । ଶ୍ରାଧୁତ ପାରଗ ସହସ୍ର କାନ୍ତ ଶକ୍ତିଧର । ଶକ୍ତି ମଧ୍ୟଗତ । ଶକ୍ତି ଆତ୍ମକ । ଶ୍ରୀପର୍ବତ ଶୃଙ୍ଗ ନିବାସ । ଶବ୍ଦାଶ୍ରିତ । ଶୀଲ ସମ୍ପନ୍ନ । ଶାରଦାଶ୍ରୟ । ଶିତ ପୀତ ହରିତ ଲୋହିତ ବିବର୍ଜିତ । ଶ୍ରୀରାମଚନ୍ଦ୍ର ସେବିତ । ଶଙ୍ଖ କୁଣ୍ଡଳ ମଣ୍ଡିତ ଗଣ୍ଡସ୍ଥଳ । ସମଦରଶନ । ସମ ସ୍ୱରୂପ । ଶଙ୍ଖ ନାଳ ନିଧାନ । ସାମଗାୟନ ନିରତ । ଶାକମ୍ଭ ଗଣ ପୂଜିତ । ଶଶ ବିଷାଣବତ ମାୟାକର । ଶୁନ୍ୟ ବନ୍ଦିତ । ଶୁନ୍ୟେଶ୍ୱର । ଶୁନ୍ୟ ସ୍ତମ୍ଭନ କରଣ । ଶୁକ୍ଳ ଶରୀର । ଶୁକ୍ଳାମ୍ବରଧର । ଶେଷଅନ୍ତକର କାରଣ । ସର୍ବମୟ । ୪୪ ।

ଜୟ ଜୟ ସତ୍ୟଯୁଗ ଐଶ୍ୱର୍ଯ୍ୟ ନିଧାନ । ଷଟ୍‌କର୍ମ ନିରତ । ଷଟ୍‌ଶାସ୍ତ୍ର ବନ୍ଦିତ । ଷଟ୍ କମଳ ଦଳ ନିବାସ । ଶତଷଷ୍ଟିକୋଟି ଅପସରାଗଣ ପୂଜିତ । ଷୋଡ଼ଶ ଦଳ କମଳ ନିଧାନ (୩) । ଷଟ୍‌ବର୍ଗ ବିବର୍ଜିତ (୪) । ଷୋଡ଼ଶ କଳାଧର । ଷଟ୍ (୫) ସାହସ୍ର ବନ୍ଦିତ । ଷଟ୍ ସାହସ୍ରଜ୍ଞ । ଷଟ୍ ସାହାସ୍ର କୃତ । ଷଟ୍ ସାହସ୍ରମ୍ଭିକ । ଷଟ୍‌ଚକ୍ର ନିବାସ (୬) । ଷଟ୍‌ଚକ୍ରାଶୟ । ଷଟ୍‌ଚକ୍ର ମଧ୍ୟେକ । ଷଟ୍‌ଚକ୍ର ଭେଦିକ । ଷଟ୍‌ଚକ୍ର କୋଷ

---

୧ – ସେବିତ 'କ'
୨ – କୁଣ୍ଡଳ 'କ'
୩ – ଶ୍ୱେତ
୪ – 'ଙ୍ଖ' ରେ ନାହିଁ
୫ – ଶତ 'କ'
୬ – ବିକାଶ 'କ'

ନିବାସ । ଷଡ଼ରସାସ୍ୱାଦନ । ଷଡ଼ାନନପିତର । ଷଡ଼ଙ୍ଗ ଅଧ୍ୟୟନ (୧) । ଷଡ଼ର୍ଘ୍ୟ ପୂଜା ଗ୍ରହଣ । ୪୫ ।

ଜୟ ଜୟ ସର୍ବ କରଣ । ସର୍ବ ଲକ୍ଷଣ ସମ୍ପନ୍ନ (୨) । ସର୍ବାସର୍ବ ବିବର୍ଜିତ । ସୁଖ ସ୍ୱରୂପ । ସୁଖପ୍ରଦ । ସୁଖାଶ୍ରିତ । ସୁଖମୟ । ସୁଖ ଶରୀର । ସୁଖ ଆତ୍ମକ । ସୁଖ ନିଧାନ । ସୂକ୍ଷ୍ମସୂକ୍ଷ୍ମାଶ୍ରିତ । ସୂକ୍ଷ୍ମାସୂକ୍ଷ୍ମ ଶରୀରମୟ । ସୂକ୍ଷ୍ମାନନ୍ଦ । ସତ୍ତାଂମତ । ସତ୍ (୩) ସ୍ୱରୂପ । ସନାତନ ସୁପ୍ରକାଶ । ସଦ୍‌ଜ୍ଞାନନ୍ଦ । ସତ୍ୟାନନ୍ଦ । ସ୍ୱପ୍ନାତ୍ମକ । ସ୍ୱପ୍ନାଶ୍ରିତ । ସ୍ୱପ୍ନଭବ ଜଗତାଧିଷ୍ଠିତ । ସୁଲକ୍ଷଣ । ସ୍ୱପ୍ନାସ୍ୱପ୍ନ ବିବର୍ଜିତ । ସଦ୍‌ବୃତ୍ତ । ସର୍ବଥା ଶିବ ସ୍ୱରୂପ । ସକଳ ଭୁବନାଧିପ । ସକଳ ଭୂତାଧିପ । ସରସ୍ୱତୀ ବନ୍ଦିତ । ଶାକମ୍ବରୀ ଗଣନାଥ । ସହସ୍ର ଯୁଗ ଧାରଣ । ସହସ ନାମ । ସହସ୍ର ମୂର୍ତ୍ତି ଧାରଣ । ସହସ୍ର ସହସ୍ର କର ସମକାନ୍ତ । ସହସ୍ର ଭୁଜଧାରକ । ସହସ୍ର ପାଦ ଉର କଟି ଜଘନ ଶ୍ରବଣ । ସହସ୍ର ନାସିକା । ସହସ୍ରକଳ୍ପ ପାରଗ । ସହସ୍ରାରବିନ୍ଦ ନିବାସ । ଶାଳଗ୍ରାମ ଆଦି ଅର୍ଚ୍ଚିତ । ସଲୀଳ ଅନଳ ନିବାସ । ସରିତାଂପତି ନନ୍ଦିନୀ ଅର୍ଚ୍ଚିତ । ସରିତାଂପତି ବଲ୍ଲଭ ପ୍ରିୟ । ସରିତାଂପତି ନନ୍ଦନ ଶେଖର । ସରିତାଂପତି ସେବିତ ପଦପଦ୍ମ (୪) । ସଂସାର ତାପ ନିବାରଣ । ସାକ୍ଷୀ ସ୍ୱରୂପ । ସୁକେଶୀ (୫) ପ୍ରିୟ । ସୁଲୋଚନା ଗଣ ସେବିତ । ସପ୍ତଦ୍ୱୀପେଶ୍ୱର (୬) । ସପ୍ତପାତାଳଧର । ସପ୍ତସମୁଦ୍ର ବିହାର । ସପ୍ତନଦୀ ତାରଣ । ସପ୍ତବ୍ରହ୍ମାଣ୍ଡ ମଣ୍ଡିତ । ସପ୍ତଧାତୁ ବିଦାରଣ । ସପ୍ତଋଷି ବନ୍ଦିତ । ସପ୍ତାଶ୍ୱରଥ ମଣ୍ଡିତ । ସପ୍ତଫଣୀ ଶେଖର ଧର । ସପ୍ତାବରଣ ବିମୋଚନ । ସପ୍ତଲୋକ ବରପ୍ରଦ । ସପ୍ତଶୈଳ ନିବାସ । ସପ୍ତପୁର ଭେଦକ । ସଙ୍ଗ ବିବର୍ଜିତ । ସଙ୍ଗମୟ । ସଂସାର ସାଗର ବିଚ୍ଛେଦନ । ସାରସ୍ୱତ । ସାଙ୍ଗୋପାଙ୍ଗ ପଦନମଣ ।

---

୧—ଆଧ୍ୟାନ 'କ'
୨—ସମ୍ପୂର୍ଣ୍ଣ 'କ'
୩—ସୁଖ ସ୍ୱରୂପ 'କ'
୪—ଦ୍ୱୟ 'ଖ'
୫—କେଶୀ ପ୍ରିୟ 'ଖ'
୬—ସପ୍ତ ବଟେଶ୍ୱର 'କ'

ସାରସ୍ୱତ ଶ୍ରୁତି ପଠନ । ଶାକମ୍ବରୀ ସୁରତ ପରାପୂର୍ଣ୍ଣ । ସାମ୍ରାଚିଦ୍‌ଘନ । ସାକ୍ଷାତ୍ ବ୍ରହ୍ମ ସ୍ୱରୂପ । ସହସ୍ର ନାଡ଼ୀ ଚକ୍ର ବିଶୋଧନ । ସ୍ୱଭାବତ ବୋଧ ସ୍ୱରୂପ । ଶୁକାଦି ଋଷି ବନ୍ଦିତ । ଶୁକ୍ର ତେଜ । ଶିଶୁ ବେଦ । ସ୍ଥିତ ବନ୍ଧ ସନ୍ନତ । ସ୍ମର ସ୍ୱରୂପ ନିନ୍ଦିତ । ସ୍ମର ବିଧ୍ୱଂସନ । ସୁରେଶ୍ୱର । ସ୍ୱରେଶ୍ୱରୀ ଧର (୧) । ସୁରାସୁର ଆମ୍ନାୟ । ସୁରଗଣ ଶତ୍ରୁ ନିସୂଦନ । ସୁଦର୍ଶନ ଧାରଣ ପ୍ରାଣ । ସ୍ୱନ୍ଦଗଣେଶ ସେବିତ । ୪୭ ।

ଜୟ ଜୟ ଶିବ ଶମ୍ଭୋ ! ହଳୀ ହଳଧର । ହୁଂକାର ତନ୍ତ୍ର । ହାକିନୀଗଣ ଈଶ୍ୱର । ହିମାଦ୍ରି ନିବାସ । ହିମାଳୟ ନନ୍ଦିନୀ ହୃଦୟ ଚନ୍ଦନ । ହିମାଳୟ ସଦନ । ହିମଚୟ ସମ ଶୁକ୍ଳ । ହରଷ ସ୍ୱରୂପ । ହାର କଙ୍କଣ ଭୂଷଣ । ହସ୍ତ କର । ହିତାହିତ ବିବର୍ଜିତ । ହରି ହୃଦୟ ପଦ୍ମ ବିଳସିତ । ହୁତାସନ ସମ ନୟନ । ହୁତାସନ ପ୍ରଦୀପ୍ତ (୨) । ହୁତାସନ ସମ ଶରୀର । ହୁତାସନ ଆମ୍ନାୟ । ହୁତାସନ ମଧ୍ୟ ସଂସ୍ଥିତ । ହୁତାସନ ବନ୍ଧ । ହୁତାସନ ବିବର୍ଜିତ । ହୁତାସନ ମୟ । ହୁତଭୁକ୍ । ହୁତାସନ ହବି ଭଗେଶ୍ୱର । ହବିଭାଗ ଭୋଗକର୍ତ୍ତା । ହବିନିଧାନ । ହଂସ ସ୍ୱରୂପ । ହଂସମୟ । ହର ହର । ହରିଣ ଶିର ହରଣ କୁଠାର କର । ହରିଣ ଚର୍ମ ପରିହରଣ । ହରିଣନୟନୀଗଣ ବର ପ୍ରଦ । ହଂସ ଯୁକ୍ତ କମଳ ନିଧାନ । ହଠ ଯୋଗେଶ୍ୱର । ହଠ ଯୋଗାଶ୍ରିତ । ହଠ ଯୋଗ ଗମ୍ୟ । ହଠ ଯୋଗ ବିହାର । ହୀରା ସମ ଶରୀର କାନ୍ତି । ହୟମେଧ ହବିଶ୍ୱର । ହରଣ ହାରଣ ବିବର୍ଜିତ । ହାଡ଼ମାଳ ମଣ୍ଡିତ ଶରୀର । ହର୍ଷା ହର୍ଷ ବିହୀନ । ହିମାଳୟ ଈଶ୍ୱର (୩) । ହାନିଲାଭ ବିବର୍ଜିତ । ହେମ ସମ କାନ୍ତି କଳେବର । ହେମାଙ୍ଗ ବିଭୂଷଣ । ହର ହର ଶବ୍ଦ ଉଚ୍ଚାରଣ । ହସ୍ତୀ ମୁଖ ହସ୍ତ ବେନ ଯୋଜିତ ସମ୍ମୁଖ୍ୟ । ହସ୍ତୀ ହସ୍ତ ସମଭୁଜ । ହସ୍ତୀ ଚର୍ମ ପରିଧାନ । ହରିହର ଏକାତ୍ମିକ (୪) । ହରଷ ହରନାଥ । ହିରଣ୍ୟ ଗର୍ଭ ବନ୍ଦିତ ଚରଣ । ହିରଣ୍ୟ ଗର୍ଭେଶ୍ୱରୀ । ହିରଣ୍ମୟ । ହିମାଦ୍ରି କେଶ୍ୱର । ହସିତ ବଦନ ବିକଶିତ । ହରିବିରିଞ୍ଚି ସେବିତ ଚରଣ ତଳ ।

---

୧—'ଖ' ରେ ନାହିଁ

୨—'ଖ' ରେ ନାହିଁ

୩—ହିମାଚଳେଶ୍ୱର 'ଙ'

୪—ରଳେନାତ୍ମିକ 'ଖ'

ଜୟ ଜୟ କ୍ଷରାକ୍ଷର ବିବର୍ଜିତ । କ୍ଷ୍ମାପତିଗଣ ବନ୍ଦିତ । କ୍ଷମାସାଗର । କ୍ଷମାଧର ଧାରଣ । କ୍ଷିତିବର । କ୍ଷେତ୍ରାଧିପ । କ୍ଷମାଧୀଶ । କ୍ଷିତିଲିଙ୍ଗ ସ୍ୱରୂପ । କ୍ଷେତ୍ରାକ୍ଷେତ୍ର ବିବର୍ଜିତ । କ୍ଷରାକ୍ଷର ପରିପୂର୍ଣ୍ଣ । କ୍ଷରିତ ତ୍ରିଭୁବନ କାରଣ । କ୍ଷୁଧା ପିପାସାଦି ବିବର୍ଜିତ । କ୍ଷତ୍ରିୟଧର୍ମ ସମ୍ପୂର୍ଣ୍ଣ । କ୍ଷେତ୍ରେଶ୍ୱର । କ୍ଷେତ୍ରପାଳ ଗଣସେବିତ । କ୍ଷୀର ସମୁଦ୍ର ବିହରଣ । କ୍ଷୀର ସମ ଶୁକ୍ଳ ଶରୀର । କ୍ଷୀର ବାରାନିଧି ପ୍ରିୟ । କ୍ଷିରୋଦଶାୟି ପ୍ରିୟ । କ୍ଷଣିକ ବିଷୟ ରସ ବିବର୍ଜିତ । କ୍ଷୋଭ ନାଶନ । କ୍ଷିତିତଳ ସମ୍ଭୂତ । କ୍ଷତ୍ରିୟାଶ୍ରୟ । କ୍ଷମାସାଗର । କ୍ଷମାନାଥ । କ୍ଷେତ୍ର ଅଷ୍ଟ ଲିଙ୍ଗନାଥ, ଛନ୍ଦନିଃଶ୍ୱାସ ଗତିଚର । କ୍ଷମାକର ଶିବ ଶିବ । ୪୯ ।

ଜୟ ଜୟ ଅନାଦିନାଥ ସ୍ୱରୂପ । ଅପରାଜିତ । ଅପ୍ରମେୟ ପ୍ରଭବ । ଅକ୍ଷର ସ୍ୱରୂପ । ଅକ୍ଷର ଶରୀର । ଅକ୍ଷର ଗୋଚର । ଅଗୋଚର ମହିମା । ଅନନ୍ତ ଜୀବଆତ୍ମା ସ୍ୱରୂପ । ଅନନ୍ତ ନାଗାଭରଣ । ଅଷ୍ଟକୁଳ ନାଗେଶ୍ୱର । ଅନଳ କଳ୍ପ । ଅର୍ଦ୍ଧ ଶରୀର । ଅଯୋନିଜାତକ । ଅନ୍ତକ ଭୟ ନିବାରଣ । ଅଷ୍ଟ ଐଶ୍ୱର୍ଯ୍ୟ ଦାୟକ । ଅନଙ୍ଗ ଅଙ୍ଗ ନିଧନ । ଅବ୍ୟୟ ଅପ୍ରପଞ୍ଚ । ଅବ୍ୟକ୍ତ । ଅଣ୍ଡାକାର ବ୍ରହ୍ମାଣ୍ଡଧର । ଅଷ୍ଟାଦଶ ବିଦ୍ୟାନିଧାନ । ଅମଳ । ଅଘହର ସ୍ୱରୂପ । ଅମ୍ବିକା ଅଧରପଲ୍ଲବ ରସାମୃତପାନକ । ଅହୀନ୍ଦ୍ର ପରିଧାପନ । ଅଚଳବର ଶିଖରେ ନିବାସ । ଅମ୍ବୁଜ ନୟନ । ଅମ୍ବୁଜ ନୟନାମ୍ବକର । ଅମୃତସରିତାଧାର । ଅମର ଶରୀର । ଅମର ସରିତଧର । ଅମରଗଣ ବନ୍ଦିତ । ଅଣଅକ୍ଷର । ଅକ୍ଷର ସ୍ୱରୂପ । ଅପ୍ରକାଶ । ଅବ୍ୟୟ, ଅଭବ, ଭବ, ଅଷ୍ଟବସ୍ୱାଦି ଋଷି ବନ୍ଦିତ (୧) । ଅଶେଷ ବେଦ ଫଳପ୍ରଦ । ଅନସ୍ତମିତ । ଅସ୍ଥିମାଳା ବିଭୂଷିତ (୨) । ଅସ୍ତାଚଳ ନିବାସ । ୧ ।

ଜୟ ଜୟ ଆଶ୍ଚର୍ଯ୍ୟ ସ୍ୱରୂପ । ଆବ୍ରହ୍ମସ୍ତମ୍ଭ ପରିଯନ୍ତେ(୩) ବ୍ୟାପକ । ଆସମୁଦ୍ରାନ୍ତ ପୃଥ୍ୱୀର ଈଶ୍ୱର । ଆରକ୍ତ କମଳେକ୍ଷଣ ଆସନ । ଆଦି-ମଧ୍ୟାନ୍ତ ରହିତ । ଆଧି ଭଉତିକ । ଆଧି ଦଇବକ । ଆଧ୍ୟାତ୍ମିକ ତାପନାଶନ । ଆତ୍ୟନ୍ତିକ ପ୍ରଳୟ ବିବର୍ଜିତ । ଆୟୁଷପ୍ରଦ । ଆୟୁଷ

୧—ପୂଜିତ 'ଖ'
୨—'ଖ' ରେ ନାହିଁ
୩—'ଙ' ରେ ନାହିଁ

ସ୍ୱରୂପ । ଆକାଶସମ କାନ୍ତି । ଆଦିକନ୍ଦ । ଆଦିମୂଳ । ଆଦିଅନ୍ତମଧ୍ୟ ବିବର୍ଜିତ । ଆଦିଅନ୍ତମଧ୍ୟ ଚର ପୁରୁଷ । ଆନନ୍ଦ ଘନ । ୨ । ଜୟ ଜୟ ଇନ୍ଦିରାପତି ବନ୍ଦିତ ଚରଣ । ଇତିହାସ ପୁରାଣ ସ୍ତୁତି ଗାୟନ । ଇନ୍ଦ୍ରଜିତ ପଦକମଳ । ଇଅଁଳା ପିଅଁଳା ନାଡ଼ୀ ନିସୂଦନ । ଇନ୍ଦ୍ରାଦି ଇନ୍ଦ୍ରପଦ ଦାୟକ । ଜୟ ଜୟ ଈଶ୍ୱର ଗଣନାଥ । ଇନ୍ଦ୍ରାଦି ସୁଖ ଦାୟକ । ଈର୍ଷ୍ୟାଦି ଦୋଷ ଗୋଚରାଗୋଚର । ଇନ୍ଦ୍ରିୟ ଈଶ୍ୱର । ଈଶ୍ୱରାଦି ଈଶ୍ୱର ବରପ୍ରଦ । ଇନ୍ଦୁ ଅଙ୍କିତ ଶେଖର । ୩ ।

ଜୟ ଜୟ ଉମାପତି । ଉମା ଉତ୍ତୁଙ୍ଗ ପୀବର କୁଚଦ୍ୱୟ ପୀଡ଼ିତା-ଳିଙ୍ଗନ । ଓଙ୍କାର ସ୍ୱରୂପ । ଉମ୍ଭ ଧୂମ୍ର ଜ୍ୟୋତିଜାଳାଦିର ନିବାରଣ । ଉଜ୍ଜ୍ୱଳଚନ୍ଦ୍ର ସ୍ୱରୂପ । ଉତ୍ତଙ୍ଗ ମାଳାଭରଣ । ଉନ୍ମତ୍ତ ଜ୍ଞାନ ନିରତ । ଉତ୍କଣ୍ଠ ଫଳପ୍ରଦ । ଉପତାପ ନାଶନ । ୪ । ଜୟ ଜୟ ଉତ୍ତମ ପୁରୁଷ ବନ୍ଦିତ । ଉତ୍ତୁଙ୍ଗ ବରପ୍ରଦ । ଉଲଗ୍ନନାଥ । ଉଦୟାଚଳ ନିବାସ । ଉଦୟାଦିତ୍ୟ ସମ କାନ୍ତି । ଉଦୟଅସ୍ତ ବିବର୍ଜିତ । ଉଚିତ ପୂଜା ଗ୍ରହଣ । ଉଲ୍ଲସିତ ବଦନ ସରୋଜ । ଉରେ ମଣ୍ଡିତ ଉତ୍ତମ ପନ୍ନଗ । ଉର୍ମିକୁଳ ନାଶନ । ଉର୍ମିମାଳା ସମ । ଉତ୍ତର ଦିଗ ନିବାସ । ୫ ।

ଜୟ ଜୟ ଋଷିଗଣ ବନ୍ଦିତ ଚରଣ ଯୁଗ । ରୂପାଶ୍ରିତ । ରୂପାରୂପ ବିବର୍ଜିତ । ଋଗ୍‌ବେଦାନୁଗାୟନ । ରୂପ ଶୈଳ ବିଧାନ । ଋଷିଗଣ ଧ୍ୟାନ ପରାୟଣ । ଋଷି ନିର୍ବିକାରାମ୍ଭ ମୂଳିତ । ରୂପ ଅନନ୍ତ । ୬ । ଜୟ ଜୟ ରୂପାଧିକ । ରୂପେଶ୍ୱର । ଋଚିର କୁଣ୍ଡଳଧର । ଋଷିଗଣ ନାଥ । ଋଷିଗଣ ଧ୍ୟାନ ପରାୟଣ । ରୂପାରୂପଦ୍ୱୟା ଶୁଦ୍ଧାଶ୍ରିତ ସୁପ୍ରକାଶ । ରୂପାରୂପ ମଧ୍ୟ ବିବର୍ଜିତ । ରୂପାରୂପ ଅଶେଷ ବ୍ୟାପକ । ୭ । ଜୟ ଜୟ ଲିକ କୁହୁକ ଗୋଟିକ ଅଞ୍ଜନ ଲେପନାଦି ବିଦ୍ୟାପ୍ରଦ । ୮ । ଜୟ ଜୟ ଲିକ ବିସ୍ତାର ବ୍ୟୟ ବିବର୍ଜିତ । ଲିକ ମଧ୍ୟ ଅଗୋଚର ପୂରିତ । ୯ ।

ଜୟ ଜୟ ଏ ବିଶେଶ୍ୱର ଭୁବନେଶ୍ୱର । ଏ ସର୍ବନାମ ରୂପେଶ୍ୱର । ଏକାମ୍ର ବନ ବିହାର । ଏକାଦଶ ରୁଦ୍ର ସ୍ୱରୂପ । ଏକେ ଅଶେଷ ପ୍ରଶିତ । ଏକଶେଷ ନାଗବୃତ । ୧୦ । ଜୟ ଜୟ ଐକ୍ୟ-

ନୈଷ୍କର୍ମ୍ୟ ବିବର୍ଜିତ । ଐଶ୍ୱର୍ଯ୍ୟ ବରପ୍ରଦ । ଐରାବତ ପତି ବନ୍ଦିତ । ଐଶ୍ୱର୍ଯ୍ୟ ଲକ୍ଷ୍ମୀ ସେବିତ ପଦକମଳ (୧) । ଐନ୍ଦ୍ରଜାଲିକ ବିଦ୍ୟୋପକ୍ଲୃପ୍ତ ଜଗତ (୨) । ୧୨ ।

ଜୟ ଜୟ ଓଷ୍ଠପୁଟୋତ୍ଥ ଚତୁର୍ବେଦ । ଓଷ୍ଠପୁଟେ ଆଶ୍ରିତ ଅନନ୍ତଦେବ । ଓତପ୍ରୋତ ଜଗତ ନିଧାନ । ୧୩ । ଜୟ ଜୟ ଔଷଧୀଶ୍ୱର ଶେଖର । ଔଷଧାତ୍ମକ । ଔଷଧମୟ । ଔଷଧସ୍ୱରୂପ । ଔଷଧୀଶ । ଔଷଧ ଭକ୍ଷଣ । ଔଷଧ କରଣ । ଔଷଧ ସ୍ଥାପନ । ୧୪ । ଜୟ ଜୟ ଓଁ ସ୍ୱରୂପ । ଓଁ ବ୍ରହ୍ମପୂଜ୍ୟମାନ । ଓଁ ଅ-କାର ଉକାର ମକାର ସ୍ୱରୂପ । ଓଁକାର ଜାପେଶ୍ୱର । ଓଁକାର ଗମ୍ୟ । ଓଁକାର ଅଶେଷ ପୂରିତ । ଓଁକାର ଅନାହତ ନାଦ । ଓଁକାର ଚରିତ । ଓଁକାର ଶରୀରମିତ ।୧୫।

ଜୟ ଜୟ ଅକ୍ଷରାକ୍ଷର ପୂରିତ । ଅବାଙ୍ମନସ (୩) ଗୋଚର । ଅରୂପ । ଅମଳ । ଅମନ । ଅନନ୍ତ ଐଶ୍ୱର୍ଯ୍ୟ ସୁଖପ୍ରଦ । ଅଚ୍ୟୁତ ଅନନ୍ତ । ଅମ୍ବିକା ଅର୍ଦ୍ଧାଙ୍ଗ ଶରୀର । ଅର୍ଦ୍ଧମାତ୍ରାରେ ରହିତ । ଅର୍ଦ୍ଧମାତ୍ରା ପୂରିତ ।୧୬। ସେ ଅଭିନବ ଚୈତନ୍ୟ ରୁଦ୍ରଗଣ । ପଞ୍ଚାଶତ ବର୍ଣ୍ଣ ଭେଦରେ ଅନେକ ସ୍ତୁତିକରି ପାଏ ପଡ଼ି ଶୋଇଲା । ଏମନ୍ତ ଦେଖି ସେ ସଦାନନ୍ଦ ଦୟାଦ୍ର ଚିତ୍ତ ପ୍ରସନ୍ନାତ୍ମା ସଦାଶିବ ଅତ୍ୟନ୍ତ ପ୍ରସନ୍ନ ହୋଇଲା । ଭୃତ୍ୟର ଶୁଦ୍ଧ ବୁଦ୍ଧି ଦେଖି କାକୁସ୍ଥ ବଚନ ଶୁଣି । କୋମଳ କରି ବୋଲୁଅଛନ୍ତି ଦେବେନ୍ଦ୍ର ମୁକୁଟମଣି । କୋମଳ କରି ବୋଲୁଅଛନ୍ତି (୪) ଅମୋଘ ଅମୃତମୟ ବାଣୀ । ହେ ବତ୍ସ ! ଅଭିନବ ଚୈତନ୍ୟ ! ତୁ କମା ହେଉଛୁ ଏତେ ଛନ୍ନ । ଯାହା ବୁଦ୍ଧିରେ ଏତେ କଥା ଥାଇ । ସେ କାହିଁ ଆଉ ଦୁର୍ଗତିକି ଯାଇ । ଏବଂ ଭୃତ ଯଦ୍ୟପି ହୋଇଲା ଜ୍ଞାନ । ତୋହର ପୂର୍ବ କଲ୍ପନା କର୍ମ କେ କରିବ ଆନ (୫) । ଜୀବର ସେ ଅଛି ନା ଜନ୍ମ ମରଣ ଚିହ୍ନ । ଜୀବ

---

୧—ପଦଦ୍ୱୟ 'କ'

୨—'ଖ' ରେ ନାହିଁ

୩—ମନ 'ଖ'

୪—ଅଭିନବ ଚେତନ୍ୟର କାକୁସ୍ଥ ବୁଦ୍ଧି ଦେଖି ବୋଲିଅଛନ୍ତି କୋମଳକରି ଅମୋଘ ଅମୃତ ବାଣୀ 'ଖ'

୫—ନ ହୋଇବ ଆନ 'ଖ'

ଶରୀରୁ ତୁ ନୋହୁ ଅଭିନ୍ନ (୧) ! ତୋହର ବାଞ୍ଛା ଏ ହୋଇଲା କର୍ମ । କର୍ମ କରନ୍ତେ (୨) ହୋଇଲା ଧର୍ମ । ଧର୍ମ ହୁଅନ୍ତେ ହୋଇଲା ଶ୍ରମ । ଶ୍ରମ ହୁଅନ୍ତେ ହୋଇଲା ଭ୍ରମ । ଭ୍ରମ ହୁଅନ୍ତେ ହୋଇଲା ତାପ । ତାପ ହୁଅନ୍ତେ ହୋଇଲା ପାପ । ହେ ବତ୍ସ ! ଏହାକୁଟି ବୋଲି ପ୍ରାଲବ୍ଧ । ଏ ପ୍ରାଲବ୍ଧ କର୍ମ ଭୋଗରେ ହେ ଶେଷ ହୋଇ (୩) । ଏହା ବୈଦିକମତେ ଥାନ୍ତେ ଅଛୁଁ କହ । ତୁ ଏବେ ମୃତ୍ୟୁ ଲୋକେ ଜନ୍ମ ହୋଇବୁ । ଇନ୍ଦ୍ରସମ ଐଶ୍ୱର୍ଯ୍ୟ ଭୋଗ କରିବୁ । ପ୍ରାନ୍ତେ (୪) କଇବଲ୍ୟ (୫) ପାଇବୁ । ପଶ୍ଚିମ ସମୁଦ୍ର ତୀରେ । ମଧ୍ୟନଗରେ । ଉତ୍ତର ଭାଗେ । କାଞ୍ଚନ କର ଦେଶେ । ପୃଥ୍ୱୀ ଦେବୀ ଉରସାରେ । ଅମୃତ ତରଙ୍ଗିଣୀ ନଦୀତୀରେ । ଚନ୍ଦ୍ରଶୃଙ୍ଗ ଶେଖରେ । ଚନ୍ଦ୍ର ଉଦୟ ଶୈଳ ଉପରେ । ଏକ କଟକ ଅଛି । ସେ କଟକ ନାମ ବସୁଧା ମଣ୍ଡନ (୬) । ଦୁଃଖ ଦରିଦ୍ର ଜରା ଅପମୃତ୍ୟୁ ଖଣ୍ଡନ । ତହିଁର ରାଜାର ନାମ ଅନଙ୍ଗ ପଦ୍ମାକର । ମନ୍ତ୍ରୀର ନାମ ବିବେକ ରତ୍ନାକର । ସେ ରାଜାର ପାଟମହାଦେବୀର (୭) ନାମ ଶଶୀପ୍ରଭା । ସେ ସମସ୍ତ ଗୁଣେକର ମହେନ୍ଦ୍ର ପ୍ରାୟେ ବଶରେ ଶୋଭା । ଯୁବା ଅବସ୍ଥା ତାର ହୋଇଅଛି ଶେଷ । ପୁତ୍ର ନ ଥିବାରୁ କରି ମୋତେ ଭକ୍ତ କଲା ବିଶେଷ । ସେ ରାଜା ନ୍ୟାୟ ନିଷ୍ଠାଦିଗରେ ଗରିଷ୍ଠ । କୁଳେ ବରିଷ୍ଠ । ଧର୍ମବନ୍ତ ହୋଇ ପାଳଇ ସୃଷ୍ଟି । ନାହିଁ ବନ୍ଧ ଅନ୍ୟାୟ ଅରିଷ୍ଟି । ବାଞ୍ଛା କଲେ ଇନ୍ଦ୍ର କରଇ ବୃଷ୍ଟି । ପୂର୍ବେ ଥିଲେ ଯେମନ୍ତ ରାଜା ଯୁଧିଷ୍ଠି । ସେ ରାଜା ବୈଶ୍ରବଣର ପ୍ରାୟେ ସକଳମତେ ପୂର୍ଣ୍ଣ । ପୁତ୍ର ନ ଥିବାରୁ କରି ନୟନ ଅନବରତେ କରୁଥାଇ ଘୂର୍ଣ୍ଣ । ସେ ଅତ୍ୟନ୍ତ ଶୁଦ୍ଧଚିତ୍ତେ । ସନ୍ତତିର ନିମିତ୍ତେ ଅନେକ ଧର୍ମମାନ କଲା ବିଧିପୂର୍ବକ ମତେ । ସେ କେବଣ କେବଣ ଧର୍ମମାନ କଲା । ସେ ଉପରୁର ମଣ୍ଡନ । କୃଚ୍ଛ୍ର ଚାନ୍ଦ୍ରାୟଣ ।

---

୧—ଜନ୍ମ ସ୍ୱରୂପ ରୁ ଅଟୁ ନା ଭିନ୍ନ 'କ'
୨—ହୋଇଲେ 'କ'
୩—ସରଇ 'କ'
୪—ପଛେ 'କ'
୫—କଇବଲ୍ୟ ଜ୍ଞାନ 'କ'
୬—ବସୁଦ୍ଧ ମଣ୍ଡଳ
୭—ମହାଦେଈର

ଅଧଉର୍ଦ୍ଧ୍ୱ ନିରୋଧ । ଶୀତ ବାତ ତାପ ନିକାଳ ସହନ ଫଳମୂଳାଶନ । ମନ୍ମଥ ଦହନ । ପବମାନ । ଜିତଇନ୍ଦ୍ରିୟ । ସପତ୍ନୀ ପକ୍ଷା । ତୁଳା ମକର ମେଷେ ବାଧି ଧୈର୍ଯ୍ୟ । ଉର୍ଦ୍ଧ୍ୱ ବାହୁ ଏକ ପାଦସ୍ଥିତ । ପଞ୍ଚାଗ୍ନି ଶୋଷଣ । ଦୁର୍ବାରସ ବଳ୍କଭକ୍ଷଣ । ନିଦାଘ ଶୀତ ଦହନ । ଅହନିଶି ହସ୍ତ କୁଶୋଦକେ ଆର୍ଦ୍ର । ଦେବ ପିତୃପର ତୋଷଣତୃପ୍ତ । କୋଟି ଶାଳଗ୍ରାମ ଚିହ୍ନ । କୋଟି ଦ୍ୱିଜବର ଭୋଜନେ ପାଦ ସମାର୍ଜନ । ତୁଳସୀ ଭକ୍ଷଣ କରପତ୍ରେ ଦୁର୍ବାରସ ଆହାର । × ×

ଯମ । ନିୟମ । ଆସନ । ପ୍ରାଣାୟାମ । ଆହାର । ପ୍ରତ୍ୟାହାର । ଧ୍ୟାନ । ଧାରଣା । ସମାଧି । ତୀର୍ଥ । ତୀର୍ଥାଟନ । ମହାବୃକ୍ଷ ରୋପଣ । ପୁଷ୍କରିଣୀ । ପ୍ରାସାଦ । ମଠ । ମଣ୍ଡପ । ଉଦ୍ୟାନ । ବାପୀ । କୂପ । ଦେବାଳୟ ସହସ୍ର ସହସ୍ର । ବିବିଧ ଦ୍ରବ୍ୟ ଅତିଥି ଅଭ୍ୟାଗତ ଦ୍ୱିଜ ନିରତ । ଗୋଗ୍ରାସ । ହବିର୍ଭାଗ ନିରନ୍ତ । ସମ୍ବତ୍ସର ପକ୍ଷା । ଜଳସତ୍ର । ଅନ୍ନାଦିକର ସକଳ ଧର୍ମ କଲି । ସେ ସାତ୍ତ୍ୱିକ ଚିତ୍ତେ + ସନ୍ତୋଷ ନିମିତେ ଜନ ଲୋକଙ୍କ ହକାରି ସଂକଳ୍ପ କରି ବିବିଧ ଦାନ ଦେଲି । ଭୂମି । ଜଳ । ଅନ୍ନ । ବସ୍ତ୍ର । ଅଳଙ୍କାର । ହୟ । କୁଞ୍ଜର । କଳ୍ପତରୁ । ତୁଳା ପୁରୁଷ । ଯମଘଣ୍ଟା । ହେମଗିରି ମଣ୍ଡଳ । ମଣ୍ଡଳାକୃତି ବିପୁଳ ଘର ।

---

× × ଜପଯଜ୍ଞ ବ୍ରତଧ୍ୟାନ, ସ୍ତୁତି ମନ୍ତ୍ର, ନାରାୟଣ ସ୍ମରଣ । ନୈଷ୍ଠିକ ଧର୍ମ । ପ୍ରାଣାୟାମ, ଦକ୍ଷିଣା, ଦାନ, ଧ୍ୟାନ, ତୀର୍ଥ ତୀର୍ଥାନ୍ତର, ଜପତପହୋମ, ହବିଷ ଏକ ବାସରେ ବେଲଦଳଭକ୍ଷଣ । ମହାବୃକ୍ଷ ଆରୋପଣ । ସ୍ତୁତି ସ୍ତୋତ୍ର ଜପ, ଏକ ପାଦାସନ, କୋଟି କୋଟି ବିପ୍ରବର ଶାସନ ସ୍ଥାପନ, ନିତ୍ୟନିୟମ, ମନସଂଯମ, ବିବିଧ ବ୍ୟବହାର, ଶାନ୍ତି, ଦମ, ସୁଖ ଦେବାର୍ଚ୍ଚନ, ସୁଦୀକ୍ଷା ଗ୍ରହଣ, ଅପ୍ରମିତ ପ୍ରାସାଦ ଧର୍ମ ଗୃହକରଣ, ସମୁଦ୍ରସମ ଶିତ ଗୋକୁଳ ଦାନ, ଅନୁବ୍ରତେ ଅଷ୍ଟାଙ୍ଗ ଯୋଗରେ ଧ୍ୟାନ, ଉର୍ଦ୍ଧ୍ୱ ବାହୁ ପବନ ଅଶନ, ନିରନ୍ତରେ ଯାଚକ ଜନରେ ଦେବାରେ ପ୍ରସନ୍ନ, ଜିତଇନ୍ଦ୍ରିୟ, ଅକ୍ରୋଧ, କୃଶ ଶଯ୍ୟାଶୟନ, ନିରାହାର, ସର୍ବ ଭୂତେ ସମଦୃଷ୍ଟି, ଅତିଥି ଅଭ୍ୟାଗତ ପ୍ରିୟ, ଅଷ୍ଟଅଇଶ୍ୱର୍ଯ୍ୟ ନିଧି, କୋଟି ଦ୍ୱିଜବର ଭୋଜନ ପ୍ରିୟ, ଅହର୍ନିଶ ହସ୍ତ କୁଶୋଦକ, ଦେବ ପିତୃ ପରିତୋଷଣେ କାର୍ଯ୍ୟ ତୁଳା ମକର ମେଷ ବ୍ରହ୍ମଚର୍ଯ୍ୟ । ସମନଶା ହରିବାସରେ ଯଥାବିଧି ଧୈର୍ଯ୍ୟ । ସତ୍ୟ ହରଣ ।

ତିଳପାତ୍ର । ତିଳକାଞ୍ଚନ । ଦଧିଶଙ୍ଖ । କନକ ଗାବ । ସହସ୍ର କନ୍ୟାରତ୍ନ ଯୁକ୍ତ ପରିଣାହ । ପଲଙ୍କ । ପାଦାସନ । କ୍ଷେତ୍ର, ପୁର, ଶାସନ, ନଗର, ପାଟଣା, ଗିରି, ନଗ୍ର, ବନ, ଘୃତକୁମ୍ଭ । ଗୁପ୍ତହିରଣ୍ୟ । ରଜତରାଶି । ଶାଳଗ୍ରାମ । ସୁବର୍ଣ୍ଣ । ଗୋ ଦୋହନ । କୃଷ୍ଣାଜନ । ଗୋଷ୍ଠାଦି କରି ସମସ୍ତ ଦାନମାନନ୍ତ ଦକ୍ଷିଣା ସହିତେ ଦେଲି । ଏତେ ପୁତ୍ର କାମାର୍ଥ ଯାଗ କରୁଅଛି ତନୟ ନିମିତ୍ତେ । ସେ ଯାଗ ଅବଶ୍ୟ ସମ୍ପୂର୍ଣ୍ଣ ପ୍ରାପତ ହୋଇବା ନିମିତ୍ତ ପୂର୍ଣ୍ଣାହୁତି ଦେବ ଆଜ । ମତେ ଭଜିବା ବେଳୁଁ କରି ତାହାର ସିଦ୍ଧହୋଇଲି ସକଳ କାର୍ଯ୍ୟ । ତୋହର ପରିଏ ଜଣେ ଯତ୍ନୁଁ ପାଇ ନ ଥିଲୁ । ତେଣୁ କରି ଆଜ ଯାଏ ତାହାକୁ ପଠିଆଇଲୁ । ତାହାର ପୁତ୍ର ହୋଇକରି ତୁ ଅଖିଳ ବସୁନ୍ଧରା କରିବୁ ଭୋଗ । ତୋହର ପିତା ପଣକୁ ସେହି ସେ ଭାଜନ । ସେ ରାଜା, ଧୀରଧୈର୍ଯ୍ୟ, ଧାର୍ମିକ, ଆଚାର ବ୍ୟବହାରେ ମାର୍ମିକ । ନିତ୍ୟାନିତ୍ୟ ଜ୍ଞାତା । ସୁରସୁନ୍ଦର ମର୍ଯ୍ୟାଦା ମହାତ୍ତ ଗୁଣେ ଗମ୍ଭୀର । ସତ୍ୟପରାକ୍ରମେ ଧୀର । କ୍ଷମାଶାନ୍ତ କରଣ । ଅହଂ ର ଅକ୍ରୋଧୀ ତରୁଣ । ଦାତା ଶକତା ବକତା । ଶାସକ ନାଶକ-କରତା । କଲ୍ୟାଣ ଗ୍ରାମିକ ସତ୍ୟ । ବଶିଷ୍ଟ ବୈଷ୍ଣବ ନିତ୍ୟ । ସୁବୁଦ୍ଧି ଚରିତ୍ର ସୂକ୍ଷ୍ମ । ବେଦବେଦାଙ୍ଗ ତତ୍ତ୍ୱଜ୍ଞ । ଯମ ନିୟମ ବ୍ରତ । ଆସନ ପ୍ରାଣାୟାମ ନିୟୁତ । ପବିତ୍ର ନିର୍ମଳବୁଦ୍ଧି । ଚେତନା ଆତ୍ମାଦି ଶୁଦ୍ଧି । ହାଟବକ ରଶ୍ମି ପ୍ରଚଣ୍ଡ । ଦୋଷ ଅନୁରୂପେ ଦଣ୍ଡ । ରସିକବର କ୍ଷତ୍ରିୟ ଧର୍ମ । ସକଳ ଜଗତରେ ଦୁସ୍ତର କର୍ମ । ନିରନ୍ତରେ ମୋତେକରି ଥାଇ ବଜ୍ର ସେହ୍ଲା । ବିଷମଶୀଳ ମେଦ୍ଦିମାମଣ୍ଡଳେ ଶୁଣି ଧର୍ମଧ୍ୱଜ ବାନା (୧) ।

ଇତ୍ୟାଦି କରି ସକଳ ଧର୍ମ କର୍ମ କହିଲୁ ଯେମନ୍ତ । ସେ ରାଜାହାଦେ ଅଟଇ ଏମନ୍ତ । ହେ ଅଭିନବ ଚୈତନ୍ୟ ତୁ ଏଠାରୁସା ଦଣ୍ଡେ ହେ ନ ରହ । ସେ ରାଜା ପାଟମହିଷୀ ଶଶିପ୍ରଭା ନାମ ରାଣୀ ଗର୍ଭରେ ଯାଇ ରହ । କିଛି ହିନ ଦୁଃଖସହ । ସେ ମାୟା କନ୍ୟାକୁହିଁ ଆଜ୍ଞାହୋଇଲ । ସେଧର୍ମ ଧ୍ୱଜ ରାଜାର ଦୁହିତା ହୋଇବାକୁ ଗଲି । ତଦନନ୍ତରେ (୨) ସେ ପୁରୁଷ ଉତ୍ତମ ଆଜ୍ଞାପାଇ । ପାର୍ବତୀଙ୍କି ନମସ୍କାର ହୋଇ ପଦ୍ମଆସନେ ବସିଲି । ଚତୁଷଷ୍ଟୀ ପ୍ରକାର ଯୋଗର ମଧ୍ୟେ ତାରକ ଧାତୁ ନାମ ଯୋଗ କଲ୍ପିଲି ।

---

୧—ଶ୍ରୀରଗଣ ଗଣନା 'କ'

୨—ତଦ ଅନ୍ତରେ 'ଖ'

ତହିଁ ଇଅଁଳା, ପିଙ୍ଗଳା, ଶୁଷୁମ୍ନା, ଅଳମ୍ଭୂଷା, କୌଷଣୀ, ଗାନ୍ଧାରୀ, ହସ୍ତୀଜହ୍ଵା, ଶଙ୍ଖିନୀ ସହିତ ନବ ନାଡ଼ୀରେ । ନାଗ, କୂର୍ମ, କୃକଳକ, ଦେବଦତ୍ତ, ଧନଞ୍ଜୟ, ଅପାନ, ବ୍ୟାନ, ସମାନ, ଉଦାନ, ଏନବ ନାଡ଼ୀରେ ସ୍ଥିତ କଲ । କୁଣ୍ଡଳମା ନାମ ଶକ୍ତିକି ଓଁକାର କଣ୍ଠେ ହୃଦୟ ପଦ୍ମେ ସ୍ଥିତକଲା । ପ୍ରାଣ ପବନ ସମକର ଭିତରେ ଭରଲା । ତ୍ରିକୋଣାଗ୍ନି ମଣ୍ଡଳରୁ ଦୀପ ଶିଖା ପ୍ରାପ୍ୟେକ ହୋଇ ପୂରଲା । ସେ ସ୍ଥାନର ମଧ୍ୟେ ଏକଶିଖାଏକ ଉଠିଲା । ସେ ଶିଖା ଆସି କୁଣ୍ଡଳମାନାମ ନାଡ଼ୀକି ଛୁଇଁଲା । ଛୁଇଁବା ମାତ୍ରକେ କୁମ୍ଭାର ଯେମନ୍ତ ଚକ୍ରେ ମୃତ୍ତିକା ବସାଇ । ସେ ଯାହା କଲୁଇ ତେମନ୍ତ ହୋଇ । ସେହିମନ୍ତ ହୋଇ ସେହିଶକ୍ତି ନାଭି ପଦ୍ମେ ବୁଲଇଁ । ଦକ୍ଷିଣା ବର୍ତ୍ତିକ ହୋଇ ସେହି ଶକ୍ତି ବୁଲନ୍ତେ, ତହୁଁ ଅନଳଶିଖା ଭ୍ରମର କୁହର, ଗୋଲ୍ହାଟ, ତ୍ରିବେଣୀ ଭୂମି, ଶଙ୍ଖିନୀ ଫୁଟି ପୂର୍ଣ୍ଣଚନ୍ଦ୍ର ବମ୍ବରେ ଲଗିଲ । ତାହା ଘୃତ ଭାଣ୍ଡରେ ଅଗ୍ନିଲାଗି ଯେମନ୍ତ ତରଳ ହୋଇ, ସେହିମନ୍ତ ହୋଇ ସେ ଚନ୍ଦ୍ରମଣ୍ଡଳ ଶରୀର ଯାକେ, ବ୍ୟାପିଲା । ଶକ୍ତି ବୁଲନ୍ତେ ପବନର ବଳେ ଦେହ କରଚରଣ ନାସିକାଦି ସହିତ ଉଦେ ହୋଇ, ଦେହ ପିଣ୍ଡାକାର ପରସର ପ୍ରାପ୍ୟେକ ହୋଇ, ଧାତୁ ପିଣ୍ଡେକ ହୋଇଲ । ଏବମ୍ଭୂତ ଯୋଗକୁ ତାରକ ଧାତୁ ଯୋଗ ବୋଲି ସେ ଧାତୁ ପିଣ୍ଡରେ ଥାଆନ୍ତି । ଯେ ସକଳ ଇନ୍ଦ୍ରିୟମାନନ୍ତ ଜୀବ ପ୍ରାଣ ସହିତ କର ଧେନନ୍ତି । ଯେ ସେ ମନ ପବନ, ଧାତୁ ପିଣ୍ଡକୁ ଯେନ ବନ୍ଧିଲି । ଯେମନ୍ତ ପବନର ସଂଗତେ ଗନ୍ଧଥାଇ । ସେହିମନ୍ତ ଧାତୁ ପିଣ୍ଡର ମଧ୍ୟେ ସମସ୍ତେ ହେଁ ଥାନ୍ତି ।

ଏବମ୍ଭୂତ ପ୍ରକାରେ ସେ ଶଶିପ୍ରଭା ନାମ ରାଣୀର ଗର୍ଭରେ ପୁରୁଷ ସଙ୍ଗ କର ଅମୋଘଧାତୁ ପଶିଲ ଯାଇ । ରତ୍ନ ପଲଙ୍କେ ମନ୍ମଥ ରାଜାର କଳହଂସୀ ବନ୍ଧହେଲ ପ୍ରାପ୍ୟେକ ହୋଇ । ସେ ରାଜା ଭୁଜପଞ୍ଜରେ ରାଣୀ ଥିଲଶୋଇ । ସେହିକ୍ଷଣି ଚମକି ଉଠିଲା ଅତ୍ୟନ୍ତ ଭୟ ପାଇ । ସେ ରାଣୀ ଚହକନ୍ତେ ରାଜା ହୋଇଲ ଦୁଃଖୀ । କର ପଲ୍ଲବେ ଆଶ୍ୱାସୀ ପଚ୍ଛରିଲ କି ଭୟ ପାଇଲୁ ଗୋ ଶରଦ ଚନ୍ଦ୍ରମୁଖି । ରାଣୀ ବୋଇଲେ ମୁଁ ଦେଖିଲି ସ୍ୱପ୍ନ । କେଶବାସ ମୋହର ହୋଇଛୁ ଯନ୍ନ । ବାତ ପିତ୍ତ ଶ୍ଳେଷ୍ମାଙ୍କର ଭୟ ପ୍ରବଳହିଁ ନାହିଁ । ଚନ୍ତା ଛନ୍ନ ଭ୍ରମ (୧) ମୋର ଭୁମ୍ଭ ପ୍ରସାଦେ (୨) ଅଛ

---

୧—ଭ୍ରମ ଦାହ ଚନ୍ତା 'ଛ'
୨—ନାହିଁ କରେ ।

କାହିଁ । ରାଜା ବୋଇଲେ ହେଗୋ ଶରଦ ଚନ୍ଦ୍ରମୁଖି । ରାତ୍ର ପାହିବାକୁ ଆଉ ଘଡ଼ିଏକ ଅଛି । ରାତ୍ର ପାହିଲେ ଏହା ବସ୍ତୁରିବା ଗୋ ମୃଗାକ୍ଷି । ସେ ରାଜା ରାଣୀ ଶୁଚିମନ୍ତ ହୋଇ ଆସନ ସୁପ୍ରତିଷ୍ଠରେ ବସିଲେ । କୃଷ୍ଣଚରିତ କଥାରେ ଅବଶେଷ ରାତ୍ର ବଞ୍ଚିଲେ (୧) ।

ଏଥି ଉତ୍ତାରେ ରଜନୀ ପ୍ରଭାତ ହୋଇଲା । ପ୍ରାଚୀ ବରାଙ୍ଗନା ରାଗବନ୍ତି (୨) ହୋଇଲା । ମୁକୁତା ହାର କାକର ଲଗିଲା । ଘପାବଳୀ ମାନେ ପାଣ୍ଡୁର ହୋଇଲେ । କୁହର ଗହ୍ୱର ମାନଙ୍କରେ ଅନ୍ଧକାର ପଶିଲା । ନିଜ ଦୁହିତାଙ୍କୁ ଉଠ ଉଠ ବୋଲି ବୋଇଲେ । ତାମ୍ବୁଳରସ ପିଚା ଲଗିଲା । ନାୟିକା ସ୍ତିରି ସ୍ତନ ମଣ୍ଡଳ ଉତ୍ପ୍ତମ (୩) ଭାଙ୍ଗିଲା । ଗଗନରୁ ତାରା ଖସିଲା । ବହୁତ ଯୋଗୀ ଶରୀର ସାଧନେ ଲଗିଲେ । ଉଦୟ ଆହାରୀ ଯୋଗିମାନେ ପବନ ଅଭ୍ୟାସ ମଧ୍ୟ କରି ନଗ୍ରେ ଅନ୍ନ ଦେ ବୋଲି ଭିକ୍ଷା ମାଗିଲେ । ପ୍ରାଣାୟାମ ଅଭ୍ୟାସି ସନ୍ୟାସୀ ପ୍ରାଣାୟାମ ସାଧନେ ଲଗିଲେ । କୈରବନ୍ତ ରମଣ କରନ୍ତା (୪) ଭ୍ରମରମାନେ ପଦ୍ମ ବନକୁ ଗମିଲେ । କୁମୁଦ ପରାଗେ ଧୂସର ହୁଅନ୍ତା ଭ୍ରମରନ୍ତ ଦେଖି ପ୍ରାତ (୫) ବାତେ କମ୍ପନ୍ତା ପଦ୍ମମାନେ ସଲ୍ଲଜେ ନାହିଁ ନାହିଁ ପ୍ରାୟେକ ହୋଇଲେ । ଉଲୁକ ପକ୍ଷି ଏ ଅନ୍ଧକାର ସ୍ଥାନାନ୍ତରେ ପଶିଲେ । ଶଙ୍ଖଧ୍ୱନି ମାନେ ଚତୁର୍ଦ୍ଦିଗେ ପୂରିଲେ । କାମୁକୀ ସ୍ତ୍ରୀମାନେ ଭର୍ତ୍ତାଙ୍କୁ ନଗାଢ଼ ଆଲିଙ୍ଗନେ ଗୁଡ଼ିଲେ । ଚୌର୍ଯ୍ୟେ ବିଷାଦ ପାଇଲେ (୬) । ଦଣ୍ଡପାଣିଏ ଶୋଇଲେ । ଚନ୍ଦ୍ରମା ଧୂସର ହୋଇଲେ । ରତ୍ତ ଶାର୍ଦ୍ଦୂଳ କନ୍ଦରେ ଉତ୍କର୍ଷ ଶୃଙ୍ଗାର ଭୋଗକଲା ସ୍ତିରି ବଦନ ପ୍ରାୟେକ ଯୋଡ଼ିଲେ । କୁକ୍କୁଟ ରଡ଼ିଲେ । ଗୋପାଳେ ଗୋଷ୍ଠକୁ ଗମିଲେ । ଶିଶୁ ପୋଏ ପାଠ ପଠନକୁ ଚଟଶାଳୀକୁ ଗମିଲେ । ଅଭିସାରିକା ସ୍ତ୍ରୀ ମାନେ ନିଜ ମନ୍ଦିରେ ମିଳିଲେ । ଧାରଣାବନ୍ଧ ଯୋଗୀ ସର୍ଯ୍ୟ ଧାରଣା ଗୁଡ଼ି ଚନ୍ଦ୍ରଧାରଣାରେ ଲଗିଲେ । ଅନ୍ଧକାର ସ୍ଥାନକୁ ପିଶାଚମାନେ ଗମିଲେ । ପର୍ବତ ମସ୍ତକମାନେ ପ୍ରସର ହୋଇଲେ ।

---

୧—କୃଷ୍ଣ ଚରିତେ ଉଜାଗର ହୋଇଲେ 'କ'

୨—ଅନୁରାଗବନ୍ତୀ 'ଖ'

୩—ନାୟକ ନାୟିକାର ସ୍ତନ ଉଷ୍ଣ ଭାଙ୍ଗିଲା 'ଗ'

୪ – କରନ୍ତା 'କ'

୫—ଶୀତ 'ଖ'

୬—ହୋଇଲେ 'କ'

ମେରୁ ଶିଖରେ ଦେବତାମାନେ ଆସ୍ଥାନେ ବସିଲେ । ଅପସରା ମାନଙ୍କର ସ୍ତନ କମଳ ମୃଗମଦ ପତ୍ରାବଳୀରେ ଅଙ୍କିତ ହୋଇଲା । ହୃଦୟକୁ ଗୃହିଁ ଗନ୍ଧର୍ବମାନେ ଲଜ୍ଜାପାଇ ଆକାଶ ଗଙ୍ଗାପାଣି ଘେନି ଧୋଇଲେ । ଗୋପାଳେ ଗୋଗଷ୍ଠକୁ ଚଳିଲେ । ସାଧମାନେ ଆଖଡ଼ାରେ ମିଳିଲେ । ଅବଧୀ କୃତ ପାନ୍ଥ କାନ୍ତାମାନେ ଦିନଗଣି କାନ୍ଥରେ ଗାରମାନ କାଟିଲେ ।

ଏମନ୍ତ ପ୍ରକାରେ ରଜନୀ ପ୍ରଭାତ ହୋଇବାରୁ ରାଣୀ ଉଠି, ଶୁଚିବନ୍ତ ହୋଇ, ସୂର୍ଯ୍ୟଙ୍କୁ ଅର୍ଘ୍ୟଦେଇ, ରାଜା ସଙ୍ଗତେ ଥାଇ, ପଣ୍ଡିତ ମାନଙ୍କୁ ରାଇ, ବୃଦ୍ଧମାନଙ୍କୁ ବସାଇ, ଅନ୍ତର ବାଡ଼ ଉହାଡ଼ ଦେଇ, ସ୍ୱପ୍ନର କଥା କହୁଛନ୍ତି । ସେ ପଣ୍ଡିତ ମାନେ କେମନ୍ତ ଅଟନ୍ତି । ସେ ସମସ୍ତେ ହେଁ ଷୋଡ଼ଶ ବୃଦ୍ଧ ଅଟନ୍ତି । କେବଣ କେବଣ ବୃଦ୍ଧ, ଜ୍ଞାନ ବୃଦ୍ଧ । ବୟବୃଦ୍ଧ । ଆଚାର ବୃଦ୍ଧ । ଧ୍ୟାନ ବୃଦ୍ଧ । ବିଦ୍ୟା ବୃଦ୍ଧ । ଶାନ୍ତ ବୃଦ୍ଧ । ଶ୍ରୀ ବୃଦ୍ଧ । ବିନୟ ବୃଦ୍ଧ । ତ୍ୟାଗବୃଦ୍ଧ । ମିତ୍ର ବୃଦ୍ଧ । କଲ୍ୟାଣ ବୃଦ୍ଧ । ସତ୍ୟବୃଦ୍ଧ । ତପ ବୃଦ୍ଧ । ଲଘୁ ବୃଦ୍ଧ । ଧ୍ୟାନ ବୃଦ୍ଧ । ବିଚାର ବୃଦ୍ଧ ଇତ୍ୟାଦି କରି ଷୋଡ଼ଶ ବୃଦ୍ଧେ ଯୁକ୍ତ । ସଂଯମ ଭୁକ୍ତ(୧) । ଜୀବନ ମୁକ୍ତ । ବଚନ ଯୁକ୍ତ । ସ୍ୱକର୍ମ ଭୁକ୍ତ । ବିଷୟ ତ୍ୟକ୍ତ । ପ୍ରତିଗ୍ରହତ୍ୟକ୍ତ । ଶାସ୍ତ୍ରଭକ୍ତ । ଧର୍ମାଶକ୍ତ । ବାସୁଦେବ ଭକ୍ତ । ଅମୋହେଲିପ୍ତ । ସଭାଦୀକ୍ଷିତ । ମନ୍ତ୍ରକ ଦୀକ୍ଷିତ । ଜ୍ଞାନେ ବ୍ୟାପୃତ(୨) ସର୍ବଶାସ୍ତ୍ର ଦର୍ଶୀ । ସର୍ବଦାହର୍ଷୀ । ଶିବ ବିଷ୍ଣୁ(୩) ଦର୍ଶୀ । ପରମହଂସରସୀ । ବିଚାର କର୍ଷୀ । ସାତ୍ତ୍ୱିକ ସରସୀ । ସୁଧାବାକ୍ୟ ବରଷି । ସେ ପଣ୍ଡିତମାନେ ଦେବତା ମାନଙ୍କର ପ୍ରାପ୍ୟେକ ଦିଶୁଥାନ୍ତି । ପୁନରପି ସେ ପଣ୍ଡିତମାନେ କେମନ୍ତ ଅଟନ୍ତି । ଆକୃତି ଶୁଦ୍ଧି । ବଚନ ବୁଦ୍ଧି । ପୀତବସ୍ତ୍ର ପିନ୍ଧି । ତ୍ରିଶାଖା ଭସ୍ମ ଧୂଳି କପୋଳେ କାଟନ୍ତେ କେମନ୍ତ ପ୍ରାପ୍ୟେକ ମଣି । ତ୍ରିଗୁଣ ଜ୍ଞାନାଗ୍ନିରେ ପୋଡ଼ି ଭସ୍ମକଲୁ ବୋଲି ସେ କପୋଳେ ଉଦେକରି ସେ କହୁଅଛନ୍ତି କି । ସେ ପଣ୍ଡିତମାନଙ୍କ ହସ୍ତରେ କୁଶ ମୁଦ୍ରିକାମାନେ କେମନ୍ତ ଶୋଭା ପାଉଛନ୍ତି ଟିକି । ନସ ହସ୍ତକୁ ବିଷୟ ଗ୍ରହଣ ନବର୍ତ୍ତିବା ଅର୍ଥେ ବନ୍ଧନ କରି ଅଛନ୍ତି କି । ସେ ନବଗୁଣ ପଇତାମାନେ (୪) କେମନ୍ତ

୧—ଜୀବଧୂକ୍ତ 'ଖ'
୨—ବ୍ୟାସକ୍ତ 'କ'
୩—ମନ୍ମଥ 'ଇ'
୪—ପଦ୍ମଜ 'କ'

ଶୋଭା ପାଉଅଛନ୍ତି କି ନବିଧା ପ୍ରକାରେ । ଅବିଦ୍ୟା । ସୁରତି । ସୁଷୁପ୍ତି । ଅନ୍ତ ପର୍ଯ୍ୟନ୍ତେ ଗୁଣମୟୀ, ଅବିଦ୍ୟା ଶୀର୍ଣ୍ଣ (୧) ହୋଇ, କଷ୍ଟ କଷ୍ଟରେ ଦାସ ପ୍ରାପ୍ତେ ହୋଇ, ସେ ଲଗି ଅଛନ୍ତି କି ? ସେ ପଣ୍ଡିତମାନେ ଅବିଦ୍ୟା ବଳକୁ ବର୍ଣ୍ଣ ଭେଦେ ସେ ରଖି ଅଛନ୍ତି କି । ପଣ୍ଡିତମାନେ ପୁଣି କେମନ୍ତ ଅଟନ୍ତି । ହସ୍ତମାନଙ୍କରେ ଶୁଦ୍ଧ ସ୍ଫଟିକର ଜପାମାଳମାନେ ଚଳନ୍ତେ (୨) କେମନ୍ତ ପ୍ରାପ୍ତେକ ମଣି—ମନୋନ୍ମନୀ ହୋଇ ଜନ୍ମମରଣ ସଂସାରକୁ ସ୍ମରଣା କରି ଭ୍ରମାଉ ଅଛନ୍ତି କି ?

ଏମନ୍ତ ଭାବ ଦର୍ଶାଉ ଅଛନ୍ତି କି ? ଆତୁରି ହିଁ ପ୍ରଭାବ । ଏତେ ଜନ୍ମ ଆମ୍ଭେ ସର୍ବ ପରିତ୍ୟାଗ କରି ତପ ଆଶ୍ରେ କଲେ ହେଁ ପୁନଃ ପୁନଃ କରି ଅବିଦ୍ୟାବଳେ ଜନ୍ମ ମରଣ ହଉଅଛି । ଏମନ୍ତ ଭାଗ୍ୟେ ସେ ଜନ୍ମମରଣ ଗଣନା କରୁଅଛନ୍ତି କି ? ସେ ଜାତି ସ୍ଫୁରି ଭାବୁଁ କରି ଅମଳ ରୁଦ୍ରାକ୍ଷ ତୁଳସୀ ପୁଷ୍କର ଶୁଦ୍ଧ ସ୍ଫଟିକ ପ୍ରବାଳାଦି କରି ମାଳା ମାଳେ ବକ୍ଷସ୍ଥଳ ପର୍ଯ୍ୟନ୍ତେ ଲମ୍ବନ୍ତେ କେମନ୍ତ ଶୋଭା ପାଉଅଛନ୍ତି କି ? ସ୍ତମ୍ଭନ । ମୋହନ । ବଶ୍ୟ । ଉଚ୍ଚାଟନ ଉଲୁକ । ଗୋଟିକା । ଅଞ୍ଜନ । ପାଦୁକା । ଲେପନ । ରସାୟନ । ଇନ୍ଦ୍ରଜାଲ ନବ ନାଟକ । ଜାଳାନ୍ଧ ମତ । ମନ୍ମଥ । ଖଡ୍ଗ ପାତ୍ର । ନବାଦ୍ଧ୍ୟ । ପର ପୁର ପ୍ରବେଶ । ସର୍ବଜ୍ଞ ଯୋଗ୍ନୀ ସାଧନ । ସର୍ବା-କର୍ଷଣ । ଡାକନ୍ୟାଦି କରି ଷଡ଼ଶକ୍ତି (୩) ସାଧନ । ମଣିମନ୍ତ୍ରୌଷଧି । ସଞ୍ଜ କରଣ । ସଙ୍ଗୀତ ସାହିତ୍ୟ । କଳ୍କ ଲେପ ରସାୟନାଦି କରି, ସମସ୍ତ ବିଦ୍ୟାମାନନ୍ତ ମାଳ ମାଳ କରି ଗୁନ୍ଥି ହୃଦୟରେ ଲମ୍ବାଇଲ୍ ପ୍ରାପ୍ତେକ କରି ଶୋଭା ପାଉଅଛନ୍ତି କି ? ସେ ପଣ୍ଡିତମାନେ ସମସ୍ତେ ହେଁ ଜତେନ୍ଦ୍ରିୟ, ଯଥାଭକ୍ତ । ସୁ ସୁହୃଦ । ଶୁଦ୍ଧାନ୍ତଃକରଣ । ଧ୍ୟାନପରାୟଣ । ସତ୍ୟବାକ୍ । ମଧୁର ଭାଷୀ । ସର୍ବାନନ୍ଦ । ଶମ ଦମାଦି (୪) ଗୁଣେ ନିରତ । ସମସ୍ତ ସମସ୍ୟା ସାଧନେ ସମର୍ଥ । ମଧୁର (୫) ଭାଷୀ । ସର୍ବଦା ଧୈର୍ଯ୍ୟ ।

---

୧—କ୍ଷୀଣ 'କ'
୨—ପ୍ରଚଳ ହୁଅନ୍ତେ 'କ'
୩—ବଳ 'ଖ'
୪—ସମନସ୍ତମାଦି 'କ'
୫—ଶୀତଳ 'ଖ'

ସଦା ସଦୟ । ଶୁଭ୍ର ସ୍ୱରୂପ । ସମସ୍ତ ଶାସ୍ତ୍ରମାନଙ୍କର ପାରକୁ ଯାଇଅଛନ୍ତି । ତପକର୍ମ । ତପ ଅଭ୍ୟାସ । ବୈରାଗ୍ୟ ସମ୍ପନ୍ନ । ତତ୍ତ୍ୱପଦାର୍ଥ ତାତ୍ପର୍ଯ୍ୟ ତତ୍ତ୍ୱଜ୍ଞାନ ନିର୍ଣ୍ଣୟ କର ସମସ୍ତ ଜ୍ଞାତା ଅଟନ୍ତି । ଏବଂଭୂତ ଯେଉଁ ପଣ୍ଡିତମାନେ ତାହାଙ୍କ ସମ୍ମୁଖରେ । ସେ ଶରଦ ଚନ୍ଦ୍ର ବଦନୀ । ନୀଳୋତ୍ପଳ-ନୟନୀ । ମତ୍ତ ଗଜେନ୍ଦ୍ର ଗାମିନୀ । ତୁଙ୍ଗ ପୀନ ସ୍ତନୀ । ମଧ୍ୟ ସଂକୀର୍ଣ୍ଣୀ । ଲାବଣ୍ୟ ବର୍ଣ୍ଣିନୀ । ମନ୍ମଥ । ନନ୍ଦ ବର୍ଦ୍ଧିନୀ । ସର୍ବ ସୁଲକ୍ଷଣୀ । ନିତମ୍ବିନୀ । ସୁରାସୁର ମୋହିନୀ । ପୀତ କୌଶେୟ ବାସିନୀ । କ୍ରୀଡ଼ାରସ ଜନନୀ । କାମାଗ୍ନି ସନ୍ଦୀପନୀ । ଖେଦାର୍ଣ୍ଣବ ତରଣି । ଈଷଦ୍ଧାସିନୀ । ସର୍ବମନୋହାରିଣୀ । ସୁବାସ ଲପନୀ । କୋକିଳ ବଚନୀ । କଳହଂସ ଗାମିନୀ । ପାଠ ମନ୍ତ୍ରୀ ଶଶି ପ୍ରଭାନାମେ ରାଣୀ ଅନ୍ତଃ ପାଟର ଉହାଡ଼େ ଥାଇ ନବରତ୍ନେ ନିର୍ମାଣ ସୂର୍ଯ୍ୟର ପ୍ରାୟେକ ସିଂହାସନ ମଧ୍ୟରେ ଥାଇ ସ୍ୱପ୍ନର କଥା କହୁଅଛନ୍ତି ।

ବେଦ ତତ୍ତ୍ୱ ସେବିତ ପଣ୍ଡିତମାନେ ତୁମ୍ଭଙ୍କୁ କରୁଅଛୁ ନମସ୍କାର । ସାବଧାନ ହୋଇ ଶୁଣିମା ମୋହର ସ୍ୱପ୍ନର ବେଭାର । ଅରୁଣ ଉଦୟକାଳେ । ମନ୍ଦ ମନ୍ଦ ନିଦ୍ରାର ସୁଖ ବେଳେ । ସହଜା ଜ୍ଞାନରେ ମୁହିଁ ଦେଖିଲି ସ୍ୱପ୍ନ । କେଶ ବାସ ମୋହର ହୋଇଲା ଯତ୍ନ । ବାତ ପିତ୍ତ ଶ୍ଳେଷ୍ମାଙ୍କର ପ୍ରବଳ ନାହିଁ । ଭ୍ରମ, ତନ୍ଦ୍ରା, ଛନ୍ନ ଭ୍ରମ ଅବା ମୋହର ଥିବ କାହିଁ । ଏମନ୍ତ ସମୟରେ ଅଦ୍ଭୁତ ହୋଇ ତେଜୋମୟ (୧) ପୁରୁଷେକ ଆସି ମୋହର ଗର୍ଭେ ପଶିଲା (୨) । ସେ ପୁରୁଷ କେମନ୍ତ ଅଟଇ । ଈଶ୍ୱର ବର୍ଣ୍ଣ (୩) ଶୁଦ୍ଧ ସ୍ଫଟିକର ପ୍ରାୟେ କାନ୍ତି । ରକ୍ତ କୁମୁଦ ପ୍ରାୟେକ ଦୁଇ ନୟନର ଭ୍ରାନ୍ତି । ଭ୍ରୂଲତା ଭ୍ରମର ପଂକ୍ତି (୪) ପ୍ରାୟେକ କୁଟିଳ । କାଳନ୍ଦୀର ତରଙ୍ଗ ପ୍ରାୟେକ ଜଟିଳ । ସମ୍ପୂର୍ଣ୍ଣ ଚନ୍ଦ୍ର ପ୍ରାୟେକ ବଦନ (୫) ମଣ୍ଡଳ । ଗୁରୁ ଶୁକ୍ର ପ୍ରାୟେକ ବିରାଜଇ କର୍ଣ୍ଣେ ବେନି କୁଣ୍ଡଳ । ଭ୍ରଳମ୍ବ ମାଳ କୁଟିଳ (୬) ଜଟା ସମୂହ ହୋଇଅଛୁ ମୁକୁଳ । ଫଣା ମଣି ସଦୃଶ ତେଜ (୭)

୧—ଯୋଗମୟ 'କ'
୨—ଇହିଲା 'କ'
୩—ଶଙ୍ଖର 'କ'
୪—ଶ୍ରେଣୀର 'କ
୫—ଶୋଭିତ ଶ୍ରୀମୁଖ ମଣ୍ଡଳ 'କ'
୬—ଭ୍ରଳମ୍ବମାଳ ସ୍ଫଟିକ ପ୍ରାୟେ ଜଟା ସମୂହ ହୋଇଅଛୁ ସରଳ ।
୭—ଦୁଇଅନ୍ତେ 'ଖ'

ଏକ ମହା ସର୍ପେକ ଧରଅଛ୍ଛି (୧) ଚହ୍ନେଁ । ଅତ୍ୟନ୍ତ ଶୁକଳ । ସର୍ବାଙ୍ଗେ ଭସ୍ମ ବିଭୂଷଣ । ଧୂମ ମେଘୁଁ ଫୁଟି ବଶିଲ ସୂର୍ଯ୍ୟ·ଜ୍ୟୋତ୍ସ୍ନକୁ ହ୍ନିଁ କରୁ-ଅଛ୍ଛି ଦୂଷଣ । ପୁଣ୍ଡରୀକ ଚର୍ମ ପରଧାନ କରଅଛ୍ଛି କଟିତଟେ । ସିଂହସ୍କନ୍ଧ ମଣ୍ଡଳ (୨) କରଅଛ୍ଛି ଯୋଗପଟେ । ବୃହତ୍ ସ୍କନ୍ଧ, ମହାବାହୁ, ବିଶାଳାକ୍ଷ । ଘର୍ଘ କର୍ଣ୍ଣ (୩) ସମ ନାସିକା ଅଗ୍ରକୁ ଘର୍ଘ (୪) । ସଞ୍ଚ ଗମ୍ଭୀର (୫) ସପ୍ତରିକ୍ତ୍ୟାଦିକର ସମସ୍ତ ଲକ୍ଷଣେ ସମ୍ପୂର୍ଣ୍ଣ । ତାହାର ନେତ୍ର ପଦ୍ମ ଦୁଇଗୋଟି ହୋଇଅଛ୍ଛି ଜ୍ଞାନାନଳେ ପୂର୍ଣ୍ଣ (୬) । ଏବଂଭୂତ ପ୍ରକାରେ ସେ ମହାବାହୁ ମହାତ୍ମା ମୋହର ଉଦରେ ପଶନ୍ତେ ଅଦଭୁତ ହୋଇ ଚମକ ଉଠିଲି ଅତ୍ୟନ୍ତ ଖିଚେ । ଏବଂଭୂତ ପ୍ରକାରେ ଶଶି ପ୍ରଭା ନାମ ରାଣୀ ସ୍ୱପ୍ନ କଥା କହି ତୁନ ହୋଇଲା । ଜସେ ମନମଥ ରାଜାର ପରିବାଦମାରୁ ଗୁଣ ଭୁଟିଲି ପ୍ରାପ୍ତେକ ହୋଇ ସ୍ଥିର ହୋଇଲା । ସେ ପଣ୍ଡିତମାନେ ରାଣୀର ବଚନାଚନ୍ଦ୍ରୁ (୭) ଝରିଲ ସ୍ୱପ୍ନ କଥା ଅମୃତ ଧାରା ପ୍ରାପ୍ତେକ କର ଶ୍ରବଣ ପଥେ ପାନ । କର ସେ ବିଦ୍ୟାଶକ୍ତି ସମ୍ପନ୍ନ (୮) ଶାସ୍ତ୍ର ବିଶାରଦ ପଣ୍ଡିତମାନେ ଆଗତ ଭବିଷ୍ୟ ପୁରାଣ ସ୍ୱପ୍ନାଧ୍ୟାୟ ଶକୁନ ଜଉତିଷ ସିଦ୍ଧାନ୍ତ ପାକ୍ଷା ଗ୍ରହଣ କରି (୯) ସମସ୍ତ ଶାସ୍ତ୍ରମାନ ଦେଖି କହିଲେ, ହେ ରାଜନ ! ତୋହର ଧନ୍ୟ ଧନ୍ୟ । ପୂର୍ବର ତପସ୍ୟାବଳ କେ କରିବ ଆନ । ତୋହର ପୁଣ୍ୟବଳେ ଦୁସହ କର୍ମମାନ ତ କଲୁ (୧୦) । ବୁଦ୍ଧି କ୍ଷେତ୍ରେ କର୍ମ (୧୧) ଭୂମିରେ ଧର୍ମ ତରୁ ଏକ ରୋପିଲୁ । ସେ ବୃକ୍ଷର ମୂଳ ବିଷ୍ଣୁ

---

୧—ଧରୁଅଛ୍ଛି । ଆଉନାହିଁ 'ଖ'
୨—ଢଣ୍ଡମନ 'ଖ'
୩—ତନୁ 'ଖ'
୪—ପଞ୍ଚ ଗମ୍ଭୀର
୫—'ଖ' ରେ ନାହିଁ
୬—ପୂର୍ଣ୍ଣ 'ଖ'
୭—ରତ୍ନ
୮—'ଖ' ରେ ନାହିଁ
୯—ପାକ୍ଷା ଗ୍ରହଣ କର 'ଖ' ରେ ନାହିଁ
୧୦—ତୁ ଯେ ମହତ କର୍ମ କଲୁ 'ଖ'
୧୧—କର୍ମ 'ଖ' ରେ ନାହିଁ

ସେବା । ଶିଖର ରୁଦ୍ର ସେବା (୧) । ସ୍କନ୍ଧ ଅନ୍ତଃ କରଣ ଶୁଦ୍ଧି । ଶାଖା ସମ ଭାବ (୨) ବୃଦ୍ଧି । ପଲ୍ଲବ ବିବେକ ବିସ୍ତାର । ପତ୍ର ସଜ୍ଞାଦି ପ୍ରକାର । ବକଳ କ୍ଷମାଦି ଗୁଣ । ରସ ଦୟାର୍ଦ୍ରେ ନିପୁଣ (୩) । ଉଦ୍ଧୋର ସୁଦାସରେ ଭୂଷ୍ଟ (୪) । କୋଠ ଗୃହରେ ଶ୍ରେଷ୍ଠ । ସୁଦାସ ଯେ ତୃପିତ ସୃଷ୍ଟି ବାସୁଦେବ ହୃଦୟ ପଦ୍ମେ ମୁଦ୍ରିତ (୫) । ଏବଂଭୂତ ପ୍ରକାରେ ଧର୍ମ ତରୁର ଫଳ ଆସି ହୋଇଲା ଉଦିତ । ଏ ମହାଦେବୀର ଗର୍ଭେ ରୁଦ୍ରାଂଶେ (୬) ମହାଯୋଗେନ୍ଦ୍ର ପୁରୁଷେକ ଆସି ରହିଲା । ଜଠରେ ନରକ ସହିଲା । ତୋହର ତ ପର ଭକ୍ତି ବର୍ତ୍ତିଲା (୭) । ଧର୍ମଶାସ୍ତ୍ର କହିଲା । ଯଜ୍ଞର ଫଳ ହୋଇଲା (୮) । ଯୋଗ ଭ୍ରଷ୍ଟେ ରହିଲା । ଜ୍ୟୋତିଷ ମତହିଁ ବୋଇଲା । ଏ ରାଣୀର ଗର୍ଭହିଁ ଶୋହିଲା (୯) । ଶୋଭନ ଗୁଣେ ମୋହିଲା । କଳ୍ମଷ ମାନନ୍ତ ଧୋଇଲା । ଅଶୁଭ ସ୍ୱପ୍ନ ନୋହିଲା (୧୦) । ଏମନ୍ତ ବୋଲି ସେ ପଣ୍ଡିତମାନେ ବୋଇଲେ ।

ହେ ଦେବ ! ସେ ସକଳ କଳାରେ ନିପୁଣ । କାମ ଦେବଙ୍କୁ ସମ । ସମସ୍ତ ଶତ୍ରୁମାନଙ୍କୁ ଜିଣିଲେ ହେଁ ନ ପାଇବ ଶ୍ରମ । ଆସମୁଦ୍ରାନ୍ତ ପୃଥିବୀ ପାଳିବାକୁ ହୋଇବ କ୍ଷମ । ସାକ୍ଷାତ ମୂର୍ତ୍ତିବନ୍ତ ହୋଇ ହୋଇବ ଧର୍ମ । ନିରନ୍ତରେ କରିବ ଆନନ୍ଦିତ କର୍ମ । ଯୋଗବଳରେ କରି ଈଶ୍ୱରଙ୍କୁ ସମ । ଏବଂଭୂତ ପୁତ୍ରେକ ତୋହର ହୋଇବ ଜନ୍ମ । ସେ ପଣ୍ଡିତମାନେ ଏମନ୍ତ ବୋଲି ସ୍ୱପ୍ନର କଥା କହି ମହା ପୂଜା ପାଇଲେ । ରାଜାରାଣୀଙ୍କି ପାଦ ଉଦକ (୧୧) ଦେଇ ସେ ପଣ୍ଡିତମାନେ ଯେ ଯାହାର ମନ୍ଦିରକୁ ଗଲେ ।

---

୧—ସିଧ ଦଶନ୍ଦ୍ରେ ଦେବା 'ଖ'
୨—ସମାସ୍ମ 'ଖ'
୩— ଶିକ୍ଷ ଦୟାରେ ନିଗୁଣ 'ଖ'
୪— 'ଖ' ରେ ନାହିଁ ।
୫—ପୁଷ୍ପିହୃଦେ ବାସୁଦେବ ମୁଦ୍ରିତ 'ଖ'
୬—ବ୍ରହ୍ମାଂଶେ 'ଖ'
୭—ତୋହି ଉପରେ ଭକ୍ତି ରହିଲା 'ଖ'
୮—'ଖ' ରେ ନାହିଁ
୯—ସହିଲା
୧୦—ଅତ୍ୟନ୍ତ ଶୁଭ ସ୍ୱପ୍ନତ ହୋଇଲା ।
୧୧—ପାଦରବ 'କ'

ଏଥି ଉତ୍ତରେ ରାଜା (୧) ଏମନ୍ତ ବିଗୃହିଲେ । ଏକଥା ହିଁ ହେଉ, ଆନ ନୋହୁ । ଏଥିର ବିଘ୍ନ ଶାନ୍ତି ନିମିତ୍ତ ଅନେକ ଦାନ ଦେଲେ । ଏମନ୍ତେ ସେ ରାଣୀ ଦିନେଦିନେ ପାଇଲା ଗର୍ଭବାସର ଦୁଃଖ । ପାଣିରୁ ବାହୁଡ଼ି ବେଳେ ଉଦ୍ଧିର (୨) ଆଣିଲା ନଳିନୀ ପ୍ରାୟେକ ଦିଶିଲା ମୁଖ । ତାହାର କାନ୍ତି ହୋଇଲା ବିବର୍ଣ୍ଣ । ହୃଦୟ ହୋଇଲା କ୍ଷୀଣ । ଉଦର ହୋଇଲା ପୂର୍ଣ୍ଣ (୩) । କଳା ପଡ଼ିଲା ପୀନ ସ୍ତନଦ୍ୱୟ । କଦେ ଭୃଙ୍ଗେ ବେଷ୍ଟିତ ଦଳ ବିଦଳିତ ପଦ୍ମ । ତାହାର ମନୋତ୍ପଳ ପତ୍ର (୪) ଅତି ସ୍ନିଗ୍ଧ ଚକ୍ଷୁର କଳା ଅତି ସିଠୁଆ ଦିଶିଲା । ହୁଗୁଳ ପଡ଼ିଲା କଙ୍କଣ ବଳା । ଏକା ଗ୍ରେଚିଆ ହୋଇଲା କଟି ମେଖଳା । ଖୋସି ନ ପାରିଲା ଏ ପୁଷ୍ପମାଳା । ତାହାର ଅଧର ରଙ୍ଗ ତୁଟିଲା । ଯେହ୍ନେ ବନ୍ଧୁଳି ପୁଷ୍ପ ପାଉଁଶେ ଲେଟିଲା (୫) । ତାକୁ ଗର୍ଭବାସ ମତ ବଡ଼ ଜ୍ୱର ଘୋଟିଲା (୬) । ସେ ପାୟେ ଗ୍ଲାନେ ଫୁଟିଲା । ଶୀତଳ ଠାଆକୁ ମନ ଇଚ୍ଛିଲା (୭) । ତାର କଇଁଥ ବେଣ୍ଟ ଲମ୍ବ ଲେଉଟିଲା ।

ଏମନ୍ତେ ସେ ପରମ ଧାତୁ ସ୍ୱରୂପ ରୁଦ୍ରଗଣ ଗର୍ଭର ଭିତରେ ଭୂମି ହୋନ ରହିଲା । ଯେହ୍ନେ ଲାବଣ୍ୟ ସରୋବର ଭିତରେ ପଦ୍ମବୀଜ ସଞ୍ଚରିଲା । ଜଠର ଅଗ୍ନିରେ ଯେହ୍ନେ ଜୀର୍ଣ୍ଣ ନ ହୋଇ ଚର୍ମ ପୁଟିକାର ମଧ୍ୟରେ ହୋଇ । ଜାଲି ପଟଳ ଶଯ୍ୟା (୮) କରି । ବାସୁଦେବଙ୍କୁ ହୃଦପଦ୍ମେ ଧରି । ଆହାର ପୁଟିକାକୁ ଆଶ୍ରେକରି । କୁଣ୍ଡଳିନୀ ମୁଖ ଆଶ୍ରେକରି । ପରମ ଜ୍ଞାନ ସ୍ମରି । ନବମାକାଶ ଧାରଣ କରି (୯) ପରମ ଜ୍ୟୋତି ଯେ ବ୍ରହ୍ମ ତାକୁ ଚିନ୍ତା କରି ନରାକୃତି ଶରୀର କଳ୍ପିଲା ।

---

୧—ଆନନ୍ଦହୋଇ 'କ'
୨—ତୋଳି
୩—'ଖ' ରେ ନାହିଁ
୪—'ଖ' ରେ ନାହିଁ
୫—କି ସେ ପାଂଶେ ବଧୂଳି ଫୁଟିଲା 'ଖ'
୬—ତାହାକୁ ଗର୍ଭଗତ ଜ୍ୱର ଘୋଟିଲା 'କ'
୭—ଖଟିଲା 'କ'
୮—ସେଜ୍ଞା 'ଖ'
୯—ଧାରଣାକୁ ଜାଳା କରି

ଆପ୍ୟାନ (୧) ପବନକୁ ଆହାର କଲା । ବାହ୍ୟାଭ୍ୟନ୍ତରେ ନିରନ୍ତରେ ପରମ ଜ୍ୟୋତିର୍ମୟ (୨) କରି । ଶବ୍ଦ ସ୍ୱରୂପାଙ୍ଗତକୁ ପୂର୍ଣ୍ଣକରି (୩) । ଏକ ଜୀବ ଆତ୍ମା ସମଭାବ (୪) କରି । ଜୀବକୁ ପୃଥକ କରି ଈଶ୍ୱର ଆଜ୍ଞାଉଁ କଲ୍ପିଲା । ଏମନ୍ତେ ସେ ଅମୋଘ ବୀଜକୁ ରାଣୀ ସହି ନପାରି ଆକୁଳ ହୋଇଲା । ବ୍ରହ୍ମ ତେଜ ବଢ଼ିଲା ଦୁଃଖ ସହିଲା । ଭୟେ ପଶିଲା । ଶ୍ୱେତବର୍ଣ୍ଣ ଦିଶିଲା । ଶିର ବୁଲାଇଲା । ଲୋମ ଲତିକା (୫) ଫୁଲିଲା । ଆହାର ତୁଟିଲା । ସ୍ତନରେ ଫୁଟିଲା । ଛର୍ଦ୍ଦି ମିଶିଲା । ଶ୍ୱାସ ବଳିଲା । କେଶବାସ ଫୋପିଲା । ଭୋଡ଼ାକେ ବସିଲା । ଔଷଧ ତ୍ୟାଗ କଲା । ଉଦର କଣ୍ଡୂ କଲା । ନିରନ୍ତରେ ଉଁ ନ ହୋଇ (୬) ଶୋଇଲା । ଉତ୍ତାନ ହୋଇଲା । ଦେହ ପାନ ପତ୍ର ମର୍ଦ୍ଦିଲା ପ୍ରାୟେକ ଦିଶିଲା । କୋକିଳ ବଚନ ଗର୍ଦ୍ଧର ଶୁଭିଲା ।

ରାଣୀର ଏମନ୍ତ ଆକୁଳ ଦେଖି । ରାଜା ଅତ୍ୟନ୍ତ ବିଷାଦ ପାଇ । ପରମ ଶୁଚିବନ୍ତ ହୋଇ । ଏକାନ୍ତ ସ୍ଥାନରେ । ସ୍ଫଟିକ ମଣ୍ଡପରେ ଦେବତା ସ୍ଥାନରେ ବସି । ରାଜା ମାନସିକ ପୂଜା କରୁଅଛି । କେମନ୍ତ ପ୍ରକାରେ କରୁଅଛି । ପ୍ରଥମେ ସାତଲୋକର ତଳେ (୭) । ଅତ୍ୟନ୍ତ ରସାନ୍ତଲେ (୮) ନିର୍ମଳ ଚିଦାକାଶେକ କଲ୍ପିଲା । ସେ ଆକାଶେ ବିଷ୍ଣୁ ସମେତ କରି କୋଟି ସୂର୍ଯ୍ୟ ସଂକାଶ ଜ୍ୟୋତିଏ କଲ୍ପିଲା । କଲ୍ପିକରି ତଳାତଳ ଆକାଶ ଶୁଦ୍ଧ କଲା । ତହିଁ ଉପରେ କାରୁଣ୍ୟ ଜଳେକ କଲ୍ପିଲା । ସେ ଜଳ ଅମୃତ ନିର୍ମିତ କରି କଲ୍ପିଲା । ବାସୁଦେବର ରୋମମୂଳେ ଅମୃତ ସମ (୯) ସ୍ୱେଦ କଣିକା ପ୍ରାୟେ କରି କଲ୍ପିଲା । ଜଳ ସ୍ନାନ କରି ସନ୍ଧ୍ୟା କଲା (୧୦) । ତଦନ୍ତରେ ସ୍ୱେଦ ଜଳରେ ଅନେକ

---

୧—ଅପାନ 'ଖ'

୨—ଜ୍ୟୋତି କରି 'ଖ'

୩—ଶବଦ ଶରୀର ଚକ୍ରକୁ ପୂର୍ଣ୍ଣ କରି 'କ'

୪—ଜୀବାତ୍ମା ସମଭାଗ କରି 'ଖ'

୫—ଲଳିତା 'ଖ'

୬—ଉଁ ନ ହୋଇ 'ଖ' ରେ ନାହିଁ ।

୭—ପ୍ରଥମେ ସାତ ଲୋକ ସାତତଳେ 'ଖ'

୮—'ଖ' ରେ ନାହିଁ

୯—ଅମୃତେ

୧୦—ଜଳ ସ୍ନାନେ କରି କଲ୍ପି ଶୁଦ୍ଧ କଲା 'ଚ'

ବ୍ରହ୍ମାଣ୍ଡମାନ ବଯନ୍ତି । ବସ୍ତୁରୁ ସର୍ବ ରୋମକୂପରୁ ସର୍ବଦା ସ୍ୱେଦ-ମାନ ଝରେ । ତାହାଁ ନାଭ ପଦ୍ମେକ କଲ୍ପିଲ । ସେ ବାସୁଦେବର ନାଭି ପଦ୍ମ ମଧ୍ୟରୁ କରି ମକରନ୍ଦ କଣିକା ପ୍ରାଏକ କରି କାରୁଣ୍ୟ ଜଳରେ ବ୍ରହ୍ମାଣ୍ଡ ହୋଇଲା । ଏ ବ୍ରହ୍ମାଣ୍ଡର ନାମ ପଦ୍ମଭବ । ଏ ବ୍ରହ୍ମାଣ୍ଡ ତଳରେ ମହାଜଳ ଉପରେ କମଠେକ କଲ୍ପିଲ । ସେ କମଠକୁ ପରମେଶ୍ୱର କଳ୍ପି ଧାମ୍ପିଲ । ସେ କମଠକୁ କେମନ୍ତ କଲା । ବଜ୍ର ପ୍ରାଏକ ତାହାର ପୃଷ୍ଠକଠିନ । ସ୍ନିଗ୍ଧ ବୈଡ଼ୁର୍ଯ୍ୟ ମଣିର ପ୍ରାଏକ ଶରୀର ଅଛଇ । ପ୍ରଥମ ଉଦିତ ଆଦିତ୍ୟ ପ୍ରାଏକ ଚକ୍ଷୁ ଦୁଇ । ବିଦ୍ୟା ବଜ୍ରକର ପ୍ରାଏକ ଦଶଇ । ନଖମାନ ଅର୍ଦ୍ଧଚନ୍ଦ୍ର ପ୍ରାଏକ । ପେଟ ହରିତ ବର୍ଣ୍ଣର ମେଘର ପ୍ରାଏକ । ଅଚଳ କମଳକୁ (୧) କମଠାକୃତ ଛନ୍ଦେ ନିଯୋଜି ପଜା କଲା । ସେ କମଠ ନିଶ୍ୱାସେ କରି ସାତ (୨) ଲୋକ ରହିଅଛି । ଏମନ୍ତ ସେ ମହାପୀଠ (୩) କମଠର ଆଠପାରୁଶରେ ଆଠ ଗୋଟି କୁଞ୍ଜର କଳପିଲା । ସେହି କୁଞ୍ଜରମାନେ କେମନ୍ତ ଅଛନ୍ତି । କେ ହିମାଳୟ (୪) ପର୍ବତର ପ୍ରାଏକ । କେ କାଞ୍ଚନ ପର୍ବତର ପ୍ରାଏକ । କେ ନିର୍ଧୂମ ବହ୍ନି ପ୍ରାଏକ । କେ ଶୁଦ୍ଧ ସ୍ଫଟିକ ପ୍ରାଏକ । କେ ସନ୍ଧ୍ୟା ମେଘର ପ୍ରାଏକ । କେ ମାଣିକ୍ୟ ମଣିର ପ୍ରାଏକ । କେ ଧୂମ୍ରବର୍ଣ୍ଣ । ସମସ୍ତେ ହେଁ ଚତୁର୍ଦ୍ଦନ୍ତ । କେ ମେରୁ ପର୍ବତ ପ୍ରାଏକ । ସମସ୍ତେ ଏପରି ଗରୁଦ୍ରଂଷ୍ଟ୍ରା (୫) । ହିମାଳୟ ପର୍ବତରୁ ଗଙ୍ଗା ଝରିଲା ପ୍ରାଏକ ମଦଧାରା ଝରୁଅଛନ୍ତି ।

ଏବଂଭୂତ କରି ଆଠଗଜ କଲ୍ପିଲ । ଗଜବନ୍ଧ ଧାରଣାରେ କରି, ଋଷିଛନ୍ଦ ଅଧିଷ୍ଠାନୀ ସହିତେ ଗନ୍ଧ ପୁଷ୍ପ ସହିତେ ଧୂପଦୀପ ନୈବେଦ୍ୟ ଦେଇ ପୂଜାକଲା । ବସ୍ତ୍ର ଅଳଙ୍କାର ଦେଇ ସେ କମଠ ଉପରେ ଆଠ ହସ୍ତୀମାନଙ୍କର ହସ୍ତମାନ ଶୁଣ୍ଡକରି ମଣ୍ଡୂକକୁ ଧରିଅଛନ୍ତି । ସେ ମଣ୍ଡୂକ କେମନ୍ତ ଅଛନ୍ତି । ମହାକଳ୍ପି ଅଛଇ । ନୀଳ ପାଷାଣ ପ୍ରାଏ ଦେହ

---

୧ – ସେ କମଠକୁ 'କ'
୨ - ମର୍ତ୍ତ୍ୟ 'ଖ'
୩—ମହାପୃଷ୍ଠ 'କ'
୪ – ମଳୟ 'କ'
୫ – 'ଖ' ରେ ନାହିଁ

କର୍କଶ ଅଟଇ । ଇନ୍ଦ୍ରଧନୁ ପ୍ରାୟେକ ପଇତା ଅଙ୍କିତ ହୋଇଅଛି । ଦୁଇ ଚକ୍ଷୁ ମଙ୍ଗଳ ଗ୍ରହ ପ୍ରାୟେକ ଦୀପ୍ତ ହୋଇଅଛି । ଏବଂଭୂତ ମଣ୍ଡୁକେକ କଳ୍ପିଲା । ସେ ମଣ୍ଡୂକକୁ ମଣ୍ଡୂକ ଧାରଣାରେ କରି ବିଧିମତେ ପୂଜାକଲା । କରି ସେ ମଣ୍ଡୂକର ଶିରେ ଏକ ପଦ୍ମ ପୁଷ୍ପେକ କଳ୍ପିଲା । ସେ ପଦ୍ମ ନାଡ଼ ଧାଠିଏ ସହସ୍ର ହାତ ଉତ୍ସର୍ଗ ଅଟଇ । ସେ ପଦ୍ମ ଅତ୍ୟନ୍ତ ସ୍ଫୁଟ ହୋଇଅଛି । ସର୍ବଦା ମଳିନ ନୁହଇ । ସେ ସୁବର୍ଣ୍ଣ ପଦ୍ମ ଅଟଇ । ପୁଣି ସୁଗନ୍ଧ ଅଟଇ । ଅନେକ ଦୂର ବ୍ୟାପିଅଛି । ସେ ସହସ୍ର ଦଳ ଅଟଇ । ଏହାକୁ ପାତାଳ ପଦ୍ମ ବୋଲି । ଏ ପଦ୍ମକୁ ଶ୍ରୀ ପଦ୍ମେ (୧) ଜାଣିକରି । ଆଧାର ପୃଷ୍ଠ (୨) ଏହାର କୋଷ ଅଟଇ । ଏଥି ଅନନ୍ତ ସ୍ୱରୂପ ଯେ ପରମେଶ୍ୱର ସେ ବିଜେକରି ଅଛନ୍ତି । ସେ ଅନନ୍ତନାଗକୁ ରାଜା ଯୋଗଧ୍ୟାନେ ଏକଲକ୍ଷ୍ୟେ କଲା । ସେ ସର୍ପର ବର୍ଣ୍ଣ ତପ୍ତ କାଞ୍ଚନ (୩) ଅଟଇ । ସେ ପଦ୍ମରେ କୁଣ୍ଡଳୀ କୃତ (୪) ହୋଇ ବସିଅଛି ଯୋଗଧ୍ୟାନେ ।

ଚକ୍ଷୁମାନେ ସୂର୍ଯ୍ୟର ପ୍ରାୟେକ ଦିଶୁଅଛନ୍ତି । ସହସ୍ରେ ଶିର ଅଟଇ । ସେ ଶିରମାନଙ୍କରେ ଫଣା ମଣିମାନେ ଦୀପ୍ତ ହୋଇ ଅଛନ୍ତି । ସେ ଫଣା ମଣିମାନଙ୍କର ଶିଖା ଅତ୍ୟନ୍ତ ଜ୍ୟୋତିର୍ମୟ ଅଟଇ । ନୀଳବସ୍ତ୍ର ପରିଧାନ କରି କନକ ସରୋଜ ଉପରେ ଶ୍ରୀ ଶକ୍ତିରେ ଅନନ୍ତ ବୀଜ ସ୍ୱରୂପ ବିଜେକରି ଅଛନ୍ତି । ସେ ବାସୁକିଙ୍କ କଳ୍ପିଲା । କଳ୍ପି ପୁରୁଷ ସୂକ୍ତ ଉପଚାରେ ଆକାଶ-ଗଙ୍ଗାରୁ ଜଳ ଅଭିସେଚନ କରି ମାନସିକ ପୂଜାକଲା । ଅନନ୍ତ ମନ୍ତ୍ରେକରି ଜପକଲା । ତହିଁ ଉତ୍ତାରେ ସେ ସର୍ପର ସହସ୍ର ଫଣାର ମଧ୍ୟେ ମଧ୍ୟ ଫଣା ସବୁହିଁ ଉଚ୍ଚ ଅଟଇ । ସେ ଫଣାରେ ଥାନ୍ତା କୋଟି ସୂର୍ଯ୍ୟ ସଙ୍କାଶ ମୁକୁଟର ଉପରେ ମଣି ଏକ ଅଛଇ । ସେ ମଣିର ମଧ୍ୟେ ପୃଥ୍ୱୀ ତିଳ ପ୍ରାୟେକ ହୋଇ ବସିଅଛି । ଏମନ୍ତ କଳ୍ପିଲା କଳ୍ପ । ସାତ ଲୋକ ସ୍ୱରୂପେ ଯେଉଁ ପୃଥ୍ୱୀ, ଏହା କଳ୍ପିଲା ପୀତବର୍ଣ୍ଣ କରି, ବଜ୍ରାଙ୍କିତ କରି ଧରଣୀ ମନ୍ତ୍ରେ ଅନ୍ତଃକରଣ ଶୁଦ୍ଧକରି ପୂଜାକଲା । ସୁଗନ୍ଧ ପୁଷ୍ପ ଧୂପଦୀପ ନୈବେଦ୍ୟ ବିଗବନ୍ଧନ ତାଳତ୍ରୟ କରିକଲା । କରି ଆସନ-ମନ୍ତ୍ରେ ଆସନେ ବସିଲା ।

---

୧—ଶ୍ରୀମନ୍ତ୍ରେ 'କ'
୨—ପିଠି 'କ'
୩—ତପ୍ତ କାଞ୍ଚନ ପ୍ରାୟେକ ବର୍ଣ୍ଣ 'କ'
୪—ମଣ୍ଡଳାକୃତ 'କ'

ଦକ୍ଷିଣେ ଗଣେଶ୍ୱରଙ୍କୁ ଅର୍ଚ୍ଚିଲା । ବାମେ ଗୁରୁମାନଙ୍କୁ (୧) ନମସ୍କାର କଲା । ଉପରେ ଗରୁଡ଼ଧ୍ୱଜ ଯେ ଶ୍ରୀକୃଷ୍ଣ, ତାଙ୍କୁ ନମସ୍କାର କରି ରକ୍ଷା ଦେଲା । ମହାଭୈରବ, ଯମ, ଇନ୍ଦ୍ର, ମରୁତ, କୁବେର (୨) ଏମାନଙ୍କୁ ନମସ୍କାର କରି ଗୃହ ଚାରୁଣରେ ରକ୍ଷାଦେଲା । ଏ ରକ୍ଷାକରି କୋମଳ କରି ଶତର ମୁଦ୍ରାକରି ପରି ସୁରକ୍ଷା କରି ଭୂତଶୁଦ୍ଧି କଲ୍ପିଲା । ପାଦୁଁ ଜାନୁ ପର୍ଯ୍ୟନ୍ତେ ପୃଥ୍ୱୀ ଶୁଦ୍ଧିକଲା । ଜାନୁରୁ ଗୁହ୍ୟ ପରିଯନ୍ତେ ଜଳତତ୍ତ୍ୱ କଲା । ଗୁହ୍ୟରୁ ନାଭି ପରିଯନ୍ତେ ଅଗ୍ନିତତ୍ତ୍ୱ କଲା । ନାଭିରୁ ହୃଦୟ ପରିଯନ୍ତେ ବାୟୁ ତତ୍ତ୍ୱକଲା । ହୃଦୟରୁ କଣ୍ଠ ପରିଯନ୍ତେ ଆକାଶ ତତ୍ତ୍ୱକଲା । କଣ୍ଠରୁ ମୂର୍ଦ୍ଧନ ପରିଯନ୍ତେ ବ୍ରହ୍ମଜ୍ୟୋତି କଲା । କରି ଶରୀର ଶୁଦ୍ଧକଲା । ଲଘୁ ମାତୃକା ନ୍ୟାସକରି ମୂଳ କମଳକୁ ଚିନ୍ତାକଲା । ବାଦଶାନ୍ତ ପର୍ଯ୍ୟନ୍ତେ ସେହିପି ପୃଥ୍ୱୀକୁ ସମକରି ଜ୍ୟୋତି ଅରୁଣ ବର୍ଣ୍ଣ କରି ବାଦଶାନ୍ତ ପର୍ଯ୍ୟନ୍ତ ବର୍ଣ୍ଣକୁ ବସାଇ କୋଷଗତେ ରତ୍ନପୀଠେ ବଡ଼େଶ୍ୱରଙ୍କୁ ଅର୍ଚ୍ଚିଲା । ହାକନ୍ୟାଦ ଅଧିଷ୍ଠାନୀ କରି (୪) ତଦୁପରି ଜ୍ୟୋତିସ୍ଥାନେ ଦ୍ରାବାଳେ ଅଙ୍କୁର କରି । ଈଶ୍ୱରଙ୍କୁ ପଶ୍ଚିମ ମୁଖକରି କଲ୍ପିଲା । ରୁଦ୍ରମନ୍ତ୍ରେ ଜପକଲା । ସ୍ୱାଧିଷ୍ଠାନ ଚକ୍ରରେ ଯଥୋଚିତ କରି ପୂଜାକଲା ତ୍ରିପୁରାଙ୍କୁ । ତଦୁପରି ଡାଦପ୍ରାନ୍ତ ବର୍ଣ୍ଣରେ ନୀଳଉତ୍ପଳ ସଙ୍କାଶ କମଳରେ ବ୍ରହ୍ମାଙ୍କୁ ପୂଜିଲା । ହୃଦୟ ପଦ୍ମେ ନାରାୟଣଙ୍କୁ ଜପକରି ପୂଜିଲା । ଅ.ସେହିପି ଚନ୍ଦ୍ର ସୂର୍ଯ୍ୟ ଅଗ୍ନିମଣ୍ଡଳର ମଧ୍ୟରେ ନିର୍ଧୂତ ଅଗ୍ନିର ସଙ୍କାଶ ଚନ୍ଦ୍ରାଧୂଧ କରି ପୂଜିଲା । ତଦୁପରି କଣ୍ଠ କମଳରେ ଷୋଡ଼ଶ ଦଳ ସ୍ୱରନ୍ତା ସରସ୍ୱତୀଙ୍କି ପୂଜାକଲା । ନବବସ୍ତ୍ର ଶିଖି ନାଡ଼ୀରେ ନଦ୍ରାକୁ ପୂଜିଲା । ପ୍ରାଣ ଚକ୍ରରେ ଈଶ୍ୱରଙ୍କୁ (୫) ସହସ୍ର ଦଳ ଉପରେ ଶୁଦ୍ଧ ସ୍ଫଟିକ ସଙ୍କାଶ କରି କଲ୍ପି ପୂଜା କରନ୍ତେ ଅଦ୍ଭୁତ ହୋଇ ଧ୍ୱନଏ ରାଜାର କର୍ଣ୍ଣରେ ପଶିଲା ।

ଆହୋ ରାଜା ଯେଉଁ ଅବଧୂତ ଆସିବ ତାହାଙ୍କୁ ରାଣୀଙ୍କି ଦେଖାଇଲେ ଶାନ୍ତ ପାଇ ସିନା । ଗର୍ଭରୁ ପୁତ୍ରକୁ ସେ ବୋଧଇ ସିନା । ଆମ୍ଭେ ତୋହର ପୁତ୍ର ହୋଇ ଜନ୍ମ ହେଉ ଅଛୁନା । ଏମନ୍ତେ ସେ

୧—'ଖ' ରେ ନାହିଁ
୨—'ଖ' ରେ ନାହିଁ
୩—'ଖ' ରେ ନାହିଁ
୪—ଆକନ୍ଦ ଅଧିପା କରି 'ଖ'
୫—ପ୍ରାଣ ଚନ୍ଦ୍ରେଶ୍ୱରଙ୍କୁ 'ଖ'

ଈଶ୍ୱରଙ୍କ ଅର୍ଚ୍ଚନାଠାରେ ମାନସିକ ପୂଜା କରୁଥିବାରେ ଏ ଧ୍ୱନି ଶୁଣି ରାଜା ସମାଧି ଗ୍ରୁଡ଼ିଲେ । ଅବଧୂତଙ୍କୁ ନିରେଖି ଗୃହେଁ (୧) ଏମନ୍ତରେ ସେ ଏକ ଅନେକ ନଗରରେ ପୁରୁଷେକ ଆସି ପ୍ରବେଶ ହୋଇଲେ । ସେ ପୁରୁଷର ଦେହ କେମନ୍ତ ଅଛଇ । କୃଷ୍ଣ ଧୂସର କେଶକାନ୍ତି । କେଶ କୁଟିଳ ଜଟିଳ ଖେଚର (୨) କନକର ଭ୍ରାନ୍ତି । ଚକ୍ଷୁ ପିଙ୍ଗଳ ଚନ୍ଦ୍ରାକୃତ (୩) । ଶରୀର ଦୀର୍ଘ ପୃଥୁଳ (୪) । ଆକୃଷ୍ଟ କଟିରେ ଅଛି ବଜ୍ର କାଛୋଟି । ଗୃହେଁ ଅଛି ଚକ୍ଷୁ ଉଗଟି । ପୁଷ୍ପରସ ମଦରେ (୫) ହୋଇଅଛି ମତ୍ତ । କୁଳଶ ଯୋଗରେ ଇନ୍ଦ୍ରିୟମାନଙ୍କୁ କରିଅଛି ଘାତ (୬) । ଆକାଶର ପଥଏ ମୂଳିଅଛି । ପବନର ମାର୍ଗ ଶୋଧିଅଛି (୭) । ଇଳା ପିଙ୍ଗଳା ସାଧିଅଛି । ମୂଳ କମଳ ମୁଦିଅଛି । ସପତ ଧାତୁ ମାରିଅଛି । ଇନ୍ଦ୍ରିୟମାନଙ୍କୁ ଜାରିଅଛି । ତ୍ରିବେଣୀ ଛନ୍ଦ ଛନ୍ଦିଅଛି । ଓଡ଼ିଆଣି ମୁଦ୍ରା ଖାଞ୍ଚିଅଛି । ଖେଚରୀ ମୁଦ୍ରା ଯନ୍ତ୍ରୀ ଅଛି । ଶରୀରଯାକ ମନ୍ତ୍ରୀ ଅଛି । ଅଗ୍ନିମଣ୍ଡଳ ଜାଳି ଅଛି । କୁଣ୍ଡଳୀ ମୁଖ ଗୃଳିଅଛି । ଷଟ୍‌କମଳ ଫୁଟାଇ ଅଛି । ଆଧାର ନିଦ୍ରା ଫୁଟାଇ ଅଛି । ନବଦ୍ୱାର ଶୋଧିଅଛି ମନକୁ ମନେ ବୋଧିଅଛି । କାଉଁରୀ ମଣ୍ଡଳ ଗୃଳିଅଛି । ଅନାହତ ଧ୍ୱନି ଧାୟୀଅଛି । ଠୂଳଶୂନ୍ୟ ଭେଦିଅଛି । କାଳ ଖଡ଼ଗ ଛେଦିଅଛି । ଚନ୍ଦ୍ରେ ସୂର୍ଯ୍ୟ ମିଶାଇ ଅଛି । ଶୂନ୍ୟମଣ୍ଡଳକୁ ଗ୍ରାସୁଅଛି । ଭସ୍ମବଲେପନ ହୋଇଅଛି । ଜଗତ ଯାକ ମୋହୁଅଛି ।

ଏମନ୍ତ ସେ ପରମେ ଅବଧୂତ ପୁରୁଷ ଆସିବାର ସମୟେ ସପ୍ତ ସମୁଦ୍ରକୁ ପୁଷ୍ପକଣିକା ପ୍ରାୟେକ ମଣୁଁ ଅଛି । ଅଶେଷ ପବନକୁ ଫୁଙ୍କ ପ୍ରାୟେ ବୋଲି ଜାଣୁଅଛି । ପୃଥ୍ୱୀକୁ ରେଣୁ ପ୍ରାୟେକ ଆକଳୁ ଅଛି (୮) । ମଣିଧର ପ୍ରାୟେକ ଆକାଶକୁ ପାଞ୍ଚୁଅଛି (୯) । ମନେମନେ

---

୧—ଥାଇ 'କ'
୨—ଖେଚର 'କ'
୩—ଚନ୍ଦ୍ରାଙ୍କିତ 'କ'
୪—ଦୀର୍ଘ ହୋଇ ସ୍ଥୂଳାକୃତ 'କ'
୫—ମଦରେ 'ଖ'
୬—କୁଳିଶ ବୃକ୍ଷ ଯୋଗେ ନିରତା ନିରନ୍ତରତ କରିଅଛି ଇନ୍ଦ୍ରିୟମାନଙ୍କୁ ଘାତ 'କ'
୭—ସାରିଅଛି 'ଖ'
୮—ଆଣୁଅଛି 'ଖ'
୯—ଏ ମହାଆକାଶ ଗୋଟିକୁ ମଣିରନ୍ଧ୍ର ପ୍ରାୟେ ମଣୁଅଛି ।

ସେ ଜଗତ ଯାକ ଧରିଅଛି । ଦେବତାମାନଙ୍କୁ ଜାଣି ଧ୍ୟାୟେକ କରି ଆକଳ୍ପ ଅଛି । ବ୍ରହ୍ମା, ବିଷ୍ଣୁ, ମହେଶ୍ୱରାଦି ଦେବତାଙ୍କୁ ଦୁଃଖୀ ବୋଲି ଭାଳୁଅଛି । ଏମନ୍ତେ ସେ ଅବଧୂତ କେଶ ମୁକୁଳ । ଭସ୍ମେ ଶୁକଳ । ଅନ୍ତ ନିର୍ମଳ । ଦନ୍ତ ଉଜ୍ଜ୍ୱଳ । ହାତରେ ଅଛି ଦଣ୍ଡ । କଟିରେ ଅଛି ଦରପୋଡ଼ା ଖଣ୍ଡେ । ମୃତ ସର୍ପେକ ପଇତା କରି ଲାଇଅଛି । ସିଦ୍ଧ ମୂଳକା ଖାଉଅଛି । କଣ୍ଠେ ଲମ୍ବାଇ ଅଛି କୁମ୍ଭ ମୁଖ ଖଣ୍ଡେ । ମଥାରେ ଅଛି ଅନ୍ନ ସମେତ ଘଣ୍ଟେ । ବନ ବନ ହୋଇ ଆସୁଅଛି । ଶଙ୍ଖିମାନଙ୍କେ ଝାସୁଅଛି । ଦିବ୍ୟାନ୍ନ ମାନ ଯାଚଲେ ନିନ୍ଦୁଅଛି । ପଡ଼ିଲା ଅନ୍ନ ଚୁଣ୍ଟି ଆଇ ଭୁଞ୍ଜୁଅଛି । ଆହନେ ବସିଲେ ବାର ବର୍ଷ ବସଇ । ଅହଂକାର ଲୟରେ ପୁଣି ବ୍ରହ୍ମରେ ମିଶଇ । ଦେହାଶ୍ରମାନେ ହୋଇଅଛି ସିଦ୍ଧି । ଏ ସେ ଅଟଇ ଆସୁରିକ ମତ ବୃଦ୍ଧି (୧) ।

ଏମନ୍ତ ସେ ଅବଧୂତ ଆସନ୍ତେ । ନଗ୍ନେ ଚଳନ୍ତେ । ସିଂହ ପ୍ରତେ ଗମନ୍ତେ । ଅନୁଭବ କରନ୍ତେ । ମନଶାନ୍ତ (୨) ମତେ ଇନ୍ଦ୍ରିୟନ୍ତ ପୂଜନ୍ତେ । ପଞ୍ଚକୋଷଙ୍କ ଚିନ୍ତନ୍ତେ । କୋଟି ବ୍ରହ୍ମାଣ୍ଡ ପୂରନ୍ତେ । ସୂକ୍ଷ୍ମାଣୁ ସୂକ୍ଷ୍ମଣେ ଧୂନିର ଅନ୍ତେ ମନଧାନ୍ତେ (୩) । ଚିତ୍ତ ଆଶ୍ୱସନ୍ତେ । ବୁଦ୍ଧି ଶୁଦ୍ଧ କରନ୍ତେ । ଶାନ୍ତ ସମାଚରନ୍ତେ । ପରମାତ୍ମା ଉଲ୍ଲସନ୍ତେ କରି ଜ୍ଞାନାନନ୍ଦ ପର ହୋଇନାହିଁ ଯାବତ୍ । ଅହଂକାର ଦେହାଭିମାନାଦି କରି ଛୁଡ଼ନାହିଁ ତାବତ୍ (୪) । ତାବତ୍ ଦୁଃଖସୁଖ ହିଁ ସେ ପାଉଥାଇ । ଉନମତ୍ତ ହୋଇ ଧାଉଥାଇ । ଆହାରହିଁ ଉଣ ଖାଉଥାଇ ବଡ଼ ଅତିଭୟ ପାଉଥାଇ । ପୁଣ ପୁଣ ଦେହକୁ ଠାକୁଥାଇ । ରେତ ସ୍ଖଳିତକୁ ଠାକୁଥାଇ । ପର୍ବତ ଗୁହାରେ ପଶିଥାଇ । ପରକୃତି ଭିକ୍ଷାର୍ଦ୍ଧ ଥାଇ । ଅଭୟ ଭବ ପ୍ରକାଶୁ ଥାଇ । ଭଏ ହୋଇ ବଡ଼ରେ ନ ଗୁଳଇ ପନ୍ଥା । ଅମୃତ କ୍ଷୟ ହେବା ଡରେ ନ କହଇ କଥା । ଏମନ୍ତେ ସେ ଅହଂକାର ଯୋଗ ଅବଧୂତ ପଦ୍ମ କୁଳଣ ପବନ ଖେଚର । ଧାରଣା ଆସନର ଜାଣି । ଛାଟକ, ରେଚକ, ପୂରକ, କୁମ୍ଭକ, ଶୋଷଣ ଆଦିକରି ସମସ୍ତ ଜ୍ଞାନ ଜାଣଇ । ବିଷ୍ଣୁ

୧—ଅସୁରି ଜ୍ଞାନର ବର୍ଣ୍ଣ 'କ'

୨—ମନଃଶକ୍ତି ମତେ 'କ'

୩—ସୂର୍ଯ୍ୟାଂଶୁ ତପ୍ତ ତପ୍ତାନ୍ତେ ଧୂନିରନ୍ତେ ବାଧସୁଧି କରନ୍ତେ 'ଙ'

୪—ପରମ ଆତ୍ମା । ଆସନ ମନ୍ତ୍ରକରି ଜ୍ଞାନାନନ୍ଦ ପାଇନାହିଁ ଯାବନ୍ତ ଅହଂକାର ଗର୍ବ ଦେହାଭିମାନ ଯାଇନାହିଁ ।

ଭକ୍ତ ନୋହିବାରୁ କରି ପରମାନନ୍ଦର ପରମ ଜ୍ଞାନ ସେ ନ ଜାଣଇ । ଏମନ୍ତେ ସେ ଅବଧୂତ ସିଂହଦ୍ୱାରେ ହୁଅନ୍ତେ । ଜଗତି ଉପରେ ଥାଇ ରାଜା ଦେଖିଲ । ହର୍ଷହୋଇ ସେ ରାଜା ଯାଇ ଅବଧୂତର ସ୍ତମୁରେ ମିଳିଲା । ଏମନ୍ତେ ସେ ଅବଧୂତ ରାଜାକୁ ଦେଖି । ମନ୍ଦ ମନ୍ଦ ହୋଇ ହସି । ଜନ୍ମୁ ଗୋଟିଏକ ପ୍ରାୟେ ମଣିଲ୍ । ରାଜା ଅବଧୂତକୁ ନମସ୍କାର ହୋଇଲ୍ । ଜନ୍ମୁ ସେ ସମାଧିରେ ଆଜ୍ଞା ପାଇଥିଲା । ଅବଧୂତ ବୋଇଲ୍ ରାଜା ହୋଇଲୁକ ବାଇ । ବାଳ୍ପତ ଲୋକଙ୍କୁ ତୋହର ନମସ୍କାର କାହିଁ ପାଇଁ । ରାଜା ବୋଇଲ୍ ତୁମ୍ଭେ ସର୍ବେଶ୍ୱର, ସର୍ବଭୂତେ ଅନ୍ତର୍ଯାମୀ । ଅନେକ ବିନୋଯ୍ତି ହୋଇ ବୋଇଲ୍ ଶୁଣିମା ଦେବ ସ୍ୱାମି । ଈଶ୍ୱର ଚିଯ ଶ୍ମଶାନ ଭୂମିରେ ଥାଇ । ତାହାର ପ୍ରସନ୍ନରେ କୈବଲ୍ୟ ପାଇ । ତୁମ୍ଭେ ଈଶ୍ୱର ସିନା । ପୂର୍ବର ଭାଗ୍ୟେ ମୁଁ ଭେଟିଲ କନା ।

ଏମନ୍ତେ ବୋଲନ୍ତେ (୧) ସେ ଅବଧୂତ ବୋଇଲା । ହେ ରାଜନ ତୁ କେବଣ (୨) ଅର୍ଥୀ ହୋଇଛୁ ତା କହ । ରାଜା ବୋଇଲା ହେ ସ୍ୱାମି ! ପାଟ ମହିଷୀ ମୋହର ହୋଇଛି ଗର୍ଭବାସ । ମହାଭୟ (୩) ପାଇନସେ ନ ପୁଣ ହୋଇବ ନାଶ । ଦେହର ତେଜକୁ ଗୃହି ନ ହୋଇ । ସେ ଗର୍ଭବାସ ରଶ୍ମି ତାହାର ବେଳେ ସହି ନୁହଇ । ଅବଧୂତ ରାଣୀକ ଦେଖିବା (୪) ବୋଇଲା । ରାଜା ସେହି କ୍ଷଣି ଅବଧୂତକୁ ଘେନ ଅନ୍ତପୁରରେ ମିଳିଲା । ନାନାରତ୍ନେ ଯୁକ୍ତ ଏମନ୍ତ ପଲଙ୍କେ ଆସନ ଦେଲେ । ସେ ପଲଙ୍କ କେମନ୍ତ ଅଟଇ । ସୂର୍ଯ୍ୟର ପ୍ରାୟେକ କାନ୍ତି ଅଟଇ । ଶରଦ ଚନ୍ଦ୍ରମଣ୍ଡଳ (୫) ପ୍ରାୟେକ ଗୃହ ଖୁରା । ତାରାମଣ୍ଡଳ ପ୍ରାୟେକ ଲମ୍ବି ଅଛି ମୁକୁତା ଝରା କେଶ । ତହିଁ ଦିବ୍ୟ ସୁପାଟ ଏ ଅଛି ସେଜାଇ (୬) । ଅମୃତ ଫେନ ଶୁକ୍ଳ ବସ୍ତ୍ର ତହିଁ ଅଛି ଆଚ୍ଛାଦିଲା ।

---

୧ — ଏମନ୍ତ ଶୁଣି 'ଖ'
୨ — କଥାରେ 'କ'
୩ — ମହାଭୟେ 'କ'
୪ — ରାଣୀ ଦେଖା ବୋଲି 'ଢ'
୫ — ମଣ୍ଡଳ 'ଖ' ରେ ନାହିଁ
୬ — ସଜାଇଲ 'କ'

ତହିଁ ସେବତି ପାଖୁଡ଼ା ସିଞ୍ଚି, କର୍ପୂର ଗୁଣ୍ଡି ବିଭୂତ ପ୍ରାୟେ କରିଅଛି ବିଞ୍ଚିଲା । ଏମନ୍ତ ପଲଙ୍କେ ଦିବ୍ୟପୁର ଭିତରେ ସେ ଅବଧୂତଙ୍କୁ ବସାଇଲା । ଅଗୁରୁ ଚନ୍ଦନ ଘସାଇଲା । ଦିବ୍ୟ ପଦାର୍ଥମାନ ଭିକ୍ଷା କରାଇଲା । ଦିବ୍ୟହାର ମାନଙ୍କରେ ଶରୀର ମଣ୍ଡିଲା । ବ୍ୟଜନ ପବନରେ ପରିଶ୍ରମ ଖଣ୍ଡିଲା (୧) । କ୍ଷୀର ଅନ୍ନ ଶାକର ପଇଡ଼ ସମକରି ନାନା ପଦାର୍ଥ ମାନ ବାଢ଼ିଲା । ସେ ପୁରୁଷ ଭିକ୍ଷା ସାରି । ପ୍ରସନ୍ନ ଚିତ୍ତ କରି । ପଲଙ୍କ ଉପରେ ବସିଲା ରାଜାର ଭୁଜଧରି । ରାଜା ଅବଧୂତ ଦୁହେଁ ପଲଙ୍କେ ବସିଲେ । ଶଶିପ୍ରଭା ନାମ ରାଣୀକି ନଆଣି ଏକ ପଲଙ୍କେ ସ୍ଥାପିଲେ (୨) ।

ସେ ରାଣୀ ଦୃଷ୍ଟି ପୁରୁଷେ ପୀଡ଼ା ପାଇଲା ପୃଥ୍ୱୀ ଦେବୀର ପ୍ରାଏ ହୋଇ । ଥିର ଥିର ହୋଇ ଯାଇ । ନାରାୟଣଙ୍କୁ ଧ୍ୟାୟି । ରାଜା ଆଜ୍ଞା ପାଇ । ପରିଗୃହ ସହିତ ହୋଇ । ହରିତ ବସ୍ତ୍ରେ କରି ଅଙ୍ଗ ଲୁଗ୍ରନ୍ତେ । କେମନ୍ତ ଶୋଭା ପାଉ ଅଛିକ, ପୂର୍ଣ୍ଣଚନ୍ଦ୍ର ମଣ୍ଡଳ ସନ୍ଧ୍ୟା ମେଘରେ ପଶି ଅଛି । ଏମନ୍ତେ ସେ ହଂସ ସାରସ ଗମନୀ ପାଠ ମନ୍ଦାକ୍ଷୀ ଶଶିପ୍ରଭା । ସେ ଦିବ୍ୟ ପଲଙ୍କେ ବସି ପାଇଲା ଶୋଭା । ରାଣୀକି ଦେଖି ଅବଧୂତ ବୋଇଲା । ଏହା ଗର୍ଭରେ ହୋ ଯୋଗେନ୍ଦ୍ର (୩) ପୁରୁଷେକ ରହିଲା । ବ୍ରହ୍ମଜ୍ୟୋତି (୪) ପାଇଲା । କେବଣ ସିଦ୍ଧ ଅବା ଯୋଗଭ୍ରଷ୍ଟେ ଅଇଲା । ଦେଖି ଜାଣିବା ଏହିକ୍ଷଣି । ଏମନ୍ତ ବୋଲି (୫) ପଦ୍ମାସନେ ବସିଲା । ଅନ୍ତ ନାଡ଼ିରେ ପଶିଲା । କଳ୍ପନା ସ୍ୱରୂପ ଆତ୍ମା ସେ ଜୀବ ତାହାକୁ ହୃଦପ ପଦ୍ମେ ନିରୋପି । ଆକର୍ଷ ମୁଦ୍ରାରେ କ୍ଷେପି । ପରମାଣୁ (୬) ଧାରଣା ଏ କରି । ପର ପୁର ପ୍ରବେଶ (୭) ବିଦ୍ୟା ସୁମରି । ପ୍ରଣବ ମନ୍ତ୍ର ଉଚ୍ଚାରି । ପ୍ରାଣରନ୍ଧ୍ର (୮) ବିଗ୍ରହି । ସୂକ୍ଷ୍ମଭାବ ବିଗ୍ରହି ଶରୀରକୁ ବାହାରିକଲା । ସେ

---

୧ – ଶ୍ରମ ହାରିଲା 'କ'
୨ – ବସାଇଲେ 'କ'
୩ – ଅବଧୂତ 'ଙ'
୪ – ଯୋଜ୍ଞ 'ଖ'
୫ – ବିଗ୍ରହି 'ଘ'
୬ – ପରମାଣୁ 'ଖ'
୭ – ପରମ ପୁର 'ଖ'
୮ – ଚନ୍ଦ୍ର 'ଗ'

ଶରୀର ପଞ୍ଚ ପ୍ରାଣ ମନବୁଦ୍ଧି ଦଶ ଇନ୍ଦ୍ରିୟ ସଂକଳିତ (୧)। ପଞ୍ଚଭୂତ ଦେହ ସ୍ତ୍ରୀ ସୂକ୍ଷ୍ମଅଙ୍ଗ ଗୋଟିଏ ହୋଇ, ନାସିକା ବାଟେ ବାହାର ହୋଇଲା । ହୋଇ ସେ ଶଶିପ୍ରଭା ରାଣୀର ଚନ୍ଦ୍ର ନାଡ଼ୀର ସମ୍ବନ୍ଧ ବାମ ନାସିକା ବାଟେ ପଶିବାକୁ ବର୍ତ୍ତିଲା । ଏମନ୍ତ ବର୍ତ୍ତିଲା (୨)। ଏହାର ଗର୍ଭରେ ପଶିବା । କେବଣ ମହାତ୍ମା ଅଛୁ ଏହାକୁ ଲକ୍ଷିବା ।

ଏମନ୍ତ ବର୍ତ୍ତି ଦେହରୁ ବାହାର ହୋଇଲା । ଆପଣା ଦେହ ସମାଧି ସ୍ୱରୂପ ହୋଇ ସେ ପଲଙ୍କରେ ରହିଲା । ସୂକ୍ଷ୍ମାଙ୍ଗ ହୋଇ ବାମ ନାସିକା ବାଟେ ପଶିବାକୁ ଲୋଡ଼ନ୍ତେ, ସେ ଦୀପଶିଖାକୁ ଭ୍ରମର ପୁଷ୍ପ ପ୍ରାୟେମଣି ଚୁମ୍ବିବାକୁ ଗଲେ ମନେ ମନେ ଯେମନ୍ତ ତୃପ୍ତି ଲାଗି ପଳାଇ ମେହ୍ନ ମତ୍ତ ହୋଇ ପଶି ନପାରି ପଳାଇଲା । ନ ପାରି ରାଣୀ ବ ମନେ ମନେ ନମସ୍କାର କଲା । ବର୍ତ୍ତିଲା ଏତେତେଜ ଏ କେମନ୍ତ ସହିଲା । ଏମନ୍ତ ବର୍ତ୍ତି ମହାଦେବୀଙ୍କର ଦକ୍ଷିଣ କର୍ଣ୍ଣରେ ଆପଣାର ଅପାନ ପବନ ଭରିଲା । ସୂକ୍ଷ୍ମ ଭାବରେ କରି ରାଣୀ ତାହା ନ ଜାଣଇ । କାହାକୁହିଁ ସେ ଦେହ ନ ଦିଶଇଁ । ଏମନ୍ତେ ସେ ଅପାନ ପବନ ଯେ ସେ ଚନ୍ଦ୍ର ସ୍ୱରୂପ । ସେ ପବନ ପଶନ୍ତେ ରାଣୀ ଶୀତଳ ପାଇଲା । ନିଦ୍ରା ଅଇଲା । ସେହି ପଲଙ୍କେ ସେ ଶୋଇଲା । ସେ ପବନ ପଶନ୍ତେ ସାତମାସ ହୋଇଲା ନ । ଏବଂ ଭୂତ ପରୀକ୍ଷିତ ଯୋଗେଶ୍ୱର ପୁରୁଷ ଯେ ସେ ଜାଣିଲା । ଜାଣି ସାବଧାନ ହୋଇଲା । ଶବଦକୁ ଜାଗିଲା । ଅବୁଦ୍ଧି ଭାଙ୍ଗିଲା (୩) ମନ ପ୍ରାୟେ ଲାଗିଲା । ଅନ୍ତଃକରଣେ ହୋଇଲା ସତ୍ତ୍ୱଭାବ । ଉନ୍ମତ୍ତଭାବ ହୋଇଲା ଜନ୍ତୁର ସ୍ୱଭାବ । ଯୋଗବଳେ କରି ଅଜ୍ଞାନ ନୋହଇ । ଗର୍ଭ ଦୁଃଖେ କରି କ୍ଷଣେ କ୍ଷଣେ ମୋହ ହୋଇ । ଭୟଙ୍କର ଖଣେନ୍ଦୁ ମୌଳିକ ସୁମରଇ । ସୁମରିବା ନ ସୁମରିବା ନ ବିସ୍ମରଇ । ମାତଗର୍ଭର ହେତୁ ସ୍ମରଣ ବିସ୍ମରଣ ଏହା କହିନୁହଇ । ସେ ଅବିକୃତ (୪) ରୂପ ମାତୃଗର୍ଭରେ ପୁରୁଷ ଉନ୍ମତ

---

୧ — ଶମନାସ୍ତୁ 'ଖ'
୨ — ଖରେ ନାହିଁ
୩ — ଖ ରେ ନାହିଁ
୪ — ଅବ୍ୟକ୍ତ 'ଖ'

ମୂର୍ଖ (୧) ହୋଇବାରୁ କଲି ବାହାରେ କର୍ଣ୍ଣ ମୂଳେ ଥାଇ ସେ ଅବଧୂତ ସୂକ୍ଷ୍ମସ୍ୱର କରି କଥା କହିଲା । ହେ ମହାତ୍ମା ! ହେ ମହାତ୍ମା ! ହେ ମହାତ୍ମା ! ବୋଲି ତିନି ବେଳ ଡାକିଲା । ଯହୁଁ ଇନ୍ଦ୍ରିୟମାନେ ତାହାର ଅଙ୍କୁରି-ଲେନି । ତହୁ ଶବ୍ଦରୁ ସେ ଶବ୍ଦ ହୋଇଅଛି ଜନ୍ମ । ଏବେ ଅନାହତ ଧ୍ୱନି ପାଇଲେ ହୋଇବ ଲୀନ । ସେ ଶବ୍ଦ କର୍ଣ୍ଣେ ପଶିଲା ଯହୁଁ । ପୂର୍ବଜନ୍ମର ବଳେ ଇନ୍ଦ୍ରିୟମାନଙ୍କୁ ଚେତୋଇଲା ତହୁଁ । ଅନ୍ତଃକରଣ ଭବ କର୍ମ ହୋଇଲା । ଶରୀରକୃତ ମାୟାବଳେ ମୋହିଲା । ଗର୍ଭେ ଥାଇ ବଢ଼ିଲା ଅହୋ ମନୁଷ୍ୟର ଶବ୍ଦତ ମୋହର କର୍ଣ୍ଣେ ପଶିଲା । ସଂସାର ମାୟା ମୋହିଲା । ବସ୍ତୁ ମାୟା ମୋହିବ ଜନ୍ମ ହୋଇବା ଉତ୍ତାରେ । ଏଥିକତ ଜାଣି ନ ପାରଲି ଅନ୍ତରେ (୨) । ଏବେ ଅବା ମୋହର ପ୍ରଭୁ ଶଙ୍କର । ଚେତୋଆଇବେ ବୋଲି ଅବା କର୍ଣ୍ଣରେ । ତହୁଁ ଡାକୁ ଅଛନ୍ତି ସୂକ୍ଷ୍ମସ୍ୱରେ । ଏହାଙ୍କୁ କଥା କହିବ । ପୁଣି ବଢ଼ିଲି ହେ । ଶବ୍ଦ ଶ୍ରୁତିରେ ବଡ଼ ସୂକ୍ଷ୍ମ ଅତ୍ୟନ୍ତ ସ୍ୱର ହୋଇଲେ ହେଁ ପଶଇ । ଏବେ ଦେବତାମାନେ କଥା କହୁ ଅଛନ୍ତି । ସକଳ ଜନ୍ତୁମାନେ ପିମ୍ପୁଡ଼ି ସହିତ ହୋଇ କଥା କହୁ ଅଛନ୍ତି । ପୁଣି ନ ଶୁଭଇ କଥା । ପୂର୍ବ ଶ୍ରୁତି ଏ କରି କେ ମୋତେ ଡାକିଲା । ଏହାର ସୂକ୍ଷ୍ମ ଶ୍ରୁତି । ସୂକ୍ଷ୍ମ ଶରୀର । ସୂକ୍ଷ୍ମମନ ସୁ ପ୍ରସନ୍ନ ଅଛଇ । ନୋହିଲେ ଆନ ଶବ୍ଦ ମୋତେ କମ୍ପା ନ ଶୁଭଇ ।

ଏମନ୍ତ ବଢ଼ିର ମାତୃଗର୍ଭେ ପୁରୁଷ ଶବ୍ଦକଲା । କେମନ୍ତ ପ୍ରାୟେ କରି । ନାସିକା ପବନେ କୋମଳ କରି ବଇଁଶୀ ବୋଇଲେ ଯେମନ୍ତ ସୂକ୍ଷ୍ମ । ବାଳ ଝିଙ୍କାରୀ ଶବ୍ଦ ଯେମନ୍ତ ସୂକ୍ଷ୍ମ । ଶାରୀର ବଚନ ସହସ୍ରଧା କଲେ ଯେମନ୍ତ ଶୁଭଇ । ସେହିମତ କରି କହୁଅଛି । ଯହୁଁ ଏ ଯୋଗେନ୍ଦ୍ର ପୁରୁଷ ମନୋମୟ ସୂକ୍ଷ୍ମ ଶ୍ରୁତିରେ କରି ଶୁଣୁଅଛି । ଗର୍ଭରେ ଥାଇଁ କୁମର ବୋଇଲା । ଆହୋ ମହାତ୍ମା ମହାତ୍ମା କରି ମୋତେ କେ ଡାକିଲା । ସେ ମୂର୍ଖମତ (୩) ସେଠି । ମହାତ୍ମାମାନେତ ଏତାଦୃଶ ନରକ ପାନ୍ଥକ । ତୁ ଅବା ବୋଲିବୁ ଆତ୍ମାତ ନ ପାଇ (୪) । ତୁ ଜୀବ ଭବ ଶରୀର ଆବୋର

---

୧—ଜନ୍ମୁଳ 'କ'
୨—ଏଥକୃତ ଜାଣି ନ ପାରିଲୁ ନରନ୍ତରେ 'ଖ'
୩—ପଣ୍ଡିତ 'ଖ'
୪—ଚୈତନ୍ୟ ପାଇ 'ଖ'

ପାଠ (୧) ଅଛୁନା ବୋଲି । ହାଦେ ଆତ୍ମା ନ ପାଇଲେ ମୋହର କ ହୋଇଲା । ମୁହିଁତ ଜୀବ ବନ୍ଧ ସେ ଯେବେ ମୁଁ ମହାତ୍ମା ହୁଅନ୍ତି ତେବେ ମୁଁ ଶବ୍ଦ କାହୁଁ ହୁଅନ୍ତି । ଗର୍ଭ ଗୁହା (୨) ବାସ ଜନ୍ମମରଣ ଭୟ ବିଭ୍ରମ ତନ୍ତ୍ରା ଶୋକମୋହ ଜ୍ୱର ଜନ୍ମ କେ ଭୋଗ କରିବ । ମୁଁ କାହିଁର ମହାତ୍ମା । ମୁଁ ତ ମହାତ୍ମା ନୁହଇ । ପଦଚ୍ୟୁତ (୩) ଅଧମ ଯେ ସେ ମୁଁ । ମୋତେ ତୁ ଅନୁଜ୍ଞାନ କର । ଏମନ୍ତ ବୋଲି ସେ ଗର୍ଭ ପୁରୁଷ ସୂକ୍ଷ୍ମ ବଚନ ବୋଇଲା ।

ଏମନ୍ତ ଶୁଣି ସେ ଅବଧୂତ ମହା ଆଶ୍ଚର୍ଯ୍ୟ ପାଇଲା । ବିଚାରିଲା ହୋ ମୋହର ଧନ୍ୟ ଧନ୍ୟ ଆଜ ପୁଣ୍ୟ ସମୟ ହୋଇଲା । ଅନେକ ଜ୍ଞାନ ପାଇବା । ଏତେ ଅଦ୍ଭୁତ (୪) କଥା କାହିଁ ପାଇଲା ନାହିଁ । ଏମନ୍ତ ବିଚାରି ଅବଧୂତ ବୋଲୁଅଛି । ବାବୁ ତୁ ନିସ୍ତରିଲା ଜୀବ କଅବା ଶିବ । ମୋହର ବଚନ କର ଅମୃତ ପିଇବ । ହେ ବତ୍ସ ! ମୁଁ ହାଦେ ପ୍ରଥମୁଁ ଅବଧୂତ ପୁରୁଷ । ତୋହର ମନବୁଦ୍ଧି ଆଜ କରିବ ହର୍ଷ । ଜନମାକ ତାପେ କର ନକର ତରସ । ତୋହର ତପତ ତେଜ ଛାଡ଼ି ହୁଅ ସୁରସ (୫) । ତୋହର ମନରେ କ ମାଗିଅଛୁ ବର । ଯେମନ୍ତ ବାଞ୍ଛା ତାହା ମନେଧର । ଯାହାର ହୃଦରେ ଏତେ ବୁଦ୍ଧି । ନିଶ୍ଚେ ତୋହର ହୋଇଲାନ ସିଦ୍ଧି । ଏମନ୍ତ ଶବ୍ଦ ଶୁଣୁଥାଇ ଦକ ଦକ ହୋଇ, ଉଦବେଗ ପାଉଥାଇ, ତୁ ତହିଁ କେମନ୍ତ ସରୂପେ ଅଛୁ । ତୋତେ ତହିଁକି ପରକାଶ ହେଉଅଛି । ଏହା କହିବୁ ମୋତେ । ଜନ୍ମ ହୋଇଲା ଉତ୍ତାରୁ ଶିଷ୍ୟ କରିନେବି ତୋତେ । ଏମନ୍ତରେ ସେ ଅବଧୂତ ଅହଂକାର କଥା କଲା ଯହୁଁ । ଅନ୍ତର୍ଗତେ ଥାଇ ସେ ଗର୍ଭବାସ ପୁରୁଷ ବିଚାରିଲା ତହୁଁ । ଏ ପୁରୁଷତ ଈଶ୍ୱର ନୁହଇ । ଏହାର ଅଳ୍ପବୁଦ୍ଧି । ଅଭ୍ୟାସ ଯୋଗେ କେବଳ ଶରୀର କରିଅଛି ସିଦ୍ଧି । ଜାଣଇ ଋଦ୍ଧି । କପୋଳେକ ବୁଦ୍ଧି । ସର୍ବଥା ନ ଜାଣଇ ଏ ଜ୍ଞାନାନନ୍ଦ

---

୧—ପାଠ 'ଖ'
୨—ଗୃହ 'ଖ'
୩—ଶ୍ରୁତ 'ଖ'
୪—ଅପୂର୍ବ 'କ'
୫—ଶୀତଳ 'ଖ'

ବୁଦ୍ଧି । ଦେହାତ୍ମମାନ ବର୍ତ୍ତିଅଛୁ । ଅହଂକାର ଘର ସମ୍ବଅଛୁ (୧) । ଏହାର ଗତି ସ୍ଥିତି ମତି ଆଦିକରି କର୍ମଚେଷ୍ଟା ପଗୃରିବା । ଅଭ୍ୟନ୍ତର ବଗୃରିବା(୨) । ଦୟା କ ମାୟା ଶୁଣିବା । ଏମନ୍ତ ବଗୃରି ସେ ଅଭିନବ ଚୈତନ୍ୟ ନାମେ ରୁଦ୍ରଗଣ ବୋଲୁଅଛୁ । ହେ ପୁରୁଷ ତୁ କାହିଁଅଛୁ । ତୋତେ କ କ ଦିଶଇ । ତୁ କ ବଗୃରୁଥାଉ । କ ବାରୁଥାଉ । ତୋହର ବିଶ୍ରାନ୍ତ କେବଣ । ଏହା ମୋତେ କହ । ଏମନ୍ତେ ସେ ଅବଧୂତ ବୋଇଲା । ହେ ମହାତ୍ମା ମୁଁ ଜଗତେ ଅଛୁ । ଜଗତ ମୋତେ ବସ୍ତୁ ପ୍ରାୟେକ ଦିଶଇ । ବିଚିହ ଭ୍ରାନ୍ତ ହୋଇ ପ୍ରକାଶୁ ଅଛୁ । ଜଗତ ମୋହିତ ହୋଇଅଛୁ (୩) ଏମନ୍ତ ବଗୃରଇ । ଆକାଶର ପ୍ରାୟେକ ହୋଇ, ସମସ୍ତ ଠାବରେ ପୂରିଅଛୁ । ମହାଜାଗ୍ରତରେ ବିଶ୍ରାନ୍ତ ହୋଇଥାଇ । ମୋହର ତହୁଁ ଆଉ ବଡ଼ ନାହିଁ । ଏମନ୍ତ ବୋଲି ସେ ଅବଧୂତ ବୋଇଲା । ଏହା ଶୁଣି ସେ ରୁଦ୍ରଗଣ ବୋଇଲା ।

ଜଗତ ବୋଲି କ ବସ୍ତୁ । କେମନ୍ତ ଦିଶଇ ତାହା କହ । ଯୋଗୀ ବୋଇଲା ହେ ବତ୍ସ । ତଳେ ପୃଥିବୀ ବୋଲି ସ୍ଥୂଳ, କଠିଣ ଗନ୍ଧ ପୀତବର୍ଣ୍ଣ ହୋଇ ବଡ଼ ବିସ୍ତାରେକ ହୋଇ ସ୍ଥଳେକ ଦିଶଇ । କୁମର ବୋଇଲା ତଳ କସ । ଯୋଗୀ ବୋଇଲା ଉପର ଜାଣିଲେ ତଳ ଜାଣିମାନ । ତୋତେ ଏତେକେ ତଳ ଉପର ନାହିଁ । ହାଦେ ପ୍ରାଣ ପବନକୁ ଶଙ୍ଖିନୀ ମାର୍ଗେ ନଇଁ ଆକୁଞ୍ଚନ କଲେ ସେ ଯେଉଁ ଆଡ଼କୁ ଗୃଳଇ ତାହାକୁ ଊର୍ଦ୍ଧ୍ୱ ବୋଲି । ଏବେ ତୋର ବଚନ ଜାତ ହେଉଅଛୁ ଯେଉଁ ସ୍ଥଳୁଁ ସେ ମଧ୍ୟ ଅଟଇ । ଅପାନ ପବନ ଯେଉଁ ଆଡ଼କୁ ପେଲଅଛି ସେ ହାଦେ ଅଧ ଅଟଇ । ଏମନ୍ତ ହୋଇ ପୃଥ୍ୱୀ ସ୍ଥଳୀ ଅଛୁ । ଏ ପୃଥ୍ୱୀକି ମେଖଳାକାର ହୋଇ ସମୁଦ୍ର ବେଢ଼ି ଅଛୁ । ଏ ବଡ଼ ବିଚିହ ଅଟଇ । ଫେନ ବୁଦ୍‌ବୁଦ ବୀଚି ଆବର୍ତ୍ତ ଜଡ଼ ଗମ୍ଭୀର ଅନେକ ବିସ୍ତାର । ଏମନ୍ତ ହୋଇ ନୀଳ ଉତ୍ପଳନଳର ପ୍ରାୟେକ ସାଗରେକ ଆଚ୍ଛାଦି ଥାଇ । ଉପରେ ସୂର୍ଯ୍ୟ ହୋଇ ବୋଲି ବସ୍ତୁ ଏକ ପ୍ରକାଶ କରୁଥାଇ । ତାରମାନ ଗଜମୁକ୍ତା ପଟଳ ପ୍ରାୟେକ ହୋଇ ଦିଶୁଥାଇ । ରାତ୍ର ଦିବସ ମାସ କାଳ ଋତୁ ଗଣନା ହେଉଥାଇ ।

---

୧—ଶ୍ବେତ ସାଧିଅଛୁ 'ଖ'

୨—'ଖ' ରେ ନାହିଁ

୩— ଜଗତ ମୋହର ତହିଁ ଅଛୁ 'ଖ'

ଏଥି ମଧ୍ୟେ ପବନ ଅନେକ ସଞ୍ଚରୁ ଥାଇ । ଅନ୍ତରୀକ୍ଷ ମଣ୍ଡଳ ବଡ଼ ବିସ୍ତାର । ଏମନ୍ତ ଅଧିଷ୍ଠାନୀ ଜଗତରେ ଅନେକ ମୂର୍ତ୍ତି ହୋଇ । ଏକପଦ । ଦ୍ୱିପଦ । ଚତୁଷ୍ପଦ । ଅଷ୍ଟପଦ । ବହୁ ପଦ ହୋଇ କୀଟ ପତଙ୍ଗ ସ୍ଥାବର ଜଙ୍ଗମ ମନୁଷ୍ୟ ରାକ୍ଷସ ଗନ୍ଧର୍ବ କିନ୍ନର ପକ୍ଷୀ ମଧ୍ୟ କରି ଅନେକ ଜନ୍ତୁମାନେ ଭେଦେ ହେଉଥାନ୍ତି । ବୃଷ୍ଟି ହୋଇ କଉତୁକେ । ଜଳଧାରମାନେ କେଉଁ ସମସ୍ତରେଟି ବରଷୁ ଥାଇ । ଆହୁରି ବିଚକ୍ଷେକ । ବଜୁଳି ବୋଲି ଜ୍ୟୋତି ଏକ । ସେ କାହିଁ ଥାଇ ନ ଜାଣି । ପରମ ଶୂନ୍ୟରୁ (୧) ଝଟଝଟ (୨) ମାରୁଥାଇ । ଗର୍ଜନମାନ ଆକାଶରେ (୩) ଶୁଭୁଥାଇ । ପଥର ସ୍ୱରୂପେ ପରମ ଶୂନ୍ୟରୁ ପଡୁଥାଇ । ଏ ଗଗନ ମଣ୍ଡଳ ଗୋଟି (୪) ବଡ଼ ବିଚକ୍ଷେକ । ହାଦେ ଶୀତ ପୀତ ହରିତ ଲୋହିତ ଧୂମ ପାଣ୍ଡୁର ହୋଇ ନାନାବର୍ଣ୍ଣ ଧରୁଥାଇ । ଏଥିନ୍ତ ଜଗତ ଧାରଣାରେ ଆମ୍ଭେ ଜୀବମାନେ ଅଛୁ । ଆମ୍ଭଙ୍କୁ କେବଳ ଥୋକାଏ ବେଳ (୫) ଜାଗ୍ରତ ହୋଇ (୬) ଅବସ୍ଥା ଏକ ହୋଇ । ଥୋକାଏକ ବେଳ ସ୍ୱପ୍ନ ହୋଇ (୭) ପ୍ରକାଶ ହୋଇ । ଏଥି ସୂକ୍ଷ୍ମ ଶରୀର ଯେନ ଏହି କଥାମାନ ବିଚାର କରି ଦେଖୁଥାଇ । ତହିଁ ସୁସୁପ୍ତ (୮) ବୋଲି ଅବସ୍ଥାଏ ହୋଇ । ସେହି ଅଜ୍ଞାନ ଅବସ୍ଥା ତହିଁ କିଛି ହିଁ ନ ଜାଣି । ଏମନ୍ତ ଶରୀରେ ହୋଇ ଗ୍ରହଣ କରିଥାଇ । ଏକଥା ଶୁଣି ଗର୍ଭ୍ଭ ପୁରୁଷ ବୋଇଲା । ଶରୀର କେମନ୍ତ ।

ଯୋଗୀ ବୋଇଲା ଏ ବଡ଼ ବିଚାର । ହାଦେ ଚତୁର୍ବିଂଶତି ତତ୍ତ୍ୱ ରୁଣ୍ଡ ହୋଇ ଶରୀରେକ ହୋଇ (୯) । ସ୍ଥୂଳ ଗୋଟିଏ ଉଦେ ହୋଇ । ସେ ସ୍ଥୂଳହିଁ ଆପଣ ହୋଇଥାଇ । ସେ ଶରୀର କଥା ହାଦେ ଶୁଣ । ନବଗୋଟି

---

୧—ସ୍ୱମରେ 'ଖ'
୨—ଝଟକରେ 'ଖ'
୩—ଆକଶରୁ 'କ'
୪—ଗୋଟାରେ 'କ'
୫—'ଖ' ରେ ନାହିଁ
୬—ବୋଲ୍ 'କ'
୭—ବୋଲ୍ 'କ'
୮—ସମ୍ବୃତ
୯—ଚତୁର୍ବିଂଷସ୍ଥାଗତ ବ୍ରହ୍ମହୋଇ ପିଣ୍ଡପ୍ରାପ୍ତେକ ହୋଇ 'ଖ'

ଜଳା (୧) ହୋଇଥାଇ । ଏଥି ଉପର ଖଣ୍ଡ କଠିନ ହୋଇ ଶିର ବୋଲି (୨) । ତହିଁ କୃଷ୍ଣ ବର୍ଣ୍ଣ ହୋଇ ଲୋମ ଲାଗିଏ ଥାଇ । ତହୁଁ ତଳକୁ ହୋଇ ଦ୍ୱାର ଦୁଇଗୋଟି ଦିଶଇ । ତାହା ବଡ଼ ଆୟତନ କରି ନିର୍ମାଣ କରିଅଛୁ (୩) । ସେ ତଳ ହଳ ପାଣି ଫୋଟକା ପ୍ରାୟେକ ଦୁଇଗୋଟି ଅଛି । ଫେଣେ କରି (୪) ଏ ବ୍ରହ୍ମମୟ ପ୍ରପଞ୍ଚ ଦିଶଇ । ତାହାକୁ ଚକ୍ଷୁ ବୋଲି । ସେ ଚକ୍ଷୁ ଦ୍ୱାରର ବେନି ପାରୁଶେ କର୍ଣ୍ଣ ବୋଲି ଜଳା ଦୁଇ ଗୋଟି (୫) ଅଛି । ସେ ରନ୍ଧ୍ର ଫେଡ଼ିଲେ ସକଳ ବର୍ଣ୍ଣ ଉଚ୍ଚାରଣ ଶବ୍ଦମାନ ଶୁଭଇ । ହସ୍ତେ କରି ବୁଜିଲେ କିଛି·ହିଁ ନ ଶୁଭଇ । ଏକା ଘୁଂ ଘୁଂ ହୋଇ ଧ୍ୱନି ବାଜଇ । ତହିଁ ମଧ୍ୟରେ ଚଢ଼େଇ ଅଣ୍ଡ ପରି (୬) ହୋଇ ନାସିକା ବୋଲି (୭) । ଖଣ୍ଡେ ସେ ପୁଟ ଦ୍ୱୟ ହୋଇ । ସେ ଦୁଇ ପୁଟରେ ପବନ ସଞ୍ଚରୁଥାଇ । (୮) । ସେ ପବନ ରହିଲେ ସକୁଟୁମ୍ବ ମରଇ । ~/

କୁମର ବୋଇଲା ମରିବାର କେମନ୍ତ । ଅବଧୂତ ବୋଇଲା ସକଳ ଚେଷ୍ଟା ନ ଜାଣଇ । ସେ ଶରୀର ମୃତ ଗନ୍ଧ ହୋଇ । ସେ ଯେଉଁ ପୃଥ୍ୱୀ ତଳେ କହିଲି ତହିଁ ଲୀନ ହୋଇ । ଆଉବେଳେ ତହିଁ ରହିଲାର ନ ଦେଖି । ଶାସ୍ତ୍ରେ ବୋଲଇ ଲେଉଟି ଦେହ ପାଇ କର୍ମ ବଶେ । କୁମର ବୋଇଲା ଶାସ୍ତ୍ରକଣ । ଯୋଗୀ ବୋଇଲା . ସଙ୍କ ସ୍ୱରୂପ କଥାମାନ କହୁଥାଇ । ତାହା କର୍ଣ୍ଣଦ୍ୱାରେ ଶୁଣୁଥାଇ । ତାହା ଅନ୍ତସ୍କରଣେ ବିଚାରୁଥାଇ । ଏଥି ଉପରେ ସେ ନାସିକା ତଳେ ବକ୍ତ୍ର ବୋଲି ଦ୍ୱାରେକ ଅଛି । ସେ ଦ୍ୱାରେ କହୁଥାଇ । ସେ ଦ୍ୱାର ସବୁ ଦ୍ୱାର ହୁଁ ବଡ଼ ଅଟଇ । ଏହା କଥା ବଡ଼ ଆଶ୍ଚର୍ଯ (୯) । ତାହାର ଗୃହ ପାରୁଶରେ

---

୧—ଜଲ 'କ'
୨—ଶିର ବୋଲି 'ଖ' ରେ ନାହିଁ
୩—ତାହା ବଡ଼ାୟତ ନକର ନିର୍ମାଣ କଲା 'ଗ'
୪—ଯେଣୁକରି 'କ'
୫—ଦୁଇରନ୍ଧ୍ର ଗୋଟି 'ଖ'
୬—ପ୍ରାଏ 'ଖ'
୭—'ଖ' ରେ ନାହିଁ
୮—ପ୍ରସରୁ ଥାଇ 'କ'
୯—ସେ ଦ୍ୱାର କଥା ସବୁହୁଁ ବଡ଼ଇ ବଡ଼ ଆଶ୍ଚର୍ଯ 'ଖ'

କେଶମାନ ବେଢ଼ାଇଅଛୁ । ଜୀର୍ଣ୍ଣ କୂପ ଗୃହ ପାରୁଶରେ ଯେମନ୍ତ ଗୃହମାନେ ଲଗିଥାନ୍ତି ସେହି ପ୍ରକାର । ସେ ବକ୍ରଦ୍ୱାର ସବୁ ଦ୍ୱାରହୁଁ ବଡ଼ ଅଟଇ । ତହିଁ ଭିତରେ ଅମଙ୍ଗଳ ଅଛୁ ଯେ ଅଟଇ ହାଡ଼ । ଏଣେ କର ଅର୍ଗଳ ଦେଇ ଅଛୁ । ତାହାକୁ ଦାନ୍ତ ବୋଲି । ତହିଁ ଭିତରେ ଜିହ୍ୱା ବୋଲି ବନ୍ଧୁ ଏକ ମର୍କଟୀ ଖଟାଇଲୁ ଅଛୁ । ସେ ମର୍କଟିର ଶରୀର ସର୍ପର ପ୍ରାୟେକ ଅଛୁ । ନିରନ୍ତରେ ସ୍ୱାଦୁ ପଦାର୍ଥ ହିଁ ସେ ଲୋଡ଼ଇ । ଜଳେ କରି ନ ଧୋଇଲେ ପୂତି ଗନ୍ଧ ଗନ୍ଧାଇ । ଏଥିତଳେ କଣ୍ଠ ବୋଲି ଶରୀର (୧) ଅଙ୍ଗ ଗୋଟିଏକ ଅଛୁ । ତହିଁ ତଳେ ମର୍ଦ୍ଦଳାକୃତି (୨) ହୋଇ ଗୋଟିଏ କର ଚରଣ ବିକାର ହୋଇ । ଏକ ସ୍ଥୂଳେକ ବିକାର ହୋଇଅଛୁ । ଏମନ୍ତ ସ୍ୱରୂପ ହୋଇ ଦେହ ଅଟଇ । ଏଥକୁ ପଞ୍ଚଭୂତଙ୍କର ସମ୍ବନ୍ଧୁଁ ଆହାର ପଦାର୍ଥମାନ ସେ ବକ୍ରକନ୍ଦର ଭିତରେ ଭରି ଦେଉଥାଇ । ଘଣ୍ଟିକା ବୋଲି ଯେ ତାଳୁକା ଦ୍ୱାରେ ଲମ୍ବିଅଛୁ । ସେ ପବନର ବଳେ ଆହାର ଭିତରକୁ ନେଉଥାଇ । ନେଇ ନାଭି ଚକ୍ରେ ପୂର୍ଣ୍ଣ କରୁଥାଇ । ଏଥେ ଏମନ୍ତ ବିଚକ୍ଷେକ ଅଛୁ । ଜଠରାଗ୍ନି ବୋଲି ପଦାର୍ଥେକ ସେ ନ ଦିଶଇ । ପାଣି ପଡ଼ିଲେ ଆନ ଅଗ୍ନି ଲିଭଇ । ସେ ଅଗ୍ନି ଅଧିକ ଜଳଇ । ସେ ଆହାରମାନଙ୍କୁ ପାକ କରୁଥାଇ । ମଳ ମୂତ୍ର ଦ୍ୱାରେ ଶେଷ ବାହାର ହେଉଥାଇ । ଏମନ୍ତ ପ୍ରକାରେ ଦେହ ହୋଇ । ଏ ଦେହ ଇନ୍ଦ୍ରିୟୁ ସୁଖ ଆବୋରି (୩) ଦୁଃଖ ସୁଖ ପାଉଥାଇ ।

ଏକଥା ଶୁଣି ସେ କୁମର ବୋଇଲୁ । ଆହୋ ତୋତେ ଏତେ ବିକାର ହୋଇ । ଅବିଦ୍ୟା ପ୍ରପଞ୍ଚ (୪) ସେ ଭୂମିରେ ପ୍ରକାଶ ହେଉଅଛୁ । ଏ ଭ୍ରମର ସ୍ୱପ୍ନ ସେହି । ଏ ହାଦେ କଛୁ ନୋହଇ । ଏକା ଶୁଦ୍ଧ ଚୈତନ୍ୟ ମାତ୍ରକ ସେ ଜଗତରେ ଅଛୁ । ଭ୍ରମ ବୁଦ୍ଧିରେ (୫) ତୋତେ ଅବସ୍ଥା ସ୍ୱପ୍ନରେ ଏମନ୍ତ ଦିଶଇ । ହାଦେ ଯେତେ ଲୋକ୍ଷକ (୬)

---

୧—ସବୁ 'କ'.
୨—ସ୍ଥୂଳାକୃତ 'କ'
୩—ସୁଖ ଘେନି 'କ'
୪—ଖ ରେ ନାହିଁ
୫—ଅଣିମା ଚେଷ୍ଟାରେ 'ଖ'
୬—ଲେଖ 'କ'

କହିଲୁ ଏସବୁ ଅନ୍ତଃକରଣ ଭିତରେ ଅଛୁ । ପୁଣି ବାହ୍ୟ ପ୍ରକାର (୧) ଦିଶଇ । ପଞ୍ଚଭୂତଙ୍କର ସଂଯୋଗ ହେଲନ୍ତେ ଇନ୍ଦ୍ରିୟମାନନ୍ତ ରୁଣ୍ଡ କରଇ । କଳ୍ପନା ନିଦ୍ରାରୁ ବୀଜ ସ୍ୱପ୍ନ ପ୍ରକାଶ ହେଉଅଛୁ । ଏସବୁ ମନୋମୟ ବିକାର ସେହି । ମଯ୍ୟାଙ୍କୁ ମାୟା ଦିଶିଲି (୨) ପ୍ରାୟେକ ହେଉଅଛୁ । ସ୍ୱପ୍ନେ ଇନ୍ଦ୍ରଜାଲ ପଟ ପ୍ରଳାପ ପ୍ରାୟେକ ସେହି । ଏହାଶୁଣି ମନେ ମନେ ଗୁଣି ଆଶ୍ଚର୍ଯ୍ୟ ପାଇଲା । ଆମ୍ଭାଙ୍କୁ ଧାମ୍ଭି ବୁଦ୍ଧିରେ ଘାଳିଲା । ଗର୍ବ ଗଳିଲା । ବଣୀ ପାଇଲି । ସ୍ତମ୍ଭୀଭୂତ ହେଲି । କୁମରଙ୍କୁ ବୋଇଲି ତୋ ତହିଁକ ପ୍ରକାଶ ହେଉଅଛୁ । ମୋତେ କହ । କ ଜାଣୁ, କ ଦିଶଇ । ରାତ୍ର ଦିବସ ତୋତେ କ ପ୍ରକାଶଇ । ମାତାର ଜାଗ୍ରତ ସ୍ୱପ୍ନ ସୁଷୁପ୍ତି ତୋତେ କ ଦିଶଇ କହ । ଏବଂଭୂତ ବଚନ ଶୁଣି ସେ ଗର୍ଭ ପୁରୁଷ ବୋଲୁ ଅଛୁ ଆହେ। ତୁ ଯାହା ପଚ୍ଚରିଲୁ । ରାତ୍ରେ କିଛୁ ଦିବସ ପରଯନ୍ତେ କିଛୁ ହିଁ ନ ଦିଶିଲା, ନ ଜାଣଇ । ଜଗତ ଅଜଗତ ମୁହିଁ ମୋହର ଏମନ୍ତ ଭାବ ନ ଜାଣଇ (୩) । ପରମ ଅବ୍ୟକ୍ତ (୪) ସେହି ଜାଣି ନୁହଇ । ମୁହିଁ କ ଭାବରେ ଥିଲି । ପୁଣି କ ହୋଇଲି ଏହା ନ ଜାଣଇ । ସୁକ୍ରମେ ଭ୍ରମର କାଷ୍ଠ ଗୁହାରେ ପଶିଲେ ଯେମନ୍ତ ଧ୍ୱନି ଏକ ଶୁଭଇ । ତେମନ୍ତ ଶବ୍ଦେକ ଏ ରୂପେକ ହୋଇ ଜାତ ହୋଇଲି । ହୋଇ ନାନା ପ୍ରକାରେ ତହିଁ ଶବ୍ଦ ଶୁଭିଲି । ସେ ଏମନ୍ତ ଭାବ ଶବ୍ଦକୁ ଏକେ ହିଁ ମୋହର ଆପୃତ ନୁହଇ (୫) । ଏ ମଯ୍ୟାଙ୍କୁ ମୂଳ ହୋଇ ଯେ ବିଶ୍ୱକର୍ତ୍ତା ଈଶ୍ୱର ଅଛୁ । ସେ ଏହା କେମନ୍ତ କରି କ କ କରଇ କହି ନୋହଇ । କର୍ମେ ହାଦେ ପୂର୍ବ ବିଯୋଗ ସ୍ମରଣ

---

୧—ପୁଣି ବାହାର ପ୍ରକାର ପ୍ରାୟେକ 'କ'

୨—କପିଲି 'କ'

୩—ନ ଥିଲି 'କ'

୪—ଆଦ୍ୟ 'ଖ'

୫—ତଦନନ୍ତରେ ଶ୍ରବଣ ଦ୍ୱାରୁଁ ମୂର୍ତ୍ତିବିବେକ ଜାତ ହୋଇଲି । ସେ ଅନ୍ଧକାର ଭିତରୁ ଶୀତ, ପୀତ, ଲୋହିତ, ପାଣ୍ଡୁର ହୋଇ, ହରିତ ହୋଇ ଜ୍ୟୋତ କଣାମାନେ ନାନା ପ୍ରଂଶ୍ୟମାନ ହୋଇ ଫୁଟୁଥାଇ । ମୁଁ ପୁଣି ତାହା ଦେଖୁଥାଇ । ଏମନ୍ତ ବୁଦ୍ଧି ହୋଇବାର କର ଅନ୍ତଃକରଣ ସବେ ହେଲି ।

କରି (୧) ମୁଁ ଏତେ ଦୂର ଚଳିଗଲି । ହାଦେ ଏଥିରେ ଯେଉଁ ପବନ ପ୍ରକାଶ ହେଉଅଛୁ । ସେ ମାତାଗର୍ଭ ପବନ ବେଗ ହୋଇ ବହିଲେ ମାତାର ସ୍ୱପ୍ନ ବୋଲି ଜାଣଇ । ନାଡ଼ୀଚକ୍ର ଚଳିଲେ ତାହାର ବଚନ ବୋଲି ଜାଣଇ । କଡ଼ଲେଉଟାଇଲେ ବଡ଼ ଦୁଃଖ ପାଇ । କ୍ରମେ ଶୀତଳ ଉଷ୍ଣେ ସନ୍ଧି ନୋହିଲା (୨) ଏ ଉଦରେ । କେଉଁ ସମୟରେଟି ଶୀତଳ ହୋଇ ତା ଭାବେ କହଇ । କେଉଁ ସମୟରେ ଉଷ୍ଣହୋଇ । ଏଥିକୁ (୩) ଅଧିକ ପବନମାନେ କର୍ଣ୍ଣ ନାସିକା ଦ୍ୱାରେ ପଶୁଥା'ନ୍ତି । ହାଦେ କଉଁଣସି ବେଳେ ଅନ୍ଧକାର ତେଜୋମୟ ହୋଇ ଜ୍ୟୋତି ପ୍ରକାଶଇ । ସେ ଦିବସ ହୋଇବଟି ତୁମର ମତେ । ଅହୋ ଏଥିକୁ ସ୍ମରଜାତ ହୋଇଲଉଁ ମୁଁ ଦୁଃଖୀବୋଲି ଜାଣଇଁ । ଶିର ତଳକୁ ହୋଇଲେ ଜନମ ସ୍ଥଳବାର ଜାଣଇ । କେଉଁଣସି ବେଳେ ପୂର୍ବ ଦକ୍ଷିଣକୁ ଯାଇ । କାହିଁ ନ ଲଗଇ । ସମସ୍ତ ଭାବ ବିଲକ୍ଷଣକୁ ଯାଇ । ସେ ଅବୀଜ ବିଜ୍ଞାନ ସୁଖ ଅଟଇ । ତହୁଁ ବୁଦ୍ଧି ଜ୍ଞାନ ହୋଇବା ମାନ୍ସକେ ଜଗତ ଭାବ ଆବୋରଇଟି । ହାଦେ ଅହଂକାର ଜାତ ହେବା ମାତ୍ରକେ ସକଳ ଦୁଃଖ ହୋଇଟି ।

ଏମନ୍ତ ବୋଲି ରୁଦ୍ରଗଣ ବୋଇଲି । ଏ ଜଗତ ସ୍ୱପ୍ନସିଦ୍ଧି ସେଟି । ଭ୍ରମିବା ମାତ୍ର । ଏଥୁ ବାହାର ହୋଇଲେ ବିବିଧା ଭାବେ ମୋହ ପାଇ । ଭ୍ରମ ସ୍ୱରୂପେ ପ୍ରକୃତି ମୟୀ ମାୟାବଳେ ଆବୋରଇ । ମୁହିଁ ହାଦେ ଯାହାକୁ ଭୟ ପାଇଅଛି । ହାଦେ ଦର୍ପଣ ଭିତରେ ଯେମନ୍ତେ ପର୍ବତ ଦିଶଇ । ବଟ ବୀଜ କଣିକାରୁ ଯେମନ୍ତ ବୃକ୍ଷ ପ୍ରକାଶଇ । ସେହି ମତି ପ୍ରମାଣୁ ମାତ୍ରକେ ଏ ଜଗତ ଆଭାସଇ । ପ୍ରତିଭା ପ୍ରାପ୍ୟ ପ୍ରତିବିମ୍ବ (୪) ଅଛି । ବୁଦ୍ଧିର ବାହ୍ୟ ଶୁଦ୍ଧ ଭାବୁଁ କରି କଳ୍ପି ଅଛି । ବସ୍ତୁମୟେ କରି ଏ କଳ୍ପନାରୁ କରି ନାନା ପ୍ରପଞ୍ଚ ଜଗତ ଉଦେ ହେଉଥାଇ । ଜଳରୁ ବିବିଧ ତରଙ୍ଗ ଭ୍ରାନ୍ତି ଯେମନ୍ତ ସେହିମତି କଳ୍ପିତ ସେଟି । ଆପଣା ତହୁଁ ସ୍ଫୁରିଲି ମାୟା । ଆପଣାକୁ ଅଜ୍ଞାନ-ଭାବ କଲି । ଜୀବକଲି । ଜନ୍ମ ମରଣ ଦେଲି । ହେ ମହାତ୍ମା ମୁଁ ଏଥୁ ବାହାର ହୋଇବା ସମୟେ କେଉଁ

୧—ସ୍ଥଳରୁ କରି 'ଙ'
୨—ସନ୍ଧି ନ ହୋଇ 'ଙ'
୩—ଏଥିରୁ 'ଙ'
୪—ପ୍ରତିବିମ୍ବ ହୋଇଅଛୁ ।

ଉପାୟେ ଅଜ୍ଞାନ ନୋହିବ । ଏହି ସୁମରଣା ଥିବ । ଏମନ୍ତ ଉପାୟେ ଜାଣିଥିଲେ (୧) କହ । ଏହା ଶୁଣି ଅବଧୂତ ବୋଇଲା । ହେ ବତ୍ସ ! ନାଭି ପଦ୍ମ ଆବୋରି କୁଣ୍ଡଳମୀ ନାମ ଶକ୍ତି ଏ ଅଛି । ସେ ଶକ୍ତି ଶଆଁ ସ୍ୱରୂପ ଅଟଇ । ଚୈତନ୍ୟ ଏହା ସକାଶୁଁ ହୁଅଇ । ଏ ନିଦ୍ରା ଯାଇଥିଲେ (୨) ଅଜ୍ଞାନ ପୁରୁଷ ଆବୋରଇ । ଏ ଫେରୁ (୩) ଧରି ଉର୍ଦ୍ଧ୍ୱିଦ୍ର ହୋଇଲେ ଟେକି ରହିଲେ ବାହାର ବାସ୍ତରି ସହସ ନାଡ଼ୀରେ ପବନ ସଞ୍ଚରଇ । ମନର ଚଞ୍ଚଳ ଭାବୁଁ କରି ନିଦ୍ରାଯାଇ । ଏହାର ନିଦ୍ରା ଭଗ୍ନକରି ସାବଧାନ ଥିଲେ ଅଜ୍ଞାନ ନୁହଇଟି । ଏହା ଶୁଣି ସେ କୁମର ବୋଇଲା । ଯାହା କହିଲ ଦେଖିବା ଏହି ହମାନ (୪) ମତ ଯେଣି । ହାଦେ ମୋହମତ ଏମନ୍ତ । ଅଜ୍ଞାନ ଯେ ସେ କାଳ ସ୍ୱରୂପ ମାୟା । ଏ ମାୟା ଜଗତକୁ ଆକର୍ଷି ସଂହରଇ । ଜାତକରଇ । ଏକାଳ ପ୍ରକୃତି ଯେ ଚୈତନ୍ୟ । ପରମେଶ୍ୱରଙ୍କୁ ଆଶ୍ରେ କରି ଏହାର ଏତେ ଶକ୍ତି । ଏ ମାୟା ପରମେଶ୍ୱରଙ୍କର ଦାସୀ (୫) ଅଟଇ ।

ପରମେଶ୍ୱରଙ୍କୁ ଆଶ୍ରେକରି ଅନବରତ ଚିନ୍ତା କରୁଥିଲେ କୁଣ୍ଡଳମୀ ତାହାର ଗୁଣେ ଶଆଁଇନ । ଅଜ୍ଞାନ ଆନ୍ତରଇ ନାହିଁ । ଯେମନ୍ତ ସୂର୍ଯ୍ୟଥିଲେ ଅନ୍ଧକାର ନଥାଇ ତେମନ୍ତ ହ୍ରାସ୍ୱେକ ଅଟଇ (୬) । ହାଦେ ସେ ପରମେଶ୍ୱରଙ୍କୁ ଶାସ୍ତ୍ରମାନେ କହିଅଛନ୍ତି । ନିଳୋତ୍ପଳ ଦଳ ସ୍ୱରୂପ କମଳ ପତ୍ରାକ୍ଷ ବୋଲି (୭) ଏହାଙ୍କୁ ଯତ୍ନ କଲେ କୁଣ୍ଡଳମୀ ଶଆଇଟି । ଅଜ୍ଞା ଆନ୍ତରଇ ନାହିଁ । ଏମନ୍ତ ବୋଲି ସେ କୁମର ବୋଇଲା । ଏହା ଶୁଣି ଅବଧୂତ ଚମତ୍କାର ପାଇଲା । ମନେ ମନେ ବୋଇଲା । ଏମନ୍ତ ଗର୍ଭିତ କାହିଁ ଦେଖିଲି ନାହିଁ ।

---

୧ — ଏହା ଜାଣିଲେ 'ଖ'
୨ — ପାଇଲେ 'କ'
୩ — ଫେରି 'ଖ'
୪ — ମାଇନ୍ୟ ମତ 'କ'
୫ — ଦାସ 'ଖ'
୬ — ସେହି ମତ ଅଟଇ 'କ'
୭ - ନୀଳୋତ୍ପଳ ଦଳ କମଳ ପ୍ରଭାକ୍ଷ ବୋଲି 'ଖ'

ଅବା କଉଁଶସି ବଗପାଳ ଗୋଟିଏ ଏଥେ ରହିଲା । କ ପ୍ରତକ୍ଷେ (୧) ଈଶ୍ୱର ଅବା ଅଇଲା । ଦେଖି ଧର୍ମ ସ୍ଥାପନ ନମିତ୍ତେ ଏହାକୁ ପରମ ଗୁମତ କଥାଏ ପଚ୍ଛରିବା । ଏମନ୍ତ ବୋଲି ଗର୍ଭପୁରୁଷକୁ ଡାକିଲା । ଆହେ। ପୁରୁଷ । ମୋହ ମତେ କାହିଁ ସୁଖ ନୋହିଲା ପ୍ରାପ୍ୟେକ ଲଗିଲା । ହାଦେ ମନ୍ୱାଦ ଧର୍ମ୍ମ ଶାସ୍ତ୍ରମାନ ବୋଲଇ ପୁଣ୍ୟ କର୍ମମାନ କରି (୨) ପର ଲୋକକୁ ଶ୍ରେୟୁ କରି ପାଇ । ଏଥି ଅହଂକାର ସେଠି । ପ୍ରଥମୁଁ ଧର୍ମ କରିବାରତ ଦୁଃଖ । ତଦୁପର ପରଲୋକ ଶ୍ରେୟୁ ବୋଲି କର୍ଲି ଦୁଃଖ ପାଇ । ସାଂଖ୍ୟମତେ କହଇ । ଦେହ ଇନ୍ଦ୍ରିୟାଦିହୁଁ ବିରକ୍ତ ହୋଇ ଆତ୍ମା ମୁକ୍ତ ସ୍ୱରୂପେ ସର୍ବଦା ଅଛୁ ବୋଲି ବିଚ୍ଛରିଲେ । ଏ ପଦହିଁ ନରାଶ ଦୁଃଖ ସେଠି । କେବଳ ଭବେ ଅନେକ କାଳ ନ ଥାଇ । ଅନେକ କାଳ ଏହି ମତ ଥିଲେ ହେଁ ଏହି ତ ଦୁଃଖ ସିନା । ପାତଞ୍ଜଳ ମତ ବୋଲି କଛୁ ହିଁ ନାହିଁ । ଜ୍ଞାନହିଁ ନୁହଇ । ଚୈତନ୍ୟ ହିଁ ମାୟା ସେଠି ବୋଲି ଏମନ୍ତ ବିଚ୍ଛରିବା । କଛୁ ହିଁ ନ ଜାଣିଲେ ତ ଜନ୍ତ (୩) ପ୍ରାପ୍ୟେକ ହୋଇ ଅଜ୍ଞାନ ଲୟୁ (୪) ହୋଇଲେ ହେଁ ଏହିତ ଭଲ ନୋଇଲା (୫) । ଶ୍ରେୟୁତ ନୋହିଲା । ମୀମାଂସାମତ ବୋଲଇ । କର୍ମ କଲେ ଈଶ୍ୱରର ପଦ ପାଇ କର୍ମେ ଦୁଃଖ ମହାଶ୍ରମ । ଏ ଦୁଃଖ କ ସହି ହୁଅଇ ନାହିଁ ଈଶ୍ୱର ହୋଇ । ଈଶ୍ୱର ଚହ୍ନିତ ବୃଷଭ ଗୋଟିଏ ଚଢ଼ି ଡ଼ମ୍ବରୁ ଗୋଟିଏ ବଜାଉ ଥାଇ (୬) । ଘର କରି କୈଳାସ କନ୍ଦରେ ରହି ଥାଇ । କାମ କ୍ରୋଧେତ ଥାନ୍ତି । ସେବା କଲା ଲୋକଙ୍କୁ ସଂସାର ସୁଖ ଦେଇ, ପୁତ୍ର ଦାର ମମତା ଥାଇ । ପ୍ରଳୟୁ ମାନଙ୍କରେ ଦୁଃଖ ସହି । ଗୋଟିଏ ଦେନ ଅଚଳ ସମାଧିରେ ବସିଥାଇ । ଏହାତ ଦୁଃଖହିଁ ସେଠି । ଏଥି କ ଫଳ ହୋଇଲା । ବୈଶେଷିକ ମତ ବୋଲଇ । ଜଗତ ଯାକ କେମନ୍ତ ଗୋଟାଏ ଜନ୍ତୁ ପରିଏକ ହୋଇଅଛି । ପରମେଶ୍ୱରତ ଏ । ଏଥିରେ କ ସୁଖ ପାଇ ହୋଇଲା ।

---

୧ — ପ୍ରତ୍ୟେକ୍ଷ 'କ'

୨ — ପୁଣ୍ୟ କରି 'ଖ'

୩ — ଜଡ଼ 'କ'

୪ — ଲକ୍ଷ 'ଖ'

୫ — ଏହତ ଭସ୍ମ ହୋଇଲା 'ଖ'

୬ — ବାଉଥାଇ 'କ'

କୌମାରିକ ମତ ବୋଇଲେ । ଏ ବ୍ରହ୍ମାଣ୍ଡ ସ୍ୱରୂପ ପୁରୁଷ ଯେ ବିଷ୍ଣୁ । ଏହାର ପାତାଳ ମାନେ ଚରଣ । ସମୁଦ୍ରମାନେ ପେଟ । ବଡ଼ବାନଳ ଜଠରାଗ୍ନି । ଅନ୍ତରୀକ୍ଷ ଶରୀର । ଉପର ସାତଲୋକ ମୁକୁଟ (୧) । ଚନ୍ଦ୍ର ସୂର୍ଯ୍ୟ ଚକ୍ଷୁ । ପାତାଳ ବିବର ନାସିକା । ଅଣଗୁଣ ପବନ ନିଶ୍ୱାସ । ଧର୍ମଶ୍ରୋତ୍ର । ଯମଜିହ୍ୱା । ସରସ୍ୱତୀ ବଚନ । ବ୍ରହ୍ମାଇନ୍ଦ୍ର ଦୁଇଭୁଜ । ପରମାତ୍ମା ବିଷ୍ଣୁ । ମନ ଈଶ୍ୱର । ଚେଷ୍ଟା ମହାମାୟା । ଏମନ୍ତେ ଆତ୍ମା ପରମେଶ୍ୱର ବୋଲି କଲ୍ପି ଏହାକୁ ଭାବିବା । ଏହାକୁ ଭାବନା ସିଦ୍ଧ କରି ବ୍ରହ୍ମାଣ୍ଡ ମତ ଦେହ ଗୋଟିଏ ପାଇଲାଟି । ପାଇଲେ କି ଫଳ ହୋଇଲା । ତଦନ୍ତରେ ପାଶୁପତମତମାନେ ବୋଲନ୍ତି । ଜଗତ ଶିବ ଶକ୍ତି ହୋଇ ।

କେମନ୍ତ ପ୍ରାୟେ ହୋଇ । ଚନ୍ଦ୍ର ଶକ୍ତି, ସୂର୍ଯ୍ୟଶିବ । ଆତ୍ମାଶକ୍ତି ପରମ ଶିବ । ପୃଥ୍ୱୀ ଶକ୍ତି, ମେରୁ ଶିବ । ସମୁଦ୍ର ଶକ୍ତି, ବଡ଼ବାନଳ ଶିବ । ଶରୀର ଶକ୍ତି, ପବନ ଶିବ । ପବନ ଶକ୍ତି, ମନ ଶିବ । ମନ ଶକ୍ତି, ଚୈତନ୍ୟ ଶିବ । ଚୈତନ୍ୟ ଶକ୍ତି, ମନ ଶିବ । ଏବଂଭୂତ ପ୍ରକାରେ ମନ ଶିବ କରି ଜଗତ ଚିନ୍ତନ୍ତି । ଏମନ୍ତ କରି କଲ୍ପି ମତ୍ତୁଥିଲେ କି କାର୍ଯ୍ୟ ହୋଇବଟି । ନ୍ୟାୟ ଶାସ୍ତ୍ରମତେ ବୋଲଇ । ପରମେଶ୍ୱରହିଁ ସେ ଅଛି । ଆନ ବସ୍ତୁ ନାହିଁ । ଏହି କି ହୋଇଲାଟି । ଯେବେ ପରମେଶ୍ୱର ଅଛି ଆନ ବସ୍ତୁ ନାହିଁ । ଏହାର ଦୁଃଖ ଭାବ କିମ୍ପାଇଁ । ପରମେଶ୍ୱର ଥିଲେ ନ ଥିଲେ ହେଁ ଏହାର ହାନି ବୃଦ୍ଧି ନାହିଁ । ପରମେଶ୍ୱରଙ୍କୁ ଜାଣି ଏହା ଜୀବ ଭାବତ ନ ପାରୋଇଲା । ତର୍କ ଶାସ୍ତ୍ରମତେ ବୋଲଇ । ଆକାଶର ପ୍ରାୟେ ଆତ୍ମା ସର୍ବବ୍ୟାପ୍ତ ସଦାନନ୍ଦ ସର୍ବ ସମ୍ପୂର୍ଣ୍ଣ ହୋଇ ପୂରିଅଛି । ଏମନ୍ତ ବୋଲି ଆତ୍ମାକୁ ଆକାଶ ମତକରି । ଆକାଶକୁ ଧ୍ୟାନ କରି ଆକାଶ ଖଣ୍ଡେ ହୋଇଲାଟି । ଏହି କି ଭାବ ହୋଇଲା । ତହୁଁ ଅନ୍ତରେ ବୌଦ୍ଧମତ ବୋଲନ୍ତି ଦେହଥିଲେ ସେ କାର୍ଯ୍ୟ । ଏ ଦେହ ସୁଖ ମାନଙ୍କର ସଦନ । ଏ ଥିଲେ ହେଁ ଅବା କି କାର୍ଯ୍ୟ । ପୁଣି ଆତ୍ମା ବ୍ୟକ୍ତ ଏତ କିଛି ହିଁ ନୁହଇ ।

ଆତ୍ମା ମିଛ ହୋଇଲା ଭୋଗତ ବର୍ଣ୍ଣିଲେ ନରକ । ଏତେକେ ଏଣେକ କାର୍ଯ୍ୟ । ଆରହତ ମତ ବୋଲଇ । ଆତ୍ମାଟି ସତ୍ୟ ସ୍ୱରୂପ ।

---

୧—ଶିର 'କ'

ଚୈତନ୍ୟ ହୋଇ ଶକ୍ତି ଗୋଟିଏ ହୋଇଲେ ହେଁ ଅବା କ କାର୍ଯ୍ୟ । ଚୈତନ୍ୟ ଜାଣିମା ପଦାର୍ଥ । ଏମନ୍ତ ହୋଇଲେ ହେ ଜାଣିଜାଣି ମଲା ଅନେକ କାଳଯାଏ । ଏହାକ ସୁଖ । କାପାଳିକ ମତ ବୋଲଇ । ଦେହ ସିଦ୍ଧହୋଇ । ଆସନ ଯୋଗ ଅଭ୍ୟାସେ ଉଡ଼ିବା ଆକାଶେ ପବନ ହୋଇ । ଏଥିତ ଧର୍ମକଥା ନାହିଁ । ଚଢ଼ଇ ପ୍ରାପ୍ତ ହୋଇ ଆକାଶ ମଣ୍ଡଳେ ବୁଲୁଥିଲେ ହେଁ କ କାର୍ଯ୍ୟ ହୋଇଲାଟି ମାଗୁଣା ଉଡୁନଥାଇ କ । ଏ ଈଶ୍ୱର ସ୍ୱରୂପ ଭ୍ରମ ସିନା । ତଦନ୍ତରେ ଲୌକିକ ମତ (୧) ବୋଲଇ । ପ୍ରାଣ ପବନ ସଙ୍ଗତେ (୨) ଚୈତନ୍ୟ ଅଛି । ନୋହିଲେ ଜଡ଼ (୩) ପ୍ରାପ୍ତେକ ଲୟ ହୁଅଇ । ପ୍ରାଣ ପବନକୁ ନିରନ୍ତରେ ଜାଗିଥାଅ । ଏ ସ୍ଥିର ହୋଇଲାଟି (୪) । ଜଗି ଜଗି ମହାଶ୍ରମ ପାଇ ମଲେବ । ତଦୁପରି (୫) ବୃଦ୍ଧାନୁ ପାସକ ମତ ବୋଲଇ । ଜୀବ ବ୍ରହ୍ମ ହୋଇ କରି ଜୀବ ବ୍ରହ୍ମ ବୋଇଲେ ହେଁ ଜୀବ ଗୋଟାକୁ ବ୍ରହ୍ମବୋଲି ଭାବୁଥାଇ । କ ସୁଖ ହିଁ ହୋଇଲାଟି (୬) । ପାଷାଣ୍ଡ ମତେ ବୋଲନ୍ତି । ଦେହ ଆତ୍ମା ଏସ୍ଥିର ରହି କସ ଅବା । ସ୍ୱପନକୁ ସତ ବୋଲି କ । ନବଦ୍ୱାର ଘରର କମେରଦା ମଝିରେ ଆତ୍ମାପାପ (୭) ପ୍ରାପ୍ତେକ ହୋଇ ପଶିଅଛି । ଏମନ୍ତ ବୋଲି ଆତ୍ମାକୁ ପାପର ପ୍ରାପ୍ତେକର ଜଗୁଥିଲେ ହେ କ କାର୍ଯ୍ୟ । ଶାକ୍ତିକ (୮) ମତେ ବୋଲଇ ସମସ୍ତ ପାଶୋରିଲେ ଯେ ରହଇ ସେ ଆତ୍ମା । ଏମନ୍ତ ବୋଇଲେ କ ଭାବ ହୋଇଲା । ଉଲଗ୍ନ ସିଦ୍ଧି ବୋଲଇ (୯) । ଉପନିଷଦ ମତେ ବୋଲଇ ଚୈତନ୍ୟ ମାତ୍ର ହିଁ ସେ ଏ ଜଗତରେ ଅଛି । ଆତ୍ମା ପ୍ରଭାବ ଏ ଜଗତ ଏମନ୍ତ ହୋଇଲେ । ଆତ୍ମାର ପ୍ରତିଭାସ କଥା ଜଗତ ବୋଲି

---

୧—ମତରେ 'କ'
୨—ସଙ୍ଗମେ 'କ'
୩—ଜଡ଼ 'କ'
୪—ହୋଇଲାଟି ସ୍ଥିତି 'କ'
୫—ତଦନନ୍ତର 'କ'
୬—ହୋଇବ 'କ'
୭—ପାପ୍ତ 'କ'
୮—ସାତ୍ତ୍ୱିକ 'ଖ'
୯—'ଖ' ରେ ନାହିଁ ।

କଲ୍ପି ମରୁଥିଲେ ହେଁ କି ସୁଖଟି । ବେଦାନ୍ତ ଶାସ୍ତ୍ର ବୋଲଇ । ଆନନ୍ଦ, ଅନନ୍ତ, ଅମୃତ, ଅଭୟ, ସତ୍ତ୍ୱ ବ୍ରହ୍ମମୟ ଜ୍ଞାନ । ଏମନ୍ତ ହୋଇଲେ କି ସୁଖ । ଏହା ଜାଗ୍ରତରେ ନ ଜାଣଇ ସ୍ୱପ୍ନ ହୋଇଲେ ହେଁ ନୁହଇ । ସୁସୁପ୍ତିରେ ଙ୍କି ଜ୍ଞାନ ବୋଇଲେ ଶିଷ୍ୟ ମିଥ୍ୟା ଗୁରୁ ପାଇଲା । ନାଏକଗଣ, ଶିଷ୍ୟ ଜଡ଼, ପଡ଼ାଇବାସ୍ଥ କାଲ । ଏହାଙ୍କର ତାହାଙ୍କର ଯେମନ୍ତ ସବୁ ଏମନ୍ତ ପରି ଲୋକ୍ଟଏ ସେଟି । ଗଧ (୧) ମାନଙ୍କୁ ଦାଉଣୀ ପଛେ ବାନ୍ଧି ବୁଲଇବା ପରିଏ ସେଟି । ନବଡ଼ାନ୍ଧକାରେ କେହିତ ସୂକ୍ଷ୍ମ ନ ଜାଣିଲେ । ଦେବତା ପଦ ହିଁ କିସ ପଦ । ଯେବେ ସମ୍ବନ୍ଧ କରି ବାଞ୍ଛାକରିବା । ସେମାନେ ହେଁ ଗୁରୁଦତ୍ତ ବାଞ୍ଛିତ ଧର୍ମ ବିନା । ସ୍ୱର୍ଗନ୍ଦ୍ର ଚ୍ୟୁତ ହେଉଥାନ୍ତି । ଚିନ୍ତାମଣି ମତ ବୋଲଇ ଏମନ । ଯହିଁ କି (୨) ଧ୍ୟାନ କରିବ ସେହି ଭାବ ହୋଇ । ହୋଇଲେ କୃତକାର୍ଯ୍ୟ କର୍ତ୍ତା ବ୍ରହ୍ମା, ଏହାହୁଁ ତ ବଡ଼ପଦ ନାହିଁ । ବ୍ରହ୍ମପଦକୁ ବଡ଼ର ମନଧ୍ୟାନ ଦେବା ।

ମନ ଦେଇକରି ବ୍ରହ୍ମ ହୋଇବା । ତେଣେ କରି କି କାର୍ଯ୍ୟଟି । ମୁଣ୍ଡ ଗୃହଗୋଷ୍ଠା ହୋଇ । ହଂସ ଚୋଟିଏ ଚଢ଼ି ସୃଷ୍ଟି ନିରନ୍ତରେ କରିବାରେ ଅବସର ନ ଥାଇ । ପ୍ରାନ୍ତେ ପୁଣି ସନ୍ନିପାତ ବ୍ୟାଧିକରି କାଳର ବଶକୁ ଯିବ । ଏହା କି କଥାଟି । ଏତେକେହେଁ କଉଣସି ମତରେହେଁ କେହି ଧର୍ମ ସୂକ୍ଷ୍ମ ନ ଜାଣି ବୁଲି ମରୁଥାନ୍ତି । ଅହଂକାରୁ ଋଷିମାନେ ଯେ ଯାହାର ମତ ବଳାଇ ପରୀକ୍ଷା କରି ଗ୍ରନ୍ଥ ଲୋକ୍ଟଏ କଲେ । ଏତେକ କହି ସେ ଅବଧୂତ କୁମରକୁ ବୋଇଲା, ବାବୁ ଏବେ ପରମ ଶ୍ରେୟ ପରମଶାନ୍ତ (୩) ପରମାନନ୍ଦ । ପରମ ସୂକ୍ଷ୍ମ ସ୍ୱରୂପ ହୋଇ କେଉଁ ପଦେ ଅଛନ୍ତି ତାହା ମୋତେ କହ । ତୁହି ମୋହର ଗୁରୁ ହୋ ମୋତେ ଅନୁଗ୍ରହ କର । ସେ ଅବଧୂତ ହିଁ । କୁମର ପୂର୍ବ ସମ୍ବାଦ ଶୁଣିଲା ଯହୁଁ । ବିରକ୍ତ ପାଇ ତାହାର ଏତେ ବୁଦ୍ଧି ହୋଇଲା ତହୁଁ । ଏମନ୍ତେ ସେ ଅବଧୂତ ପୁରୁଷ ବିରକ୍ତ ପାଇ, ଜ୍ଞାନାନନ୍ଦ ପାଇ ଅମୃତ ଖାଇଲା ରାକ୍ଷସ ପରି ହୋଇ (୪)

---

୧—ଅନ୍ଧମାନଙ୍କୁ 'କ'
୨—ଯାହାକୁ 'ଖ'
୩—ପରମ ବିଶ୍ରାନ୍ତ କହ 'କ'
୪—ଜ୍ଞାନାନନ୍ଦ······ହୋଇ ପର୍ଯ୍ୟନ୍ତ 'ଖ' ରେ ନାହିଁ ।

କଉଣସି ମତରେ ବିଶ୍ରାନ୍ତ ଜ୍ଞାନାନନ୍ଦ ସୁଖ ପାଇଲ ନାହିଁ । ଏହା ଶୁଣି ସେ କୁମର ବିଚାରିଲା । ଏହାର ବୈରାଗ୍ୟ ଜାତ ହୋଇଲା । ଏ ବଡ଼ ଦୁଃଖୀ ଅଟଇ । ପରମାନନ୍ଦ ପଦ ଏ ପାଇନାହିଁ । ଏମନ୍ତ ବୋଲି ସେ କୁମର ଅବଧୂତକୁ ବୋଲୁଅଛୁ । ଆହେ। ମହାତ୍ମା ତୁ ମୋତେ ଯେତେ ମତ (୧) ମାନ ଭିନ୍ନ ଭିନ୍ନ କରି କହିଲୁ । ଏ ହାଦେ ସବୁ ଏକାମତେ । ଏହା ସୂକ୍ଷ୍ମ ମତ ପଣ୍ଡିତମାନେ ଜାଣନ୍ତି । ଏସବୁ ମତମାନଙ୍କରେ ଆତ୍ମଜ୍ଞାନ ରସ ଅଛୁ । ତୁ ଯହୁଁ ପରାପର ପାଇନାହୁଁ ଏ ମତମାନଙ୍କୁ ଆଦର (୨) କଲୁ । ହାଦେ ଜ୍ଞାନ କହିଲେହେଁ ନ ଜାଣି ଅଧିକାରୀ ନ୍ୟାୟେ, ପିପିଲିକା ମତେ, ଯୋଗ ଯୁକ୍ତେ, ବାସୁଦେବ ଭକ୍ତେ, ବିଷୟୀ ତ୍ୟକ୍ତେ (୩) ପାଇ । ତୋହର ଅନ୍ତଃକରଣ ଅଶୁଦ୍ଧ ହେବୁଁ କରି ରଯ, ତମ ଯହୁଁ ନାଶ ହୋଇନାହିଁ (୪) । ତେଣୁ ଆତ୍ମଜ୍ଞାନ ଆନନ୍ଦ ରସ ପାଇନାହୁଁ (୫) । ହାଦେ ଜ୍ଞାନାନନ୍ଦ ରସ ଶୁଣ । ଇନ୍ଦ୍ର, ଚନ୍ଦ୍ର, ସୂର୍ଯ୍ୟ, ରୁଦ୍ର, ବ୍ରହ୍ମା, ବିଷ୍ଣୁ, ସାର୍ବଭୌମ ଚକ୍ରବର୍ତ୍ତୀମାନ, ଦକ୍ଷ, କିନ୍ନର, ଗନ୍ଧର୍ବ, ଦିଗପାଳ, ଏମାନଙ୍କର ସମସ୍ତଙ୍କର ହିଁ ସୁଖମାନ ଚୂର୍ଣ୍ଣ କରିବା କଲେହେଁ ସେ ପରମାନନ୍ଦ ପଦକୁ (୬) ନ ଅଣ୍ଟଇ । ତିରଣକୁ (୭) ମେରୁ ଯେତେ ଅନ୍ତର, ପୃଥ୍ୱୀକୁ ଅଣୁ ଯେତେ ଅନ୍ତର । ଯେଉଁ ଜ୍ଞାନର କ୍ଷମା ଶକ୍ତିରୁ କଉଣସି ହିଁ କଣା (୮) ମାତ୍ରକେ ଏ ଚନ୍ଦ୍ରାଦି ତ୍ରିଦଶାଦି (୯) ଭୂତମାନେ ବିହରୁ ଅଛନ୍ତି । ସେ ଆତ୍ମାର ଦାହକ ଶକ୍ତିରୁ ଟି ପରମାଣୁ କଣାକେ ସକଳ ତେଜ ହେଉ ଅଛନ୍ତି ।

ସେ ଆତ୍ମାର ହାଦେ ବଡ଼ପଣ ଶୁଣୁ । ଅଶେଷ କୋଟି ବ୍ରାହ୍ମଣମାନେ ହେ ଭ୍ରାନ୍ତିରୁ ଏମନ୍ତ ଭାବେ ଦିଶନ୍ତି । ହାଦେ ବ୍ରହ୍ମାଣ୍ଡ

---

୧—କଥା
୨—ଅଣାଦର 'ଖ'
୩—ବିପର୍ଯ୍ୟାନୁ ମତେ
୪—ନ ଯାଆନ୍ତି 'ଖ'
୫—ନାହାନ୍ତି 'ଖ'
୬—କଣିକାକୁ 'କ'
୭—ତୃଣକୁ 'ଖ'
୮—କଳନା 'ଖ'
୯—'ଖ' ରେ ନାହିଁ ।

ଦ୍ରଷ୍ଟା । ସର୍ବଶ୍ରୋତା । ସର୍ବଜ୍ଞାତା । ସର୍ବହନ୍ତା । ସର୍ବସଂହର୍ତ୍ତା ସମସ୍ତଙ୍କ ସେ । ତହୁଁ ବ୍ୟତିରେକେ ବସ୍ତୁ ନାହିଁ । କୋଟି କୋଟି ବ୍ରହ୍ମାଣ୍ଡମାନେ ହେ ଭ୍ରାନ୍ତିରେ ପୁଣି ପୂରିଅଛୁ । ପୁଣିତ ଯେ ହୋଇଥାନ୍ତି । ସେ ସାନ ପଣେ ସହସ୍ର ପରମାଣୁ ହୁଁ ପରମାଣୁ ଅଟନ୍ତି । ଚିଦାନନ୍ଦ ସ୍ୱରୂପ । ଆନନ୍ଦ କୈବଲ୍ୟ ପରମ ଅବ୍ୟକ୍ତ ଏକାତ୍ମକ ବୋଧମୟ ସାକ୍ଷ୍ୟ ସ୍ୱରୂପ ଅଟଇ । ଏହା ତୁ କହିଲେ ହେଁ କାହୁଁ ଜାଣିବୁ ଯେମନ୍ତ ସେ ପଥର ଉପରେ ବୀଜ ବୁଣିଲେ ନ ଉଠଇ । ସଂସ୍କାର ଭୂମିରେ ବୁଣିଲେ ସେ ଉଠଇ । ତୁ ପାତ୍ର ନୋହିଲୁ ହୋଇ । ତୋତେ ବୋଧ କାହୁଁ ହୋଇବ । ଯେଉଁ ଭୂମି ଉପରେ ଯେଉଁ ଭୂମି ହୁଅଇ ତାହା କହି ନୁହଇ । ଶିଷ୍ୟକୁ ତାହା ଇଚ୍ଛାଏ ପ୍ରକାଶ ହୁଅଇ । ଯହୁଁ ସେ ମନ ବଚନକୁ ଅଗୋଚର କହି ନୁହଇ (୧) ।

ଏହା ଶୁଣି ଅବଧୂତ ବୋଇଲା । ହାଦେ ମୁଁ ସାତ ସହସ୍ର ବର୍ଷ ଯୋଗୀ । ତୁ ପେଟର ପୁଅ । ମୁଁ ତୋତେ ଗୁରୁକରି ତୋହର ପାଦପଦ୍ମକୁ ବନ୍ଦିଅଛୁ । ମୋତେ ଅନୁଗ୍ରହ କର । କେମନ୍ତେ ଆତ୍ମାକୁ ଲଭିବ ତାହା କହ । ଏହା ଶୁଣି ସେ ଗର୍ଭ ପୁରୁଷ ବୋଇଲା । ଯେମନ୍ତ ଓଝା ଏକାବେଳକେ ଗ୍ରନ୍ଥକୁ ପଢ଼ାଇ ନ ପାରଇ ସେହିମତ ଏକାବେଳକେ ବୋଧେ ଉଦେ କରାଇ ନୁହଇ । ଗଡ଼ମାନ ଯେମନ୍ତ (୨) ରାଜାମାନେ ଅଙ୍କେ ଅଙ୍କେ କରି ସାଧନ୍ତି ତେମନ୍ତ କରି ସେ ସାଧନା କରି ହୋଇ । ଏବେ ତୁ ନିଷ୍କାମ କରି ପୁଣ୍ୟକର । ବାସୁଦେବଙ୍କୁ ପରମ ଭକ୍ତିକର । ଭକ୍ତି କରୁଁ କରୁଁ ତୋହର ରଜତମ ନିବର୍ତ୍ତି ହୋଇବ । ଅନ୍ତଃକରଣ ଶୁଦ୍ଧ ହେବ । ସତ୍ତ୍ୱାଂଶ ରହିବ । ଏବଂଭୂତ ସାତ୍ତ୍ୱିକ ଶରଧାକୁ ଘେନି ନିରନ୍ତରେ ଯତ୍ନକର । କରି ଗୁଣମାନ ଆଚର । କେମନ୍ତ ଗୁଣମାନ । ହାଦେମାନ ଗୁଢ଼ ଦମ୍ଭ ଗୁଢ଼ ହିଂସା ଗୁଢ଼ ଶାନ୍ତ ହୋଇ । ଆର୍ଜବ ହୋଇ ଆଚାର୍ଯ୍ୟ ଉପାସନାର । ସଚଉ ହୋ । ମନକୁ (୩) ନିଗ୍ରହି ଥା । ସ୍ଥିର ହୋ । ଧଇର୍ଯ୍ୟ ହୋ । ଇନ୍ଦ୍ରିୟମାନଙ୍କୁ ବୈରାଗ୍ୟ ପାଅ । ଅନହଂକାର ହୋ । ଜନ୍ମ ମରଣ ଜରା ବ୍ୟାଧି ବୃଦ୍ଧାବସ୍ଥାପର୍ଯ୍ୟନ୍ତ ଦୁଃଖ ନିରନ୍ତର ସୁମରୁଥା । ଅନବରତେ ଈଶ୍ୱରଙ୍କୁ ଶରଣ ଯା ।

---

୧—'ଖ' ରେ ନାହିଁ ।
୨—'ଖ' ରେ ନାହିଁ ।
୩—ଆତ୍ମାକୁ 'ଖ'

ସମସ୍ତ ଭାବରେ ଅଶାନ୍ତ ନ ନହା । ଆତ୍ମାଶକ୍ତ ହୋ । ଅନଭିଷଙ୍ଗ (୧) ଏକା ହୋଇଥା । ସମଚିତ୍ତ ହୋ । ସତ୍ୟାଚରଣ କର । ମୁଁ ଯାହା କହିବ ସେହିମତ ଆଚର । ଅବ୍ୟକ୍ତ ଉଚାର ଭକ୍ତ କର । କଉଣସି ମନୁଷ୍ୟ ସଙ୍ଗରେ ପ୍ରୀତି ନକର । କଉଣସି ବସ୍ତୁରେ ସ୍ନେହ ନକର । ଏମନ୍ତ ଗୁଣମାନ ଆଚରୁ ଆଚରୁ (୨) ହାଦେ ଅଦ୍ଭୁତ ହୋଇ ବିକାରେକ ଜାତ ହୋଇ । ସେ ବିଗୁରକୁ ବିବେକ ବୋଲି । ସେ ବିବେକ କେମନ୍ତ ଅଟଇ । ନିତ୍ୟାନିତ୍ୟ ବସ୍ତୁ ବିଗୁରଇ । ନିତ୍ୟାନିତ୍ୟ ବସ୍ତୁ ବିଗୁରଇ କସ । ଏ ଜଗତ ପ୍ରପଞ୍ଚ ଗୋଟା । ଦେହ ସହିତ ହୋଇ ଏ ନିତ୍ୟ କ ଅନିତ୍ୟ ଏହା ବିଗୁର (୩) ଜାଣଇ । ବିଗୁରୁଁ ବିଗୁରୁଁ ଯୁକ୍ତ ପ୍ରକାଶ କରଇ । ଯୁକ୍ତ କସ । ଏ ଭୋଗ, ଭୋଗ, ସମ୍ପତ୍ତି, ବିପତ୍ତି ଏ ଶରୀର କୃଟ (୪) । ଏମନ୍ତମାନ ଯହୁଁ ପ୍ରକାଶ ହୋଇ । ହୋଇଲେ ସତ୍ୟ ବୋଲି ସେ ଆଉ ଅଛନ୍ତି (୫) ଏହା ମିଥ୍ୟା ପଣ ନ ଜାଣଇ (୬) । ଏ ଯେତେକ ଦୋଷ, ମୋହ, ଭ୍ରମ, ଅଶୁଭ, ପ୍ରପଞ୍ଚ ନରକ କୁତ୍ସିତ ଏମନ୍ତ ଜାଣଇ । ଜାଣିଲେ ହାଦେ ବୈରାଗ୍ୟ ଜାତ ହୋଇ । ସେ ବଇରାଗ୍ୟ ଗୁରି ପ୍ରକାର । ଶ୍ରୁତ ବଇରାଗ୍ୟ, କୋମଳ ବୈରାଗ୍ୟ । ଭୋଗ ବୈରାଗ୍ୟ । ପ୍ରୌଢ଼ ବଇରାଗ୍ୟ (୭) । ହାଦେ ଗ୍ଭରି ବୈରାଗ୍ୟର ମଧ୍ୟେ ପ୍ରୌଢ଼ (୮) ବଇରାଗୀ ହୋଇ । ସେ ପ୍ରୌଢ଼ ବୈରାଗୀ କେମନ୍ତ । ବ୍ରହ୍ମାଦି ତୃଣ ପର୍ଯ୍ୟନ୍ତ ଜଗତକୁ ଦେହ (୯) ସହିତ ବାନ୍ତ କଲା ଅନ୍ନପ୍ରାୟ ପ୍ରକାଶଇ । ଏବଂଭୂତ ବୈରାଗ୍ୟରେ ଗୋକ (୧୦) ଗୃହ ବ୍ୟକ୍ତ

---

୧—'ଖ' ରେ ନାହିଁ ।
୨—ଆଚର 'କ'
୩—'ଖ' ରେ ନାହିଁ ।
୪—ବୋଧ 'ଖ'
୫—ଆଚରି ଅଛନା 'ଖ'
୬—ଏହାର ନିରୂପଣ ଜାଣଇ 'ଛ'
୭—ଶ୍ରୋକ ବୈରାଗ୍ୟ 'ଖ'
୮—ଶ୍ରୋକ 'ଖ'
୯—'ଖ' ରେ ନାହିଁ ।
୧୦—ଶ୍ରୋକ 'ଖ'

ଆଶ୍ରମ ତ୍ୟାଗ କରଇ । ଶାନ୍ତ, ଦାନ୍ତ, ଉପରତି, ତିତିକ୍ଷା, ଗୁରୁ ପ୍ରକାର ସାଧନ କରଇ । ଏ ଗୁରୁ ପ୍ରକାର ଶୁଣୁ । ହସ୍ତ ପ୍ରାପ୍ତ ବସ୍ତୁକୁ ବାଞ୍ଛା ନ କରଇ । ଯୁକ୍ତ ନ୍ୟାୟ ଯେ ସତ୍ୟାସକ୍ତ ହୋଇ । ତାହା ଯଥାନିୟମ କରି ଗ୍ରହଣ କରଇ । ଏହାକୁ ଶାନ୍ତ ବୋଲି । ଅନ୍ତଃକରଣ ବହିର ଅନ୍ତଃକରଣ (୧) ଦୁଇଠାରେ ବିଷୟ. ଗ୍ରହଣକୁ ଅତିଶୟ ନିବୃତ୍ତି ହୋଇ । ଏହାକୁ ଦାନ୍ତ ବୋଲି । ବିଷୟ ଭିନ୍ନ ନୁହଇ (୨) । ଯାହାର ଶ୍ରଦ୍ଧା ପ୍ରୀତି ହୋଇ ତାହାକୁ ଉପରତି ବୋଲି । ସୁଖ ଦୁଃଖ, ଭୟ ଅଭୟ, ବିପତ୍ତି, ଲାଭ, ଶୁଭ ଅଶୁଭ, ପାପ ପୁଣ୍ୟ, ସିଦ୍ଧ ଅସିଦ୍ଧ, ଶୀତଳ ଉଷ୍ଣ, ସ୍ତୁତି ନିନ୍ଦା, ଜୟ ଅଜୟ, ଲାଭ ଅଲାଭ ଇତ୍ୟାଦି ମାନଙ୍କରେ ଯେବେ ଅନପେକ୍ଷ ବୁଦ୍ଧି ପାଇଲା (୩) । ଏହାକୁ ତିତିକ୍ଷା ବୋଲି । ଏ ଗୁରୁ ସମ୍ପତ୍ତି ହୋଇଲେ । ସେ ଆତ୍ମଜ୍ଞାନ ଜାଣିବାକୁ ପ୍ରଥମ ଅଧିକାରୀ ହୋଇ । ତାହାକୁ ସଦ୍‌ଗୋଷ୍ଠୀ ସେବାକରି ଆଚାର୍ଯ୍ୟ-ମାନଙ୍କ ଠାରୁଁ ସ୍ମୃତି ଅର୍ଥମାନ ଶୁଣିମାରୁ (୪) କରି ଅସଦ୍‌ଭାବନା (୫) ବିପରୀତ ଭାବନା ନିବୃତ୍ତି ହୋଇ । ତୁ ଅବା ବୋଲୁ ଅସମ୍ଭବନା (୬) ନିବୃତ୍ତି କେମନ୍ତ ହାଦେ ଇନ୍ଦ୍ରିୟ ଭିନ୍ନ ପ୍ରାପ୍ତେ । ଏମନ୍ତ ଭାବ ଜାଣି ନୁହଇ । ଏହାକୁ ସେ ଅସମ୍ଭବନା (୭) ବୋଲି ଯେତେବେଳେ ଦେହଁ ଭିନ୍ନଭାବ ଆପଣାର ଜାଣଇ । ତେତେବେଳେ ପର ଦେହକୁ ତ ଯେମନ୍ତ ଦେଖଇ । ଆପଣା ଦେହକୁ ହିଁ ତେଡ଼େ କରି ଅସ୍ନେହ କରଇ । ଦେହକୁ ଉଦାସୀ ହୋଇ । ଏହାକୁ ସେ ଅସମ୍ଭବନା (୮) ନିବୃତ୍ତି ବୋଲି । ବିପରୀତ ଭାବନା ନିବୃତ୍ତି ଶୁଣୁ । ହାଦେ ଈଶ୍ୱର ଜୀବଜଗତ ହୋଇ

---

୧—ବହିର୍ଦ୍ୱାର 'ଖ'
୨—ବିଷୟର ଭିନ୍ନ ହୋଇ 'କ'
୩—ଜନ୍ମ ହୋଇଲା 'କ'
୪—ଶୁଣିମା କରି 'କ'
୫—ଅସମ୍ଭବନା 'ଖ'
୬—ଅସମ୍ଭାବନା 'ଖ'
୭—ଅସମ୍ଭ ବନା 'ଖ'
୮—ଅସଦ୍‌ଭାବନା 'ଖ'

ପ୍ରକାଶ ଅଛି ଆତ୍ମା । (୧) । ଏହାକୁ ନ ଜାଣିବାରୁ କରି । ଏମନ୍ତ ବସ୍ତୁପ୍ରେ (୨) ହୋଇ ଜଗତ ଦିଶଇ । ଆତ୍ମା ଜଗତକୁ ବସ୍ତୁମୟ କରି ଜାଣୁ ଅଛି । ଅନାତ୍ମା ଯେ ଶରୀର । ଏହାକୁ ମୁଁ ଅପରତେ ହେଉଅଛି । ପୁତ୍ର ଦାର ଜନକୁ ମୋହର ବୋଲି ପରତେ ହେଉଅଛି । ଏଥି ଏହା ଭାବକୁ ଛାଡ଼ିଗଲେ ବିପରୀତ ଭାବନା ନିବୃତ୍ତି ବୋଲି । ଏଥି ଉତ୍ତାରେ ଶ୍ରବଣ ମନ ନିଦିଧ୍ୟାସନ କରିବ । ସହସ୍ରଧା ପ୍ରକାରେ ସାଙ୍ଗୋପାଙ୍ଗ କରି ପୁନଃ ପୁନଃ କରି ସକଳ ଶାସ୍ତ୍ରମାନ ଶୁଣିବ । ଯେଉଁ ଶାସ୍ତ୍ରାର୍ଥ ଜାଣିଲେ ସେ ଗୁରୁ-ବଚନକୁ ସାକ୍ଷ ଅଟଇ । ଏ ଦୁହିଁଙ୍କର ଭାବ ଏକ କରି ଜାଣିଲେ ଭୂମି ଏକ ହୋଇ । ମନ ନ କଳ୍ପିବ (୩) । ଏହା ଦୃଢ଼ କରି ନିରନ୍ତରେ ମଣିଲେ ଦ୍ୱିତୀୟ ଭୂମି ହୋଇ । କିସ ଅର୍ଥ ବିଗ୍ଭରିବ । ମୁହିଁ କେ, ଏହା ଅର୍ଥୀ ହୋଇ ଜାଣିବ (୪) । ପୃଥ୍ୱୀ ଅବା ମୁଁ (୫) । ଜଗତ ଅବା ମୁଁ । ଗଗନ ଅବା ମୁଁ । ଇନ୍ଦ୍ରିୟମାନେ ଅବା ମୁଁ । ପ୍ରାଣ ଅବା ମୁଁ । ଚୈତନ୍ୟ ଅବା ମୁଁ । ଅବସ୍ଥା ତ୍ରୟ ଅବା ମୁଁ । ଯେ ଜଳ ଅବା ମୁଁ । ଅଗ୍ନି ଅବା ମୁଁ । ଏମାନ ଜାଣୁଅଛି ସେ ଅବା ମୁଁ ।

ଏମନ୍ତ ଭାବକୁ ତୃତୀୟ ଭୂମି ବୋଲି । ଏ ଭୂମିରେ ଯମନିୟମ, ଆସନ, ପ୍ରାଣାୟାମ, ଧ୍ୟାନ ଧାରଣା ସମାଧି ଆଚରିଥିବ । ଏହା ଅନବରତ ଅଭ୍ୟାସକୁ ନିଦିଧ୍ୟାସନ ବୋଲି । ଚତୁର୍ଥ ଭୂମି ଯେ ସେ ଏମନ୍ତ ବିଗ୍ଭର ବିଗ୍ଭର ମନୋକ୍ତ ବିଦ୍ୟାସକ୍ତ (୬) ଭୂମିରୁ ବିଳାୟମା ବୋଲି ବିଦ୍ୟାଏ ଜାତ ହୋଇ । ସେ ଭୂମି କେମନ୍ତ ହାଦେ । ବାସନା ବଲଗ (୭) ହୋଇ । ଭୁ ବାସନା ଥିବାରୁ ବୋଲୁ ଅଛୁନା କଉଣସିମତେ ସୁଖ ନାହିଁ (୮) ବୋଲି ।

---

୧ — ଏ ଜଗତେ ଜୀବ ଆତ୍ମା ଈଶ୍ୱର ହୋଇ ପ୍ରକାଶ ଅଛୁ 'ଖ'
୨ — ବସ୍ତୁମୟ 'ଖ'
୩ — କରିବ 'କ'
୪ — ଅର୍ଥକରି ଜାଣିବ 'କ'
୫ — ମୁହିଁ 'କ'
୬ — ଅବ୍ୟକ୍ତ ବିଦ୍ୟା ସଙ୍ଗତ 'କ'
୭ — ବିଳସ୍ତ 'କ'
୮ — ନୋହିବ 'ଢ'

କେମନ୍ତେ ହେଁ ବୃବୋଲବୁଝି । ମେରୁ ପର୍ବତ ପ୍ରାଏକ ଯେବଣ ଅବିଦ୍ୟାର ମୂଳ । ଏହା ଜଗତ କଥା ବୋଲି (୧) । ଜଗତବ୍ୟାପୀ ଉଦେ ହେଉଅଛି । ସେ ଶାନ୍ତକ (୨) ନଗଲେ ସୁଖ କାହିଁ ଅଛି । ଏ ନ୍ୟାୟରୁ ଏ ଶରୀରକୁ ଅସତ୍ୟ (୩) ବୃକ୍ଷ ବୋଲି । ନିଗମ ଶାସ୍ତ୍ରେ କର କାଠ । ହାଦେ ଇନ୍ଧ୍ରିୟମାନଙ୍କର ସଙ୍ଗ ଛାଡ଼ିଲେ ନିସଙ୍ଗ ବୋଲି । ଏମନ୍ତ ସେ ଚତୁର୍ଥ ଭୂମି ନାମର ବିଳାସିନୀ । ସେ ଭୂମିରୁଝି ସକଳ ଭୂମି ଜାତ ହୋଇ । ଯେମନ୍ତ କ୍ଷୀର ସମୁଦ୍ରୁଁ ସମସ୍ତ ଜାତ ହୋଇଲି । ବାସନା ମନ ଅଜ୍ଞାନ ସପ୍ତଭୂମି ଆଦିକର ଯହିଁ ଆତ୍ମାରେ ଲୀନକୁ ଯାଇଥାନ୍ତି ସ୍ୱଭାବେ ଅଯତ୍ନେ ଏହାକୁ ତେଣୁ କର ବିଳାସିନୀ ବୋଲି । ସେ ଭୂମିରେ ରହିଥାଇ ଉକ୍ତମତେ ଶୁଦ୍ଧ ସମାଧି ଆନନ୍ଦ (୪) ହୋଇ ରୂପେକ ନହୋଇ ଏହାକୁ ପଞ୍ଚମ ଭୂମି ବୋଲି । ଏଭୂମିରେ ଅନେକ ମାୟାମାନେ ଉପଦ୍ରବମାନେ ଅଛନ୍ତି । ସେ ଉପଦ୍ରବ କେମନ୍ତ । ଅବିଦ୍ୟା ଯେ ପ୍ରକୃତି ଏ ଯେତେବେଳେ ମର ନଥାଇ । ଏହାର ଯେତେ ବଳ ତେତେକପାକ ଦରଶାଇ କର ଏ ଭୟ ମୋହ ତନ୍ଦ୍ରାଏ କର ଆକୁଳ କରାଇ । ପାଣି ଆବର୍ତ୍ତ ପ୍ରାପ୍ତେ କର ରଡ଼ ଭ୍ରମୁଥାଇ । ଏଠାରୁ ଭ୍ରମିଲେ (୫) ହାଦେ ଦେବତା ହୋଇ । ବାସୁଦେବର ଭକ୍ତ ନିଶ୍ଚଳ କର କଲେ ବିଷ୍ଣୁର ଅଷ୍ଟାଦଶ ମାୟା ଆବୋରଇ । ସେ ମାୟାମାନେ କେମନ୍ତ । ପ୍ରଥମେ ଜାଗ୍ରତ । ସ୍ୱପ୍ନ, ସୁସୁପ୍ତି, ଏ ନରକ, ଏ ତିନିମାୟା ଜିଣିଲେ ଦିବ୍ୟମାୟାମାନେ ଆବୋରନ୍ତି । ବିଘ୍ନ ନିମିତ୍ତେ ଦିବ୍ୟମାୟା ଆବୋରି ସମାଧିରେ ପ୍ରକାଶ କରନ୍ତି । ମୋହିନୀ (୬) । ୪ । ମଧୁମତୀମାୟା । ୫ । ବିଷୟ ଦର୍ଶିନୀ (୭) ମାୟା ।୬। ଶବ୍ଦମୟୀ (୮) ମୟା ।୭। ସରସ୍ୱତୀ ମାୟା ।୮।

---

୧ — ଜଗତକୁ ଆବୋର 'କ'
୨ — ଶାନ୍ତ ନ ଗଲେ 'କ'
୩ — ଅଶ୍ୱତ୍ଥ 'କ'
୪—ଶୁଦ୍ଧ ସଚ୍ଚିଦାନନ୍ଦ 'କ'
୫—ଭ୍ରାଗଲେ ହେଁ 'କ'
୬—ମୋହ 'କ'
୭—ବିଶ୍ୱଦରଶିନୀ 'କ'
୮—ସବ୍ୟସ୍ଥା 'ଖ'

ଦେବଯୋନି (୧) ମାୟା ।୯। ଅଣିମାଦ୍ଧ ଐଶ୍ୱର୍ଯ୍ୟ ମାୟା ।୧୦। ଜାଳନ୍ଧରୀ ମାୟା ।୧୧। ଲୌକିକ ମାୟା ।୧୨। କାମମୟୀ ମାୟା ।୧୩। ସିଦ୍ଧମୟୀ ମାୟା ।୧୪। କଲ୍ଲୋଳନୀ ମାୟା ।୧୫। ରୁଦ୍ର ଅହଂକାର ମାୟା ।୧୬। ପାବଂଛମାୟା ।୧୭। ସର୍ବମନୋହରୀ ମାୟା ।୧୮।

ଏବଂଭୂତ ଅଷ୍ଟାଦଶ ମାୟା ଆବୋରଇ । ଐଶ୍ୱର୍ଯ୍ୟ ସମାଧିରେ ସ୍ୱପ୍ନ ପ୍ରାପ୍ତେ ହୋଇ । ହାଦେ ଶତ୍ତ ସହିଁ । ସକଳ କାମନାମାନ ଗୁଡ଼ ପ୍ରକୃତ ସକ୍ତ ହୋଇ । ଇନ୍ଦ୍ରିୟମାନଙ୍କୁ ଘେନ ଯେତେବେଳେ ଅନ୍ତର୍ମୁଖ ହୋଇ ଦ୍ରବ୍ୟସୁଖ ପାଉଥାଇ । ଯେଉଁ ଚତୁଃପଥରେ ହୋଇ ନିର୍ବାତ ଦୀପଶିଖା ପ୍ରାପ୍ତେ ସେଠାରୁ ଅବସ୍ଥାନ୍ତେ ଲୀନ ହୋଇ । ସେ ତ୍ରିକୂଟପଥ କେମନ୍ତ ଅଟଇ । ପଥକର ଏ ମାୟାମୟୀ ସ୍ୱପ୍ନ (୨) ସ୍ଫୁରଇ । ପଥ କର ଉପସର୍ଗ ଭୟରୁ ବହିର୍ମୁଖ ହୋଇ । ପଥକର ଅନ୍ଧକାର ସ୍ୱରୂପେକ ହୋଇ । କାଳ ସେଠାରେ ଥାଇ । ସେ ଆବୋର ଅଜ୍ଞାନ କର ସୁସୁପ୍ତି କ ନଅଇ । ଏତନ ପଥଟା କ ଜାଣିଲେ ଅଜୀବ ପଥରେ ପଶଇ । ଯେଉଁ ପଥରେ ମନ ମୂର୍ଚ୍ଛା (୩) ଯାଇ । ଏମନ୍ତ ଏକା ଜାଳନ୍ଧର ଜଗତଈଶ୍ୱର । ଏହା ମରିବା ପଥରେ ଦ୍ରବ୍ୟ ମାୟାମାନେ ମନବକାରେ ଉତେଦେ ହୋନ୍ତ । ହାଦେ ଏ ମାୟାମାନେ କେମନ୍ତ ଅଟନ୍ତି ଶୁଣୁ । ଏ ହାଦେ ଋଷିମାନେ, ଦେବତାମାନେ, ସିଦ୍ଧମାନେ କଷ୍ଟେ କଷ୍ଟେ କୋଟି କୋଟି ଲୋକରେ ସେ ଜଣେ ଜାଣଇ । ନୋହିଲେ ଏଥିଭିତରେ ସେ ଏ ମାୟାମାନଙ୍କୁ ଚସିଥାନ୍ତି । କେ ଗୁରମାୟା, କେ ପାଞ୍ଚମାୟା । କେ ସପ୍ତମାୟା । କେ ଅଷ୍ଟ ମାୟା । ଏତେଦୂର ସେ ଜୟକର ଅଛନ୍ତି । ସମସ୍ତେ ହେଁ ବ୍ରହ୍ମାଦ୍ଧ ଈଶ୍ୱର ସହିତେ ବସ୍ତୁ ମାୟାରେ ପଡ଼ିଅଛନ୍ତି । ତୁ ଅବା ବୋଲୁ ଏମାନେ ସେ ପହିଁ ଯାଇ ନ ପାରିଅଛନ୍ତି ମୁହିଁ ଆଉ କାହିଁ ଯିବି ବୋଲି । ଏଥକୁ ଭ୍ରାନ୍ତ ନକର । ହାଦେ ମୁଁ ତୋତେ ପରମବୀଜ କହୁଅଛି ଶୁଣୁ । ଏ ମାୟା ଈଶ୍ୱର ସେ ଜଗନ୍ନାଥ । ଏହାଙ୍କ ଅନୁଗ୍ରହ ହେଲେ ବ୍ରହ୍ମାଦ୍ଧ

---

୧—ଜ୍ୟୋତ 'ଖ'
୨—ସର୍ପ 'ଖ'
୩—ମୁଗଧ 'ଢ'

ଯାଇ ନଥାଇ ଯହିଁ ଖାଟହିଁ (୧) ଅକସ୍ମେହେଁ (୨) ଯାଇ । ଏହାଦେ ଭବଗ୍ରାହ୍ୟ ଅଟନ୍ତି । ସମସ୍ତ କଥାର ମୂଳ ଏ । ଏହାଶୁଣି ସେ ଅବଧୂତ ବୋଇଲା । ହେ ମହାତ୍ମା ଧନ୍ୟ ତୁ । ଏମାୟାମାନେ କି କରନ୍ତି ଏହା ମୋତେ କହ ।

ସେ କୁମର ବୋଇଲା । ମୁଁ ଆଉ ବହୁତ ବେଳ କଥା କହି ନ ପାରଇ । ଗର୍ଭନିଦ୍ରା ମୋତେ ପୁନଃ ପୁନଃ (୩) ଆକର୍ଷୁ ଅଛି । ତୁ ଅଳ୍ପକେ ଶୁଣୁ । ତୋତେ ଅନୁକଳ୍ପିତ (୪) କରି ଲୋକାନୁଗ୍ରହ ନିମିତ୍ତେ କହୁଅଛି । ଯହୁଁ ତୁ ବଡ଼ ଦୁଃଖୀ ଅଟୁ ହାଦେ କଉଣସି ମାୟାରେ ଇନ୍ଦ୍ରପଦ ପାଇ । ବ୍ରହ୍ମାପଦ ପାଇ । କଉଣସି ମାୟାରେ ସକଳ ଦେଖୁଥାଇ । କଉଣସି ମାୟାରେ ସହସ୍ର ସହସ୍ର ସ୍ତ୍ରୀମାନେ ବେଢ଼ିଥାନ୍ତି । କଉଣସି ମାୟାରେ ଶୂନ୍ୟରେ ଯାଉଥାଇ କଉଣସି ମାୟାରେ ଦିବ୍ୟ ବିମାନରେ ଚଢ଼ିଥାଇ ଇନ୍ଦ୍ର ପ୍ରାପ୍ତେ ହୋଇ ଐଶ୍ୱର୍ଯ୍ୟମାନନ୍ତ ଭୋଗ କରୁଥାଇ । କଉଣସି ମାୟାରେ ସହସ୍ରେ ଜଣ ବାରତା ଜାଣଇ । କୌଣସି ମାୟାରେ ଦେବତାମାନଙ୍କ କଥା କହୁଥାଇ । କେତେ କହିବା ଅନନ୍ତ (୫) ପ୍ରପଞ୍ଚ ମାୟା । ଦେବତାମାନଙ୍କୁ ଅଗୋଚର ଅଟଇ । ଈଶ୍ୱର ଅନ୍ତରେକ କରି ଯେଉଁ ଜୀବକୁ ଅନୁଗ୍ରହ କରିବ । ସେ ଜାଣି ତାହାର ପରମ ଭାବ ପାଇ । ଯେତେବେଳେ ଅଷ୍ଟାଦଶ ଜପ ହୋଇ ତେତେବେଳେ ଷଷ୍ଠ ଭୂମି ହୋଇ । ସେ ଭୂମି କେମନ୍ତ ଅଟଇ । ଆନନ୍ଦ ଘନାକାର ସୁସୁପ୍ତି । ଏହାକୁ ଅଚଳ ତୁରୀୟ (୬) ବୋଲି । ଏ ଅବସ୍ଥା ହେଉ ହେଉ ପ୍ରଥମେ ଅତ୍ୟନ୍ତ ଶବ୍ଦମାନ ଶୁଭଇ । ସେ ଶବ୍ଦ କେମନ୍ତ । ଜଗତ ଚରାଚର ଯାକ ସେ ଶବ୍ଦରେ ଲୟ ହୋଇଥାନ୍ତି । ଏ ଶବ୍ଦ ଅନ୍ତେ ପରମ କୋଟି ସୂର୍ଯ୍ୟ, କୋଟି ଚନ୍ଦ୍ର, କୋଟି ତଡ଼ିତ, କୋଟି କୋଟି ନକ୍ଷତ୍ର ଏକତ୍ର ଉଦ୍ଭୂତ କରିଲେ ଯେମନ୍ତ ଜ୍ୟୋତି ଏକପ୍ରକାଶ ହୋଇ । ସେ ଜ୍ୟୋତିରୁ କ୍ରମେ ଅନ୍ତର୍ଲୀନ ହୋଇଲେ ନିର୍ମଳ ଆକାଶେକ

୧—ଖାଟହିଁ 'ଖ' ରେ ନାହିଁ
୨—ଅକସ୍ମେ 'କ' ରେ ନାହିଁ
୩—କଣ 'କ'
୪—ଅନୁକୂଳ ଭଳ 'କ'
୫—ଅନନ୍ତ 'କ'
୬—ତୁରୀୟ 'ଖ'

ପ୍ରକାଶ ହୋଇ । ସେ ଆକାଶର ଅନ୍ତର୍ଗତେ ଚିଦ (୧) ବୋଲି ଆକାଶେକ ଅଛୁ । ସେ ଆକାଶ ସତ୍ତ୍ୱ ମାତ୍ର । ସଦା ସମ୍ପୂର୍ଣ୍ଣ । ସେଠାରେ ସପ୍ତମ ଭୂମି ହୋଇ । ଆନନ୍ଦ କନ୍ଦୈକରସ ଚନ୍ଦ୍ର ନିବଡ଼ ବୋଧ ଉଦୟ ଚୈତନ୍ୟ ସୁସୁପ୍ତିର ପ୍ରାୟେକ ହୋଇ ଯେଉଁ ଅବସ୍ଥା ସେଠାରେ ଗୁରୁବଚନ ଅଛୁ । ଏ ଅବସ୍ଥା ପରମ ନିର୍ବାଣ ପଦଟି (୨) । ଏ ସପ୍ତଭୂମି ପ୍ରକାଶ କରି ନୋହଇ । ନିବଡ଼ ବହଳ ପରମ ଆନନ୍ଦରୁହିଁ ଆନନ୍ଦ । ପରମ ସୁଖ ହୁଁ ସୁଖ । ସମୁଦ୍ର ଜଳର ଯେମନ୍ତ ଅନ୍ତନାହିଁ । ସୁଖର ହିଁ ତେମନ୍ତ ଅନ୍ତନାହିଁ । ଅତ୍ୟନ୍ତ ସୁଖ । ତହିଁକି ବ୍ରହ୍ମା ଈଶ୍ୱରାଦି ହିଁ ରଙ୍କ ପ୍ରାୟେ ହୋଇ ଉପାସନା କରନ୍ତେ ହେଁ ନ ପାନ୍ତି ।

ଏବଂଭୂତ ଯେବଣ ବସ୍ତୁର ପରମ ପଦହିଁ କେ ପାଇବ । ଯହିଁ ପାଇଁ ଯଜ୍ଞ ପୂଜାଦାନ ତୀର୍ଥ ତପ ଯୋଗ ଭକ୍ତି ଏମାନ କରି । ବେଦମାନେ ଯାହାକୁ ସ୍ତୁତି କରୁଅଛନ୍ତି । ଯେଉଁ ପଦରେ ଥିଲେ କୋଟି କୋଟି ବ୍ରହ୍ମାଣ୍ଡ-ମାନେ ପ୍ରଳୟ ହେଉଥିଲେ ନିଃଶ୍ୱାସ ପ୍ରାୟେକ ମଣି । କାଳର ଅନ୍ତଭୂମି ଯେ କାଳକୁ ସଂହରଇ । ଯେଉଁ ଭୂମି ତାହା କହିବାକୁ ମନ ବୁଦ୍ଧିରେ ଶକ୍ତି ନାହିଁ ଏବଂଭୂତ ହୋଇ ଯେଉଁ ପଦ ତହିଁକି ଶରଣ ଯା । ଏବଂଭୂତ ଉପଦେଶ ପାଇ । ସେ ଅବଧୂତ ନିସ୍ତରିଲା ପ୍ରାୟେକ ହୋଇ । ଗର୍ଭ ପୁରୁଷକୁ ଗୁରୁ ମାନନା କରି ପାୟେ ପଡ଼ି ଶୋଇ ଏବଂ ଆଜ୍ଞା ମାଗିଲା । ବୋଇଲା ମୁହିଁ ତୋହର ଆଜ୍ଞାପ୍ରତି ପାଳନ କରିବାକୁ ଅନୁକୂଳ କରୁଅଛୁ । କୁମର ବୋଇଲା ମୁଁ ଆଉ ଅଳ୍ପଦିନେ ଜନ୍ମ ହୋଇବ (୩) କ୍ଷିତି । ମୁହଁ ମୌଳି ନିର୍ମଳ ଧାରଣାରେ କରି ଆଜହୁଁ ମାତାକୁ ଶୀତଳ ହୋଇବ । ଏବେ ମୁଁ ନିଦ୍ରା ଯାଉଅଛୁ । ତୋହର ମୋହର (୪) କାଳଞ୍ଜନ ପର୍ବତେ ଭେଟ ହୋଇ ସିନା । ଏମନ୍ତ ଆଜ୍ଞାପାଇ ସେ ଅବଧୂତ ପୁରୁଷ ଆସି ଆପଣାର ସ୍ଥୂଳ ଦେହରେ ପଶିଲା । ରାଜାକୁ ଗୁହିଁଲା । ରାଜାଦେଖି ମଥାରେ ହାତ ଦେଲା । ଏତେବେଳ ପର୍ଯ୍ୟନ୍ତ କଲଧାନ । ମୃତ୍ପିଣ୍ଡର ପ୍ରାୟେ କରିଥିଲ ଶରୀର ।

---

୧—ପନ 'ଖ'
୨—ରୂପଟି 'କ'
୩—ହୋଇଅଛୁ 'କ'
୪—ତୋହୋ ମୋହୋ 'କ'

ଅଧୀପ୍ରମାନ । ରାଜା ଏମନ୍ତ ବୋଲନ୍ତେ ସେ ପୁରୁଷ ପଲଙ୍କୁ ତଳକୁ ଓହ୍ଲାଇଲା । ରାଜାର କର ଧଇଲା । କର୍ଣ୍ଣମୂଳେ କହିଲା । ଆଜହୁଁ ତୋର ରାଣୀ ଶୀତଳ ହୋଇଲା । ବଡ଼ ବିଚକ୍ଷଣ ପୁରୁଷେ ଜନ୍ମ ହୋଇବ ବୋଲି ବୋଇଲା । ଗୁରୁପିତା ବୋଲି ରାଜାଙ୍କୁ ମନେ ମନେ ନମସ୍କାର କଲା । ମହାପୂଜ୍ୟ ପାଇଲା । ପରମ ଆନନ୍ଦ ହୋଇଲା । କୁମର କହିଲା କଥାମାନଙ୍କରେ କରି ଅମୃତ ପାନ (୧) କଲା ପ୍ରାୟେ ହୋଇଲା । ଅରଣ୍ୟକୁ ଗମିଲା । ଏଥି ଉତ୍ତାରେ ରାଣୀର ନିଦ୍ରାଭଙ୍ଗିଲା । ସେହି କ୍ଷଣି ଉଶ୍ବାସ ଲାଗିଲା । ହରଷ ହୋଇଲା । ମୁଖମଣ୍ଡଳ ରାହୁର ବନ୍ଧରୁ ଚନ୍ଦ୍ରମା ମୁକ୍ତ ହୋଇଲା ପ୍ରାଏକ ଶୋଭା ପାଇଲା । ମହା ଦେବୀର ହର୍ଷ ଦେଖି, ରାଜା ହୋଇଲା ଅତ୍ୟନ୍ତ ସୁଖୀ । ସେ ରାଣୀକି ଗୃହିଁ । ପରମ ହର୍ଷ ହୋଇ । ଶସ୍ତ୍ର ଖଣ୍ଡନ ନିମନ୍ତେ ବିବିଧ ଧନ (୨) ମାନନ୍ତ ଦେଲା ।

ଏଥି ଉତ୍ତାରେ । କେତେ ହେଁ ଦିନେ ସେ କୁମର ଜନ୍ମ ହୋଇଲା । ବୈଶାଖ ଶୁକ୍ଳ ତ୍ରୟୋଦଶୀ ଦିବସରେ । କକଡ଼ା ଲଗ୍ନେ ଅଛନ୍ତି ବୃହସ୍ପତି ଚନ୍ଦ୍ରେ । ମକରେ ପରମ ଉଚ୍ଚ ମଙ୍ଗଳ ପାଇଅଛି । ସପ୍ତମ କେନ୍ଦ୍ରେ । ମିଥୁନ ରାଶିରେ + ଉନ୍ନତ ଅଯୁଦ୍ଧ + ଅକଳୁଷ + ଅଣଅସ୍ତ ହୋଇଅଛି ଶଶି ପୁତ୍ର ବୁଧ । ଉଦୟ ନିର୍ମଳ, ଭୃଗୁ ସ୍ୱସ୍ତର ମୀନ ରାଶିରେ, ଶୁକ୍ର ହୋଇଅଛି ଷଡ଼ବର୍ଗ ଶୁଦ୍ଧ । ତୁଳାରାଶିରେ ଶନୈଶ୍ଚର କଳାଯୁକ୍ତ ହୋଇଅଛି ଶୁଦ୍ଧ । ଯୋଗ ପାଇଅଛି ଚତୁଃସାଗର ନାମ । ଚନ୍ଦ୍ରପୂର୍ଣ୍ଣ ମନ୍ତ୍ରଗର୍ବେ, ଉଚ୍ଚ ଅଧିପତିର ସଙ୍ଗେ, ଆପଣାର ଭୁବନେ, ଅତିଅନ୍ତ ଶୋଭନେ, ଚତୁଃଷଷ୍ଟି କଳାଯୁକ୍ତେ, ପାପଗ୍ରହ ମୁକ୍ତେ + ପଦ୍ମସ୍ପୃଷ୍ଟ । ପୁଷ୍ଟ-ଯୁକ୍ତେ ବର୍ଗୋତ୍ତମ ପାଇଅଛି । ଗୁରୁଚନ୍ଦ୍ର ଯୋଗ ହୋଇ ବୃହସ୍ପତି ସୁଭୃଙ୍ଗ ଯୋଗ ହୋଇ ରହିଅଛି । ମେଷ ରାଶିରେ ପରମ ଉଚ୍ଚ ଅଂଶେ, ଦିବେକର ବଶେ, ସଂଗ୍ରାମ ଜତେ, ଅତ୍ୟନ୍ତ ମତେ, ମିତ୍ର ଦର୍ଶନେ । ଆପଣାର ମାର୍ଗେ । କୁମାର ବପୁସେ । ଅପହର ଅଂଶେ । ମାଣବର୍ଣ୍ଣେ । ସାତ୍ତ୍ୱିକ ପୂଜା କରଣଙ୍କର ସମ୍ପୂର୍ଣ୍ଣେ । ପ୍ରାଚୀ ଦିଗେ । ଆକାଶ ଗଙ୍ଗାର ଲଗେ । ସେ ଗ୍ରହରାଜା ହୋଅଇଛି ଭୃଙ୍ଗ ।

୧ — ଦାନ 'ଖ'
୨ — ଦାନ 'ଭ'

ସେ ପାପଗ୍ରହମାନଙ୍କୁ କରିଅଛୁ ଭଙ୍ଗ ! ଏମନ୍ତ ସେ ଜାତକ ଗୁରୁଶୁକ୍ରୀ ଚତୁଃସାଗର, କେନ୍ଦ୍ରେ ପୂର୍ଣ୍ଣତୁଙ୍ଗ, ଚତୁଗ୍ରହା (୧) କନକଦଣ୍ଡା ମକର ମଙ୍ଗଳୀ । ରତ୍ନ ଅଞ୍ଚଳ । ଐଶ୍ବର୍ଯ୍ୟ (୨) ସମ୍ଭବ । ଚକ୍ରବର୍ତ୍ତୀ ସହିତ ଯୋଗମାନ ପାଇଅଛୁ । ଯେ ଯାହାସ୍ଥାନେ ବିଶୁଦ୍ଧ ଭାବେ (୩) ରହିଅଛୁ । ଏମନ୍ତ ଭାବେ କୁମର ଜନ୍ମ ହୋଇଲା । ସେ ପୃଥ୍ବୀରେ ପଡ଼ିବାର ସମୟେ ଅଜ୍ଞାନ ନୋହିଲା ।

କେଣୁ କରି ନୋହିଲା । ଯହୁଁ ବାସୁଦେବଙ୍କୁ ଅନୁକରିତେ ସେବନ୍ତେ (୪) ପ୍ରସବକାଳ ହୋଇଲା । ଅଜ୍ଞାନ ପବନ ଚଳକୁ ହୋଇଲା । ନାଡ଼ୀଚକ୍ର ବାମାବର୍ତ୍ତେକ ହୋଇ ବୁଲିଲା । ସପ୍ତଧାତୁ ଚଳିଲା । ମଳଭାଣ୍ଡ ଗଳିଲା । ମୂତ୍ର ପୁଟିକା ଭଳିଲା । ଏମନ୍ତ ଦେଖି କୁମର ବ୍ରହ୍ମରନ୍ଧ୍ର ମଧ୍ୟେ ଅର୍ଦ୍ଧମାତ୍ରା ସ୍ଥାନ ନାସିକା ଅନ୍ତର୍ଗତେ (୫) ପ୍ରାଣଚନ୍ଦ୍ର ସଙ୍ଗତେ, ଚତୁର୍ବିଂଶତି ତତ୍ତ୍ୱାନ୍ତେ, ଶୁଦ୍ଧ ଚୈତନ୍ୟ ଭାବ ଚନ୍ଦ୍ରାକଳା ଯହୁଁ ।

ବିଷ୍ଣୁ ଭକ୍ତିର ବଳେ କଷ୍ଟେ କଷ୍ଟେ ଅଜ୍ଞାନ ନୋହିଲା ତହୁଁ । ଏମନ୍ତ ପ୍ରକାରେ ପୃଥ୍ବୀରେ ପଡ଼ିଲା ମନେ ମନେ ବିଷ୍ଣୁ ବୋଇଲା । ହୋ ତରୁଣେନ୍ଦୁ ଶେଖର ବିଶ୍ୱନାଥ । ତୋହର ପାଦପଦ୍ମେ ଦେଉଅଛୁ ମାଥ । ଏମନ୍ତ ବୋଲି ସେ କୁମର ନରକମୟ ଜଠରୁ ବାହାର ହୋଇଲା । ମନେ ମନେ ଧ୍ୟାୟି ଆତ୍ମା ଶୁଦ୍ଧି ନିମିତ୍ତେ ଅନୁଲୋମ ପ୍ରତିଲୋମ ପ୍ରକାର ମାନସିକ ଶୁଦ୍ଧ ଧାରଣା କରିଅଛୁ । କେବଣ କେବଣ ପ୍ରକାରେ । ପ୍ରଥମେ ଚରାଚର ଅଂଶେ (୬) ଜଗତ ବିଷ୍ଣୁ ସ୍ୱରୂପ କରି କଳ୍ପିଲା । ତଳେ ଅନ୍ତରର ବହ୍ନି (୭) ଏକ ଚକ୍ଷୁ ଅଗ୍ନିମୟ କରି ଜାତକଲା । କରିମାନ ଲୋକପାଳ ମନେ ମନେ ପୋଡ଼ିଲା । ଉପରେ

୧ — ଚତୁର୍ଗ୍ରହାନ୍ନେକ ଦଣ୍ଡ 'କ'
୨ — ଅଇଶ୍ୱର୍ଯ୍ୟ ସମ୍ଭବ 'କ'
୩ — ବିଶୁଦ୍ଧ ହୋଇ 'କ'
୪ — ହୃଦୟରେ ସେବନ୍ତେ ।
୫ — ମସ୍ତକାନ୍ତର୍ଗତେ ।
୬ — ଅଙ୍ଗେ 'ଖ'
୭ — ଅନନ୍ତ ବ୍ରହ୍ମରୁ 'କ'

ଆକାଶରେ ଦ୍ୱାଦଶ (୧) ଆଦିତ୍ୟ ଉଦେ କରାଇଲା । କରି ସେ ବନ, ପର୍ବତ, ନଦୀ, ସାଗର, ଲତା, ଗୁଳ୍ମ, ବର୍ଣ୍ଣାଦିକରି ସମସ୍ତ ଭୂତନ୍ତ (୨) ପୋଡ଼ିଲା । ତଦନ୍ତେ ସେ ଅଗ୍ନିରେ କରି ଜଗତଯାକ ଭସ୍ମକଲା । ବୃଦ୍ଧିରେ କରି ଷୋଳ ଚନ୍ଦ୍ରମାଙ୍କୁ ଉଦେ କରାଇଲା । କରି ପ୍ରଳୟ ମେଘ-ମାନ (୩) କଲ୍ପି ବୃଷ୍ଟି ମୁଷଳଧାରା ପ୍ରମାଣେ କରାଇଲା । ସେ ଜଳ ଫେନ ବୁଦ୍‌ବୁଦ କରି ଆବର୍ତ୍ତ କରି କଲ୍ପିଲା । ଚତୁର୍ଦ୍ଦଶ ଲୋକ ଯାକେ ପୂରିଲା । ଆଦିଅନ୍ତ ସବୁ ଜଳ କରି ଦେଖିଲା (୪) । ଜଳ ବ୍ୟତିରେକେ ଆନ ନାହିଁ ଜଗତେ ଏମନ୍ତ କରି ଜଳଧ୍ୟାନ କଲା, ଦଣ୍ଡେ ପରିଯନ୍ତେ । ଦଣ୍ଡକ ଭିତରେ ଅନେକ କାଳ ଗଲା ପ୍ରାୟ କରି କଲ୍ପିଲା । ତହିଁ ଉତ୍ତାରେ ଜଳ, ବ୍ରହ୍ମ, ଅଗ୍ନି ବଡ଼ବାନଳ ଧାରଣାରେ କରି ସେ ସମସ୍ତ ଅଗ୍ନି (୫) କରି ଦେଖିଲା । ସେ ଅଗ୍ନି ସଂଯୋଗେ ଆପଣ ହିଁ ଅଗ୍ନି ହୋଇଲା । ଏଥି ଉତ୍ତାରେ ଜଗତକୁ ପବନ କରି ଧ୍ୟାନ କଲା । ପବନ ହିଁ ସମସ୍ତଙ୍କଠାରେ ପୂରି ଅଛି । ଆନ ନାହିଁ । ସେ ପବନ ସଙ୍ଗେ ଆପଣ ହିଁ ପବନ ହୋଇଲା । ସେ ପବନର ଅବଶେଷ (୬) ନୀଳବର୍ଣ୍ଣ କରି ଧ୍ୟାନ କଲା । କରି ତହିଁ ଉତ୍ତାରେ ସେ ପବନଙ୍କୁ ପବନ (୭) ସଂହରି କେବଳ ନିର୍ମଳ ଆକାଶେ କରି ଜଗତକୁ ଦେଖିଲା । ଏମନ୍ତ ଦେଖିଲା । ଆଉ କିଛି ନାହିଁ । ଏ ଆକାଶକୁ ହିଁ ସେ ସମସ୍ତ ଠାରେ ପୂରି ଅଛି । ଏ ଆକାଶ ସଙ୍ଗେ ଆପଣ ହିଁ ଆକାଶ ହୋଇଲା ।

ଏଥି ଉତ୍ତାରେ ଦଣ୍ଡେ ରହିଲା । ଦଣ୍ଡକ ଭିତରେ ଅନେକ କାଳ ଗଲା ପ୍ରାୟେ କଲ୍ପିଲା । ସେ ଆକାଶକୁ ସତ୍ୟ ମାନି କରି ଅଣ୍ଡ ସ୍ୱରୂପ କରି (୮)

---

୧—ଏକାଦଶ 'ଖ'
୨—ଭୂତମ ନନ୍ତ 'କ'
୩—ମାଳ 'କ'
୪—'ଖ' ରେ ନାହିଁ
୫—ଅଗ୍ନିମୟ 'କ'
୬—ଅଶେଷ କରି 'ଖ'
୭—ପବନ ଘେନ 'ଖ'
୮—କାରୁଣ୍ୟ ସ୍ୱରୂପ 'କ'

ଅବୟବ ବ୍ୟାପୀ (୧) ନିର୍ମଳ ପରମ ସୂକ୍ଷ୍ମ (୨) ହୋଇ ଈଶ ଭାବେଛନ୍ତି (୩) ତାହାକୁ କଉଣସିମାନେ ଶିବ ବୋଲନ୍ତି । କେ ବ୍ରହ୍ମ ବୋଲି ବୋଲନ୍ତି । କେ ପରମେଶ୍ୱର ବୋଲନ୍ତି । ସେ ଭାବେ ରହିଲି । ତହୁଁ କଳ୍ପ ବୁଦ୍ଧି କଳ୍ପି ଚେତନା ଜାତ କଲି । ଏହାକୁ ବିଶ୍ୱ ଚିନ୍ତା (୪) ବୋଲି । ସେ ବିଶ୍ୱ ନିର୍ମିତ ସମୟରୁ ଯେ ଜଗତ ଧାରଣା ହୋଇ । ପୂର୍ଣ୍ଣ ସମୁଦ୍ର ପବନ ବୋହିଲେ ଯେମନ୍ତ ଚଳନ ହୋଇ । ତେମନ୍ତ ଭାବକୁ ସ୍ଥୂଳ (୫) ପ୍ରକୃତି କରି କଲି । ସେ ପ୍ରକୃତି ସତ୍ତ୍ୱ, ରଜ, ତମ, ସମବସ୍ଥାନ (୬) କଲି । ତହିଁର ମଧ୍ୟେ ସତ୍ତ୍ୱଗୁଣ ଯେ ସେ ନିର୍ମଳ । ତହିଁ ଶବଦଭାବ ପ୍ରତି ବସାଇ ମହତ ଭାବ (୭) କଲି । ମହତ ଅହଂକାର କଲି । ହେତୁକ (୮) ଈଶ୍ୱର ଭାବ କଲି । ଜୀବରେ ପ୍ରତିବିମ୍ବ ଜୀବ ହୋଇଲି । ହୋଇ ଆପଣାର ପୂର୍ଣ୍ଣ (୯) ଭାବ ଛାଡ଼ି ମନ ଭାବକୁ ଗଲି । ସେ ମନର ତହୁଁ ଆକାଶେକ କଳ୍ପିଲି । ଆକାଶୁଁ ପବନ କଳ୍ପିଲି । ପବନରୁ ଅଗ୍ନି କଳ୍ପିଲି । ଅଗ୍ନିରୁ ଜଳ କଳ୍ପିଲି । ଜଳରୁ ପୃଥ୍ୱୀ କଳ୍ପିଲି । କଳ୍ପି ଚତୁର୍ଦ୍ଦିଗ ଲୋକ ଯାକେ ଯେ ଯେଉଁଠାରେ ଅଛି ତାହା ମନେ ମନେ ବ୍ରହ୍ମ ସ୍ୱରୂପ କରି ଥାପିଲି । ସମସ୍ତ ଜଗତ ଯାକ ନୂଆ କରି (୧୦) ଭିଆଇଲି । ଭିଆଇ ଆପଣ ବିଷ୍ଣୁରୁ ପଦାରବିନ୍ଦରୁ ଚ୍ୟୁତ ହୋଇଲି ପ୍ରକାରେ ଗର୍ଭ ରୂପେ ରହିଲି । ରହିବ ତହୁଁ ଜନ୍ମ ହୋଇଲି । ହୋଇ ଈଶ୍ୱରଙ୍କ ଲୋଚନାଗ୍ନିରେ (୧୧) କରି ପାପ ପୁରୁଷକୁ ପୋଡ଼ିଲି । ପୋଡ଼ି ନିର୍ମଳ ହୋଇଲି । ମନେ ମନେ ଏମନ୍ତ ହୋଇ ଶୁଦ୍ଧ ହୋଇଲି । ଜଗତକୁ ନୂଆ କରି ଶୁଦ୍ଧ କଲି ।

---

୧—ଅନ୍ୟସ୍ୱ ରୂପ 'କ'
୨—ସୂକ୍ଷ୍ମ 'କ'
୩—ଈଶ୍ୱର ଭାବଚି
୪—ସୂକ୍ଷ୍ମ ଚିନ୍ତା 'କ'
୫—ମୂଳ 'କ'
୬—ସମ୍ଭାବ ଅବସ୍ଥା 'ଖ'
୭—ମହତ ତତ୍ତ୍ୱ 'କ'
୮—ଚେତକୁ 'କ'
୯—ପୂର୍ଣ୍ଣ 'କ'
୧୦—'ଖ' ରେ ନାହିଁ
୧୧—ଅଗ୍ନି ଲୋଚନେ କରି 'କ'

ଏମନ୍ତ (୧) ଉତ୍ତରେ ଏବଂଭୂତ ସମୟରେ ବଧାତା କଳ୍ପନାରେ ମାହେଶ୍ୱରୀର ଅଂଶେ, ଯୋଗିନୀବଂଶେ, ଲୀଳାମତେ, ପୁରାଣ ଶତମତେ, (୨) ଆପଣାର କୃତ୍ୟେ, କୌତୁକ ମତେ, ଅମଙ୍ଗ ନଷ୍ଟପ୍ରେ, ଖେଚରୀ ବପ୍ରେ, କାମରୂପା ସଙ୍ଗେ, କ୍ରୀଡ଼ାରସ ରଙ୍ଗେ, ସୂତକ ହରଣୀ ବୋଲି ଯୋଗ୍ନୀ ଏକ ଥାଇ । ଏ ଜଗତରେ ବାଳ ପୁଅମାନଙ୍କୁ (୩) ପାଲଟାଉ ଥାଇ । ଏ ନ୍ୟାୟରୁଟି ଷଷ୍ଠୀ ରାତି ଦନରେ ପୁଅମାନଙ୍କୁ ଜଗିଥାଇ (୪) । ତଥାପି ସେ ପାଲଟ କର ନଅଇ । କମ୍ପାନା (୫) ଏଣୁ କରିଟି ଜଗତ ଯାକେ କେହି କାହାର ଜନ୍ମ କଲର ପୁଅ ନୁହଁନ୍ତ (୬) । ମମତା କରି ବନ୍ଧନ ହୋଇଥାଇ । ଏମନ୍ତ କୌତୁକ ଦେଖିବାକୁ ଯାହା ଇଚ୍ଛାଏ କର ଖେଳୁଥାଇ । ସେ କୁମର ଜନ୍ମ ଦେଖି । ବକ୍ରତ ନୟନେ ନରେଖି । ସୁବର୍ଣ୍ଣ ସୋଣା ସ୍ତମ୍ଭେ ବସି, ଶିଶୁ ରୂପକୁ ରସି (୭) । ନବତନ ଚନ୍ଦ୍ର କଳାକୁ ଯେମନ୍ତ ନୀଳ ମେଘ ଆକର୍ଷଇ ସେହି ମତ କର କୁମରକୁ ପାଲଟାଇବାକୁ ଆକର୍ଷି ଅଇଲା । ସମସ୍ତ ଗୁରୁଜନମାନଙ୍କର ଜୀବନ ହରିଆଣି ଆପଣା ପଣନ୍ତେ ମନ୍ତ୍ରୀ ଗଣ୍ଠି ପାଡ଼ିଲା । ସମସ୍ତେ ମୃତଶବ ପ୍ରାୟେକ ହୋଇଲେ । ଏମନ୍ତ ସମୟେ ସେ ସୂତକ ହରଣୀ ସମ୍ପୂର୍ଣ୍ଣ ଭୟଙ୍କର ମୂର୍ତ୍ତୀ, କୁମରକୁ ନେବାକୁ ବସୁରୁଅଛି । ସେ ସୂତକ ହରଣୀ କେମନ୍ତ ଅଟଇ ।

ଦେହ ଅନ୍ଧକାରକୁ ସଦୃଶ କଲା । ଚକ୍ଷୁ ଦୁଇ ପିଙ୍ଗଳା । ଚନ୍ଦକୁଣ୍ଡ ବଶାଳ । ଆୟୁତ ସରଳ ବରଳା । ଅପାଙ୍ଗ ତରଳ ତରଳା (୮) ବଜୁଳି ପ୍ରାୟେକ ଜିହ୍ୱା ଦଶଇ । ବାଳଚନ୍ଦ ପ୍ରାୟେକ ଦନ୍ତ ପନ୍ତ ପ୍ରକାଶଇ । ଭ୍ରୂଲତା ଦୁଇ ସ୍ତମ୍ଭୀ ଅଛି । ସ୍ତନ ଦୁଇ ଲମ୍ବ ହୋଇ ଆଣ୍ଠୁ ପରଯନ୍ତେ

---

୧—ଏଥି 'କ'
୨—ସନମତେ 'କ'
୩—ନଉତନ ବାଲକମାନଙ୍କୁ
୪—ଜଗାଇ ଥାଇ 'କ'
୫—ଏ ନ୍ୟାୟଁ 'କ'
୬—ନୋହଇ 'କ'
୭—'ଖ' ରେ ନାହିଁ
୮—'ଖ' ରେ ନାହିଁ

ଲମ୍ବି ଅଛୁ । କୃଷ୍ଣ ବସ୍ତ୍ରେକ ପିନ୍ଧି ଅଛୁ । ଲଣ୍ଡାଇଁଗୁଳପୁଲେକ କବେରୀଭାର ବାନ୍ଧି ଅଛୁ । ଜଘନ ବଳାକା ପ୍ରାପ୍ତେକ ଶୋଭା । ମଧ୍ୟଦେଶ ମୃଦଙ୍ଗ ପ୍ରାପ୍ତେକ ଆଭା । ଅଧର ଜମ୍ବୁ କୋଳି ପ୍ରାପ୍ତେକ କଳା । ଭ୍ରୂଲତା କୃଷ୍ଣ ସର୍ପିଣୀ ପ୍ରାପ୍ତେକ ଲୀଳା । ଚକ୍ଷୁ ଗମ୍ଭୀର ନଦୀକୁହରେ ନୋଟକ । ରୋମାବଳିମାନ ପ୍ରକାଶ ଚମ୍ପ ହାଟକ । ଗଭୀର ଉଦର । ସୁସ୍ୱର ଶବ୍ଦ କରଇ (୧) ଯେଉନ୍ତ ଅର୍ଦ୍ଧଭଗ୍ନ ଭେରୀ । ଏମନ୍ତ ବେଶ ହୋଇ କୁମରକୁ ନେବାକୁ ଅଇଲ । ଅସି ଅଧୋମୁଖ ହୋଇ ଭୂମିକି ଲଇଁଲ । କେମନ୍ତ ଦିଶିଲ । ଯେମନ୍ତ ମୃତ୍ୟୁ ଦେବତା କାଳଫାଶି ଘେନି ମୃତ୍ୟୁ ପିଣ୍ଡକୁ (୨) ଆକର୍ଷିଲ ।

ଏମନ୍ତ ଦେଖି କୁମର ହୃଦଗତେ ବିଚାରିଲ । ଏ ପିଶାଚୀ କେ । ମୁଁ ତ କୈଳାସ (୩) କନ୍ଦରେ, ପାର୍ବତୀଙ୍କ କଣ୍ଠରେ, ଅନେକ ଯୋଗ୍ନୀମାନନ୍ତ ଦେଖିଅଛୁ । ଏମନ୍ତ ରୂପ କହିଁତ ଦେଖି ନାହିଁ । ଏ ମୋତେ ନେବାକୁ ଉଦ୍ୟମ ଅଛୁ । ସେ କୁମର ଏମନ୍ତ ବିଚାରି, ପାର୍ବତୀଙ୍କି ସୁମରି । ଚିତ୍ତ ଧାରଣାରେ କରି, ମେରୁ ମୃଦ୍ରା ଆଚରି, ଅଚଳ ଭାବେ ରହିଲ ।

ଏମନ୍ତେ ସେ ପିଶାଚୀ କୁମରକୁ ଧରି ଟୋଳିଲ । କୁମର ଭୂମିରୁ ତିଳାର୍ଦ୍ଧେ ନଟଳିଲ । ପୁଣ ପୁଣ ଆକର୍ଷି ହୁଁକାର ନାଦେ ଟୋଳନ୍ତେ ହେଁ ନ ଉଠିଲା । ମୁଖନେତ୍ର କର୍ଣ୍ଣ (୪) ନାସିକାଦ୍ୱାରେ ରୁଧିର ସ୍ରବିଲ । ଏତେ ଉଦ୍ୟମେ ନ ଉଠିଲା ଯହୁଁ । କୁମରକୁ ବଳେକରି ହତ(୫) କରିବାକୁ ବିଚାରିଲ ତହୁଁ । ଏମନ୍ତ ବିଚାର ଜାଣି ସେ କୁମର ଠହ ଠହ ହୋଇ ହସି ଉଠିଲା । ସେ କୁମର ସୁସ୍ୱର ବାଣୀ ଶୁଣି, ମନେ ମନେ ଗୁଣି, ସେ କୃତାନ୍ତ ଯୋଗ୍ନୀ ସୂଚକ ହରିଣୀ ମହା ଆଶ୍ଚର୍ଯ୍ୟ ପାଇଲ । ସେ ସ୍ତମ୍ଭୀଭୂତ ହୋଇ କୁମରକୁ ଗୃହିଁଲ । ଭୟ ମାଡ଼ିଲ । ଶ୍ୱାସ ଛୁଡ଼ିଲ ।

---

୧ — ସୁସ୍ୱର ବଚନେକ କହନ୍ତ 'କ'
୨ — ମର୍ତ୍ତ୍ୟ ଲୋକକୁ 'ଝ'
୩ — କପିଳାଯେ 'ଭ'
୪ — ଶ୍ରବଣ 'ଭ'
୫ — ନାଶ 'କ'

ବୁଦ୍ଧି ସ୍ଥିର କରି ତାହାର ଅନ୍ତର୍ଗତେ ବିଚାରିଲା । ଆହୋ ଏତ ବଡ଼ ବଚନ । ସୁର, ନର, ଗନ୍ଧର୍ବ, ଯକ୍ଷ, ରାକ୍ଷସ, କିନ୍ନର ସହିତ କରି ମୋହର ବିଘ୍ନ ଶକ୍ତିରେ କରି ସମସ୍ତ ବାଳ ପୁଅମାନଙ୍କୁ ପାଳଣ୍ଟାଉ ଥାଇ । ଏମନ୍ତ ପୁରୁଷ କାହିଁ ଦେଖିଲି ନାହିଁ । ଜନ୍ମ ହୋଇଲା ପୁଅ ହସଇ କାହିଁ । ପୂର୍ବେ ମୋତେ ଦେବତାମାନେ କହି ନାହାନ୍ତି କି, ବାସୁଦେବ ଭକ୍ତ ଲୋକମାନଙ୍କୁ ପାଳଣ୍ଟାଇ ନ ପାରିବୁ ବୋଲି । ଏ ନିଷ୍ଟପୁ ବୈଷ୍ଣବ ଅଟଇ । ମୋହର ମନକୁ ଘଟଇ । ନୋହିଲେ ପର୍ବତ ତଳେ ମୋହର ଚହଲେ । ଏ କମ୍ପା ନ ଉଠିଲା ଅତ୍ୟନ୍ତ ବଳେ । ଏହାକୁ ମୁଁ ସମ୍ଭାବନା କରିବି । ତଦନ୍ତ କଥା ପଚାରିବି ।

ଏମନ୍ତ ବିଚାରି ସେ ଯୋଗୀ ନ ପଚାରୁହୁଁ କୁମର ବୋଲୁଅଛି । ଆଗେ କେଉଁ ମାୟା । ନହଣଇ ଛାୟା । ନୀଳବର୍ଣ୍ଣ କାୟା (୧) । ମୋତେ ନେବାକୁ କମ୍ପାଇ ହେଉଅଛୁ ଏତେ ଉତ୍ସାହ । ଏ ପ୍ରପଞ୍ଚ ଦେହ ଗୋଟାକୁ ଆବୋରି । ପ୍ରକୃତି ଭାବେ (୨) କରି କାଳର ବଳକୁ ଯାଉଅଛୁ । ଅଜ୍ଞାନ ହିଂସା ବହୁଅଛୁ । ଅବ୍ୟାପାରେ ରହିଅଛୁ । ବିଶ୍ରାନ୍ତିକୁ ନ ଗଲୁ । ପିଶାଚ ରୂପ ବହି । ସକଳ ଦୁଃଖ ସହି । ମନେ ମନେ ହରଷ ଅଛୁ ଏଥୁଁ କିବା କି ସୁଖ ପାଉଅଛୁ (୩) । ଶ୍ରେୟରତ ଲେଶ ହିଁ ନ ଜାଣୁ ଜୀବଭାବ ଆବୋରି ପରାପର ମଣୁ (୪) । ତୋତହୁଁ ଦୁଃଖୀ ଜନ୍ମୁ (୫) ନାହିଁ । ସୁଖର ଲେଶ ଅବା ପାଇବୁ କାହିଁ । ଅରଣ୍ୟେ ମାଳତୀ ପୁଷ୍ପ ଯେମନ୍ତ ସେହି ମତ ଏ ନବ ଯୌବନ ଅବସ୍ଥା ତୋର ବ୍ୟର୍ଥ ହୋଇ ହୋଇଲା ଜରଣି । ଉତ୍ତମ ବୁଦ୍ଧି ଯେବେ ପାନ୍ତୁ । କୈଳାସ କନ୍ଦରେ ପରିଚାରିକା ହୋଇ ପାର୍ବତୀଙ୍କର ଅଙ୍ଗ ସଙ୍ଗ ପାନ୍ତୁ (୬) ନୂର ଭାବେ

---

୧ — ନ ହଣଇ ଭୟଙ୍କର କାୟା, ନୀଳବର୍ଣ୍ଣ ଛାୟା 'କ'

୨ — ବଶେ 'କ'

୩ — ଅବ୍ୟାପାରେ — ପାଉଅଛୁ" ପର୍ଯ୍ୟନ୍ତ 'ଖ' ରେ ନାହିଁ ।

୪ — ନ ମଣୁ 'ଖ'

୫ — ଦୁଃଖୀର ଜନ୍ମ ନାହିଁ 'ଚ'

୬ — ସଙ୍ଗେ ଥାନ୍ତୁ 'କ'

(୧) କର ହେଁ ହୋଇଲୁ ଅସୁଖମତ (୨) ତହୁଁ ହ୍ରିଡମ୍ମୀ ବୋଲ ତୋତେ ବୋଲନ୍ତି ସମସ୍ତ । ତୋହର ଦୁଃଖ ଦେଖି ମୁଁ କଲି ଦୟା । ଏବେହେଁ ଗୁଡ଼ ଏ ଦୁର୍ବୁଦ୍ଧି (୩) ମାୟା । ଏହା ପୁଣି ଏ ସୁତକ ହାରଣୀ ବୋଲୁ ଅଛୁ । ହେ ବତ୍ସ । ଆଜହୁଁ ହୋଇଲ ଧନ୍ୟ । ଆଜର ଦିବସ ହିଁ ମୋହର ଅତିଅନ୍ତ ପୁଣ୍ୟ । ମୋହର ମନକୁ ତୁ ଏମନ୍ତ ଘଟୁ । ତୁମନଙ୍କେ ପ୍ରତ୍ୟକ୍ଷେ ଈଶ୍ୱର ଅଟୁ । ଏବେତୁ ପୂର୍ବବତ ହୋଇ ହସୁ କିନା ? ତୋହର ବଦନ ଶଶି ଏବେ ପ୍ରକାଶୁ କିନା । ମୋତେ ଆତ୍ମା ଉପଦେଶ କହୁକିନା । ମୋହର ପ୍ରକୃତି ବନ୍ଧ ଫେଡ଼ୁ କିନା । ତୋହର ବଦନ କମଳୁଁ ଉପଦେଶ କମଳ ଦେଉ କିନା ? ମୋହର ପଟଳ ଛଡ଼ାଉ କିନା । ତୋହର ପରଶୁଷ୍ଟ ହୋଇ ଥାଇ କିନା । ମୁଁ ଅଭୟ ପଦ ପାଇକିନା ? ମୁଁ ଅବଲୋମଶ୍ଚି (୪) ଜାଣଇ କିନା । ସବୁ ତୃଣ ପ୍ରାୟେ ମଣଇ କିନା । ତୋତେ ଗୁରୁକରି ଗଣଇ କିନା ? କାଳଚକ୍ର ମଳ ଦୁଷ୍ଟ ଦୁର୍ବାସନା କାମଣେକୁ ଶ୍ରମଇ କିନା । ଜଳ, ଅଗ୍ନି, ବାତ, ପିତ୍ତ, ଶୀତ, ହତେତ, ଲୋହିତ, ଗତ ଦୁର୍ମିଷ୍ଟ ଦୁଃଖରୁ ସୁଖ ଲଭଇ କିନା । ଅତି ଅପ୍ରମେୟ ଶିବ ସାନ୍ଦ୍ର ଶାନ୍ତ ସୁଖ ଲଭଇ କିନା (୫) ।

ସେ ସୁତକ ହରଣୀ କୁମରକୁ ଗୃହିଁ ଏବଂଭୂତ ସାତ୍ତ୍ୱିକ ଶରଧାରେ ବୋଇଲା ଯହୁଁ । କୁମର ପ୍ରସନ୍ନ ହୋଇ ଅନୁଗ୍ରହ କଲା ତହୁଁ । ଉରହାସ ହୋଇ କୁମର ବଚନ ବୋଇଲା । ଧନ୍ୟ ଧନ୍ୟ ଏ ତୋ ବୁଦ୍ଧି, ତୋହର କାହୁଁ ହୋଇଲା । ଏ ବଚନ ଶୁଣି ସୁତକ

---

୧ – ଷବୁଁ 'ଙ'
୨ – ଆସି ମନ୍ତ୍ରୀ 'ଙ'
୩ – ବିଷ୍ଣୁବୁଦ୍ଧି ମାୟା 'ଙ'
୪ – ଅନୁଲୋମ ପ୍ରତିଲୋମ 'ଙ'
୫ – ଜଡ଼ଜବ ସମୁଦ୍ର ଶୁଖାଉକି ନା ? ପାପ ପଟଳ ଖଣ୍ଡାଣ୍ଡକନା ମୋତେ ପରମ ପଦରେ ମିଶାଉ କିନା ! ମୁହିଁ ପଞ୍ଚମ ମାହେଶ୍ୱରୀ ପଦ ବହଇ କିନା ?
'ଙ' ରେ ଅଧିକ ଅଛି ।

ହରଣୀ ବୋଇଲା । ସକଳ ଜଗତରେ ସମସ୍ତ ଋଷି ଦେବତାମାନଙ୍କର ଗୋଷ୍ଠୀରେ ପାରୁଷ୍ୟବନ୍ତୀ ହୋଇ ଶୁଣୁଥାଇ । ଇନ୍ଦ୍ରାଦି ଦେବତାମାନେ ବ୍ରହ୍ମାସନ୍ନତେ ଯାହା ଜାଣିବାକୁ ଇଙ୍କ ପ୍ରାୟେକ (୧) ହୋଇ ପ୍ରାର୍ଥନା କରୁଥାନ୍ତି । ତାହାଶୁଣି ମୋହର ଶ୍ରଦ୍ଧା ହେଉଥାଇ । ପୁଣି ସଦ୍‌ଗୁରୁ ନ ପାଇ (୨) ଆଦର ନ ପାରଇ । ତୁ ଏବେ ମୋତେ ଅନୁଗ୍ରହ କର । ଏ ଜଡ଼ମତ ବୁଦ୍ଧିରୁଁ ମୋତେ ଉଦ୍ଧର । ଏହାଶୁଣି କୁମର ବୋଇଲା । ପ୍ରାଣିମାନଙ୍କର ବାସନା କର୍ମବଳରେ ସେ ସିଦ୍ଧ ହୋଇ । ଯେହ୍ନେ କ୍ଷୁଧାର୍ତ୍ତୀ ଲୋକ ଦୁଇହାତେ ଭୁଞ୍ଜଇ । ତୋହର ଏ ପ୍ରାର୍ଥନା ସିଦ୍ଧ ହୋଇବ । ପୁଣି ଏ ସମୟେ ନୁହଇ । ତୁ ମୋହର ଧାଈ ହୋଇ ମୋତେ ପର ପାଳନା କରୁଥା । ମୋହର ଯୁବାସମୟରେ ତୋତେ ଉପଦେଶ ଦେବି । ଏବେରୁ ବାସୁଦେବର ନାମ କୀର୍ତ୍ତନ କରୁଥା । ପ୍ରଥମ ଉପଦେଶ ହଁ ଏହିଟି । ଉପଦେଶମାନଙ୍କର ଓ ଜ୍ଞାନମାନଙ୍କର ଜନନୀ ଏ ରାଜାଟିଏ ।

ଏଥୁଁଟି ସମସ୍ତ ଜ୍ଞାନମାନ ଜାତ ହୁଅଇ । ଯେମନ୍ତ ସେ କ୍ଷୀର ସମୁଦ୍ରୁଁ ସମସ୍ତ ଦ୍ରବ୍ୟମାନ ଜାତ ହୋଇଲେ । ଏତେକ ବୋଲି ସେ କୁମର ତୁନି ହୋଇ ରହିଲା । ସୂତକ ହରଣୀ ଧାଈ ହୋଇ ରହିଲା (୩) । ସେହିକ୍ଷଣି ସେ ପିଶାଚୀ ଭୟଙ୍କର ମୂର୍ତ୍ତି ତେଜି ଦିବ୍ୟ ମନୁଷ୍ୟ ରୂପ ଧଇଲା । କନକ ସମାନ ପିଙ୍ଗଳ କୁଟିଳ ଯେଉଁ ଖାଙ୍କର କେଶ ଦିଶୁଥିଲା, ତାହା କାଳିନ୍ଦୀ ତରଙ୍ଗ ପ୍ରାୟେକ କଳା ଦିଶିଲା । ଅନନ୍ତ ଜଡ଼ ତିମିର ଅନ୍ଧକାରକୁ ସଦୃଶ କଳା ଯେବଣ ଶରୀର ହୋଇଥିଲା, ତାହା ଚମ୍ପକ କେତକୀର ମଧ୍ୟଦଳ ପ୍ରାୟେକ ସ୍ନିଗ୍ଧ ଗଉର ବର୍ଣ୍ଣକଲା । ବିକୃତ ବିକାର ଯେବଣ ସେ ମୁଖମଣ୍ଡଳ, ତାହା ଶରଦ ଚନ୍ଦ୍ର ପ୍ରାୟେକ କଲା ଉଜ୍ଜ୍ୱଳ । ତରଳ ଅପାଙ୍ଗେ ପୁରଜନ ମୋହିଲା । କୃଷ୍ଣ ସର୍ପିଣୀର ପ୍ରାୟେ ଯେବଣ ସେ ଭ୍ରୂଲତା ଦ୍ୱୟ ଦିଶୁଥିଲା, ସେ ଅତନୁକରେ ଥାନ୍ତା ଗୃପକୁ ନିନ୍ଦାକଲା । ବିକୃତ ନୟନ ତାହାର୍ ନୀଳୋତ୍ପଳ ପ୍ରାୟେକ କଲା । ନାସା ତିଳକୁସୁମକୁ ମୋହିଲା । ଯେବଣ ଅଧର ଜମ୍ବୁଫଳ ପ୍ରାୟେକ କଳା ସେ ବନ୍ଧୂଳୀପୁଷ୍ପ ପ୍ରାୟେକ ସୋହିଲା । ବାଳ ଚନ୍ଦ୍ରମା ପ୍ରାୟେକ ଯେ

---

୧ — କଙ୍କର 'ଖ'
୨ — 'ଖ' ରେ ନାହିଁ
୩ — ସୂତକହରଣୀକି ପରିବାଶ କରି ମୋହିଲା 'କ'

ଦନ୍ତପନ୍ତି ଦିଶୁଥିଲା ତାହା କୁନ୍ଦ କଢ଼ିର କାନ୍ତି ପ୍ରାପ୍ତ ହୋଇଲା । ବିଜୁଳିର ପ୍ରାୟେ ଯେବଣ ସେ ରସନା ଦିଶୁଥିଲା ଆରକ୍ତ କୁମୁଦ କୁସୁମ ପ୍ରାୟେକ କଲା । କଣ୍ଠ ବେନିକବା କ ପଟାନ୍ତର ଦେବା । ସେ ତାଙ୍କ ଚନ୍ଦ୍ରେ ଜଡ଼ି ପାଇଲା ଶୋଭା । ଅର୍ଦ୍ଧଭଗ୍ନ ଭେଷା ପ୍ରାୟ ଯେବଣ ବଚନ ଶୁଭୁଥିଲା । ସେ ବସନ୍ତ ଋତୁର ଅଣ୍ଡିର କୋକଳକୁ ଗଞ୍ଜିଲା (୧) । ଲଣ୍ଡାବଗୁଲ-ପୁଷ୍ପ ଯେଉଁ କବରୀରେ ବାନ୍ଧିଥିଲା, ତାହା ସୁବାସ କୁସୁମେ ରଚିଲା । ସ୍ତନ ଦୁଇ ଯେ ଆଣ୍ଠୁ ପର୍ଯ୍ୟନ୍ତ ଲମ୍ବିଥିଲା ତାହା ଶିଶୁ ଗଜକୁମ୍ଭର ପ୍ରାୟେକ ହୋଇଲା । ଜଘନ ବକଚରଣ ତାହାର ଉଲଟରମ୍ଭା ପ୍ରାପ୍ତ କଲା । ଗମନ ରାଜହଂସୀର ପ୍ରାୟେକଲା । କୃଷ୍ଣ ବସ୍ତ୍ରେକ ଯେ ପିନ୍ଧିଥିଲା ତାହା ସ୍ନିଗ୍ଧ ଚିକ୍‌କଣ କ୍ଷୀନ ଶୁକ୍ଳ କଲା ।

ଏବଂଭୂତ ପ୍ରକାରେ ସୁତକ ହରଣୀ ରୂପକୁ ଧରି ଧାମୀ ହୋଇ ରହିଲା । ସମସ୍ତ ପୁରଜନ ମାନଙ୍କର (୨) ଜୀବ ଆତ୍ମା ହରିଆଣି ଆପଣା ଅଞ୍ଚଳେ ମନ୍ତ୍ରୀ ଗଣ୍ଠି ପାଡ଼ିଥିଲା ତାହା ଫେଡ଼ିଦେଲା । ସକଳ ଜୀବମାନେ ଜୀବନ ପାଇ ଉତ୍ସବ ହୋଇ ରାଣୀର ପୁତ୍ର ଜନ୍ମ ଦେଖିଲେ (୩) । ସମୁଦ୍ର ଘୋଷ (୪) ପ୍ରାଏ କରି ଆନନ୍ଦ ଶବ୍ଦମାନନ୍ତ କଲେ । ନାନାତୀର୍ଥଜଳ ମାନନ୍ତ ଘେନି କୁମରକୁ ସ୍ନାନ କରାଇଲେ । ଭୂମି ଗୋ (୫) ଦକ୍ଷିଣା କରି ଦାନମାନନ୍ତ ଦେଲେ ।

ସେ ସୁତକ ହରଣୀକି ଦେଖି ସମସ୍ତେ ଆନନ୍ଦ ହେଲେ । ଧାଈ କରି ରଖିଲେ । ବୋଇଲେ—କୁମରକୁ ପ୍ରତିପାଳନା (୬) ନିମିତ୍ତେ "ଅବା ଷଷ୍ଠୀଦେବୀ ଅବା ମୂର୍ତ୍ତିମନ୍ତ ହୋଇ ଅଇଲେ ବୋଲି । ଏମନ୍ତେ ସେ ରାଜାର କୁଳଦ୍ଧି ହୋଇଲା ନଭମଣ୍ଡଳ (୭) ଜାଣି । ତହିଁକି ପୌର୍ଣ୍ଣମୀ ଚନ୍ଦ୍ର

---

୧—ଅଣ୍ଡିର କୋକିଳ ପ୍ରାୟେକ ସୁସ୍ୱର ଶୁଭିଲା 'କ'

୨—ପ୍ରାଣୀମାନଙ୍କର 'କ'

୩—ତାହା ଫେଡନ୍ତେ ହେଁ ସମସ୍ତେ ହେଁ ଉଠିଲେ । ଉତ୍ସବ ହୋଇଲା, ରାଣୀର ପୁତ୍ର ଜନ୍ମ ଦେଖିଲେ 'କ'

୪—ଘୋର ଗର୍ଜନ 'ଖ'

୫—ଭୂ 'ଖ'

୬—ପ୍ରତିପାଳିବା 'କ'

୭—କ୍ଷୀର ସମୁଦ୍ର 'କ'

ପ୍ରତ୍ୟେକ ଜନ୍ମ ଲଭିଲା କୁମର ମଣି । ଶଶିପ୍ରଭା ରାଣୀର ମନ କୁମୁଦ ଫୁଟିଲା । ଅନଙ୍ଗ ପଦ୍ମାକର ରାଜାର ଚିନ୍ତା ମେଘ ଛୁଟିଲା । ରାଜାର ମନ୍ଦିରହିଁ ସେ ଗଗନ ହୋଇଲା । ଅନେକ ରାଜାମାନଙ୍କର ଗର୍ବ ହିଁ ସେ ଚନ୍ଦ୍ରବାକ ପ୍ରତ୍ୟେକ ହୋଇ ଶୋହିଲା । ଖଳ ଅମନାତ୍ୟମାନେ କମଳ ବନ ପ୍ରତ୍ୟେକ ହୋଇଲେ । ସାଁବନ୍ତ ଜନମାମାନେ (୧) ମାଳୋପୃଳ ପ୍ରତ୍ୟେକ ଶୋହିଲେ ।

ଏମନ୍ତ ଦେଖି ସେ ରାଜା ଆନନ୍ଦ ସମୁଦ୍ରେ ମନବୋଇତ ବୁଡ଼ିଲା । ଚିନ୍ତା ମେଘ ଉଡ଼ିଲା । ଦରିଦ୍ର ଲୋକକ ପାଇଲା ନିଧି । ଜନ୍ମଅନ୍ଧ ପାଇଲାକ ଦିବ୍ୟାଞ୍ଜନ ମହୌଷଧି । ମହାବୃଦ୍ଧ ପାଇଲାକ କଳ୍ପ ଔଷଧୀ । ସ୍ଥାବର ପାଇଲାକ ଚରଣ ଶକ୍ତି (୨) । ମୋକ୍ଷାର୍ଥୀ ପାଇଲାକ ଜୀବନ ମୁକ୍ତି ।

ଏମନ୍ତ ପ୍ରକାରେ ରାଜା ଆନନ୍ଦ ସମୁଦ୍ରେ ଥାଇ, ଭଣ୍ଡାରମାନନ୍ତ ଦାନଦେଇ । ଯାଗ ମାନନ୍ତ କରାଇ । ହାଟ ପେଣ୍ଠ ମାନନ୍ତ ଜୁରି ହେଉ ବୋଲି ଆଜ୍ଞାଦେଲେ । ଏମନ୍ତ ବୋଲି ହୁରିଆଏ ମାଡିଲେ । ବଣିଜାରେ ଡାକିଲେ । ସେବସୁଧା ମଣ୍ଡଳ କଟକରେ । ହୁଡ଼ିଆ, ଡୂରିଆ, (୩) ଥେଣ୍ଟ (୪), କାଣ୍ଡିଆ, ଗୈର, ଜୁଆର, ପୋଖଡ଼ (୫), ପେଣ୍ଡିଆ ଲହାରି ବଡ଼ା, ଲୁଲୁମ୍ପା, ଗୃହୁଟିଆ, ଘଣ୍ଟିଆ, ଲେଖୁଆ, ଲୋକଂ, ଲମ୍ବ-ହଟା, ନାଟୁଆ, ମଙ୍ଗଳ ବନ୍ଧଆ, ହାଟୁଆ, ବାଟୁଆ, ଥାଟୁଆ, କାଠୁଆ, ମଠିଆ, ଷଠି ଦେଉରିଆ, ରଗଡ଼ା, ଧାଣୁଆ, ବୋଲା, ପେଲା, ପାହାନ୍ତିଆ, ଧଙ୍ଗା, ମାଲୁଆ, ବାବୁଆ, ଖେଚଡ଼ା, ଶରଡ଼ା, ଘୁରୁଣା, ମାଡ଼ୁଆ, ଝମାଳିଆ, ଟାହିମେଲା, ଟାକେରିଆ, ଗଣ୍ଡୁଆ, ହୁଲୁହୁଲୁଆ, ହାଥିଓରା, ମେଳଆ, ମଣ୍ଡୋବସା, (୬) ବଢ଼ି ଗୋଲିଆ, ଫାସିଓରା, ଫୁଟିଆବନ୍ଧା, ଖରଡଙ୍ଗା, ଖରଡ଼ିଆ, ଖାଙ୍ଗେରିଆ, ଘାରିଆ,

---

୧—ମାଆମାନେ 'କ'
୨—ସ୍ଥାବରକୁ ଜାତ ହୋଇଲାକ ଚନ୍ଦନ ଶକ୍ତି 'କ'
୩—ତୁରିଆ 'କ'
୪—ପେଣ୍ଡୁ ଗଣ୍ଡିଆ 'କ'
୫—ଗୋଖଡ଼ 'କ'
୬—ମଣ୍ଡୋଅବସା 'କ'

ଧଡ଼ା, ଧରକଡ଼ା, ଧୋବା ଭୁଠିଆ, ଉଝଉଠା (୧), ପେଗଡ଼ଆ, ମୁହଁପୋଡ଼ା, ଧୁଡ଼ା, ଧୂଳଧମ୍ବା, ଧୋଅଗ୍, ପଖିଆ, ପଖାଳଖିଆ, ଭେଝା, ପେଲପେଲ ପଣା, ଆଗତ ବୋଲ୍, ଗିଳୁଆ, ଡାହାଣା, ଡାମରକୋଆ, ଡଙ୍ଗର୍, ଗୋଳଆ, ଘେଗା, ଘେଗକୁହା, ବର୍ତ୍ତୀଙ୍ଗହୀନା, ଝାକରଖିଆ ଛଇଳା, ଗୁଞ୍ଜୁଣିଆ, ନାସିକାବହୀନା, ପେମ୍ପଲ୍, କଉଁଶଆ, ଛୁରଆ, ଥୋଲୁଡ଼ା, ପିଣ୍ଡାବସା, ଝକା, ମେଳଆ ଇତ୍ୟାଦି କରି ସକଳ ନଗ୍ରଧମମାନେ ଜୁର ଶଙ୍ଖ ଶୁଣି ଧାଇଁଲେ ଗହଳେ ।

ସେ କଟକେ ଘେଳେ ପଶି ଗୋଳେ ମିଶି ଧାଉଁଛନ୍ତି କେ କ୍ଷୁଧା ଆକୁଳେ । ଅତି ବକଳେ କେ ସୁସ୍ୱାଦୁ ପଦାର୍ଥମାନ ଖାଉଅଛନ୍ତି । କେ ଚାଲ୍ଲ ପଗ୍ରଏ । ଧାନ ପସଗ୍ରଏ, ଧାଇଁପଡ଼ି ମୂଣ୍ଡିଆଇ ନେଉଅଛନ୍ତି । କେତ୍ହୁ ଆଗତ ହେଉଛନ୍ତି । କେ ବାଳ ତରୁଣୀଙ୍କର କଙ୍କଣମଣି କଟିମେଖଳା ଫେଇ ହସ୍ତୀ ଅପଗତ ହସ୍ତୀ ଆଗପଛ ନେଉଛନ୍ତି । କେ ସୁନ୍ଦର ସ୍ତ୍ରୀ ମୂରୁଛୁ ନ ପାରି ଗହଳେ ପଶି କୋଳ କରୁଅଛନ୍ତି । କେ ବଜସ୍ଥାବଳେ ଅତି ଗହଳେ ଗୁଡ଼ଖାଇ ଥୋଉ ଧୋଉଅଛନ୍ତି । କେ ଜନ ଗହଳେ ଧନ ବହଳେ ହାତ ଆଞ୍ଜୁଳାଏ ବାଣ୍ଟୁଅଛନ୍ତି । କେ କଉୁଷ୍ଟ ଘେନ ଘଣ୍ଟି ବଳତା ଏକେ ଆରକେ କାଟୁଅଛନ୍ତି । କେ ଛେନା ଚାଡ଼ପା ସରଫେଣୀ ଉସତ ପାଇ ଝିଣ୍ଟୁଅଛନ୍ତି । କେ ବାଜଣାନେ ପଶି ବଡ଼ ବଡ଼ ଘୋଡ଼ା ବାନ୍ଧି ଚଢୁଅଛନ୍ତି । କେ ନେଇ ନ ପାରି ଉଗାଳ ହୋଇ ଅବନାରେ ପଡ଼ି ଗଡ଼ୁଅଛନ୍ତି । କେ ବାଡ଼ବାଟେ ପୃଷ୍ଠ ବାଟେ ବାହାର ହୋଇ ଯାଉଅଛନ୍ତି । କେ ବଳବନ୍ତ ଲୋକଙ୍କର ହାତେପଡ଼ି ଝାକର କହୁଣୀ ଖୁନ୍ଦା ଖାଉଅଛନ୍ତି । ଏମନ୍ତେ ସେ ବସୁଧା ମଣ୍ଡଳ କଟକରେ, ବାବୁ, ଗୋଳରେ କେବଣ କେବଣ ପଦାର୍ଥମାନ ଜୁର ଯାଉଅଛନ୍ତି । ଅପୂର୍ବ ଫେଁ କ୍ଷୀରୋଦ ପାଟ । ଦାସୀନେତ । ଗଜଗ୍ର ବେତ । ଶ୍ୱେତ ଚାମର । ଚିନ୍ତାମଣି ରତ୍ନ, ସ୍ନିଗ୍ଧ ବୈଦୂର୍ଯ୍ୟ, ପଦ୍ମଗ୍ରଗ ମାଣିକ୍ୟ ବ୍ରହ୍ମକତ ହୀରାଜାଣ ହାର ପାରେଆ, ଶ୍ୱେତଧ୍ୱଜ (୨) ଖଡ଼୍‌ଗ, ବନ୍ଦୀ ପାରରସ । ସ୍ୱମନ କଙ୍କଣ । ଧାପ ପ୍ରବାଳ । ଗଜମୋତି ହୀରା, ମେଷ ଲୋଚନ ମାଳା । କୁହୁ କୁଣ୍ଡଳ ପକ୍ଷୀ । କୁଶ ମୃଦାଙ୍ଗ । କାଶ୍ମୀର ସ୍ଫଟିକ । ଘାଜହଂସ ।

---

୧ — ଝଠା ବଇଠା 'ଝ'

୨ — ଶୁଦ୍ଧ ଝ

ମାଣିକ୍ୟ ଧାତ । ବ୍ରହ୍ମାଜାତ ହୀରା । ରୁଦ୍ର ଜାତ ପୋହଳା । ଉଗିଲା ମର୍କତ । ଇନ୍ଦ୍ରନୀଳମଣି । ସ୍ଫଟିକ ସୈନ୍ଧବ । ଜାର ମହୁରା । ସୁବର୍ଣ୍ଣ କଳଶ । ଅଭେଦ କବଚ । ଭସ୍ମ କାଞ୍ଚନ । ହିରଣ୍ୟ ଗର୍ଭ ଶାମୁକ, ଡାହାଣ ବର୍ତ୍ତିକ ଶଙ୍ଖ, ଶାଳଗ୍ରାମ ଶିଳା, ନାଗେଶ୍ୱର ବାଣ, ଅମୃତ କୁଣ୍ଡଳ, ମୃଗନାଭି କସ୍ତୁରୀ, ଚନ୍ଦ୍ରକାନ୍ତ ମଣି, ତାରା ମଣ୍ଡଳ ପଟମ୍ବା, ଶଶିଖଣ୍ଡ କର୍ପୂର, ଶ୍ରୀଖଣ୍ଡ ଚନ୍ଦନ । ତରଳ ତଇଳ । ପମାର ମାର । ପାଠବାଲି ସୁଆ । ବଜ୍ରତାଳ ମେଣ୍ଢା । କପିଳା ଗାଈ । ନାଚୁଆ ମର୍କଟ । ରକ୍ତ ମୁଚା ଉଟ । ଶ୍ୱେତ କୋକିଳ । ବେଣ୍ଟକାର ଶାମଳ । ଏକମୁଖୀ ରୁଦ୍ରାକ୍ଷ । ଫାସିଓରା ମୃଗ । ସିନ୍ଧୁଜାତ ଅଶ୍ୱ । ଚନ୍ଦ୍ରଜ୍ୟୋତ ଶ୍ୱେତହସ୍ତୀ । ତବର ତରଙ୍ଗ । ସୂର୍ଯ୍ୟପ୍ରଭା ମଣି । ରୁଦ୍ରଜାତ ପୋହଳା । ଚନ୍ଦ୍ରମଣ୍ଡଳ ମର୍କତ । ପାରଭେଦ ମୁକ୍ତା । ରସ-ଥୋପା ମୋତି । ନର୍ମଳ ବଜାତ । ଚଉଷଠି ବର୍ଣ୍ଣ ସୁନା । ବୈକ୍ରାନ୍ତ ଲୁହା । ଅବଧୋଚନା । ନେପାଳ ତମ୍ବା । ବେର୍ଙ୍ଗି ପିତ୍ତଳ । ଚୁମ୍ବକଶିଳ । ପରଶୁ ପଥର । ସୁଖୀସ୍ୱନଆ ବାଖର । ଅଗ୍ରରସ ଗନ୍ଧ । ସଂଠିକା ଦାରୁମୂଷୀ ଇତ୍ୟାଦ ଦ୍ରବ୍ୟମାନ କେ କେଣେ ନେଉଅଛନ୍ତି । ସଂଖ୍ୟା (୧) ନ ଜାଣି । ଏ ଉତ୍ତରେ ସେ ରାଜା ଆସ୍ଥାନେ ବଜେକଲ । ଯେ ଯାହାର ଯେତେ ପଦାର୍ଥ ଗଲ ସେମାନେ ଯଥୋଚିତ କର (୨) ରାଜା ଭଣ୍ଡାରୁ ଦେଲ ।

ଏମନ୍ତେ ସେ କୁମରକୁ ଅନେକ ନତମ୍ବବଣ୍ଟ ସୁଲକ୍ଷଣା ସ୍ତ୍ରୀମାନେ ମିଳି ସମସ୍ତ ମଙ୍ଗଳ ମାନନ୍ତି କଲେ । କୁମର ନିମିତ୍ତେ ଷଷ୍ଠୀଦେବୀଙ୍କି ଅନେକ ଉତ୍ସବ ରଚିଲେ । "ରୁଦ୍ର ସୁଧାନିଧି" ବୋଲି ନାମ ଥୋଇଲେ । ଏମନ୍ତେ କୁମରକୁ ଦେହଭାବୁଁ କ୍ଷୁଧା ଆକର୍ଷିଲା ଯହୁଁ । ବକ୍ଷ ପଦ୍ମ ପ୍ରକାଶି (୩) କୋକିଳର ସ୍ୱନେ ରୋଦନ କଲା ତହୁଁ । ଆନ ପୋଏ ଅଜ୍ଞାନରେ କରି କୁହୁ କୁହୁ ବୋଲି ରୋଦନ କରନ୍ତି । ଏ କୁମର କେମନ୍ତ କେମନ୍ତ କରିରୋଦନ କରୁଅଛି । ଶିବୋଽହଂ । ଶିବୋଽହମ୍ । ଶିବୋଽହମ୍ । ସର୍ବଗତୋଽହଂ । ଶାନ୍ତୋଽହଂ (୪) । ଶୁଦ୍ଧୋଽହଂ । ନିର୍ବିରୋଽହଂ । ପୂର୍ଣ୍ଣୋଽହଂ ।

---

୧ — ଅନ୍ତ 'କ'

୨ ଉଚିତ ପ୍ରକାରେ 'କ'

୩—ବ୍ରହ୍ମପଦେ କରି ବିକାଶି 'ଖ'

୪—ଶାନ୍ତୋଽହଂ 'ଖ'

କେବଳୋଽହମ୍ । ସୂକ୍ଷ୍ମୋଽହଂ । ନତ୍ୟୋଽହଂ । ନିବତ୍ତୋଽହଂ । ଚିଦା-ନନ୍ଦୋଽହଂ (୧) । ପୁରୁଷୋଽହଂ । ପୁରାତନୋଽହଂ । ଚିନ୍ମୟୋଽହଂ । ଆତ୍ମାଽହଂ । ଏବଂଭୂତ ପ୍ରକାରେଣ ବେଦନ କଲ ଯହୁଁ । ଜାଗ୍ରତ ସ୍ୱପ୍ନ ସୁଷୁପ୍ତି ମୟୀ (୨) ଅବସ୍ଥାବସ୍ତୁ ଆବୋରଲ ତହୁଁ । ଆପଣାର ଜ୍ଞାନ ନ ପୁଣ ହୋଇବ ନାଶ । ବିଷ୍ଣୁ ମାୟା ବହୁନ ହୋଇଅଛୁ ପ୍ରକାଶ । ମନ ବଚନେ ଜ୍ଞାନ ଉଦ୍ଧେ ହୋଇଥାଉ । ଦଣ୍ଡେ ହେଁ ଏ ବୁଦ୍ଧି ବିସ୍ମରଣ ନୋହୁ । ଏମନ୍ତ ବିଚାରି ସେ ବେଦନ ସମୟେ ଆତ୍ମା ଚିନ୍ତାକଲ ତହୁଁ । ଆନ ବାଳକ ପ୍ରାଏ ଅଜ୍ଞାନରେ ବୋଲନ୍ତି କୋଽହଂ, କୋଽହ, କୋଽହଂ । ଏ ଶିବ ଭାବ ଆବୋର କାନ୍ଦିଲ ଶିବୋଽହଂ, ଶିବୋଽହଂ, ଶିବୋଽହଂ । ଏମନ୍ତ ବେଦନ ସମୟେ ସମସ୍ତେ ହେଁ ଶୁଣିଲେ ଯହୁଁ । ଆଶ୍ଚର୍ଯ୍ୟ ପାଇ ଅରିଷ୍ଟକ ବୋଲି ଆକଳିଲେ ତହୁଁ । ଅରିଷ୍ଟ ଶାନ୍ତିମାନ ଅନେକ କରାଇଲେ ।

ଏଥି ଉତ୍ତାରେ କୁମରକୁ କ୍ଷୀରପାନ ଦେଲେ (୩) । କ୍ଷୀରପାନ କରାଇବା ବେଳେ ଜନନୀ ସ୍ତନକଳସେ ମୁଖ ଦେଲ ଯହୁଁ । ଭଗବନ୍ତ ଶକ୍ତି ମହାମାୟା ବିସ୍ତରିଲା ତହୁଁ । ଜନ୍ମ ହୋଇବା ବେଳେ ଏ ଅଜ୍ଞାନ ନୋହିଲ । ବେଦନ କରନ୍ତେ ହେଁ ଉପନିଷଦ ( ୪ ) ବୋଇଲା । ଏହିଠାରେ ତ ବିଷ୍ଣୁ ମାୟା ନୋହିଲ । ଏହାର ପର ଜ୍ଞାନ ହୋଇବ (୫) । ଆରକାହିଁ ସଂସାର (୬) ଚେଷ୍ଟା କରିବ । ପ୍ରାର-ଲବ୍‌ଧ (୭) ଏବେ କରିବବା ଭୋଗ । ପ୍ରାନ୍ତେ ବିନା ଯାଇଁ ପାଇବ ଯୋଗ । ଅହଂକାର ବନ୍ଧ ବେଦନ କଲ ଯହୁଁ । ଗର୍ବ ନସହନ୍ତା

---

୧—ଶାସ୍ତାନନ୍ଦୋଽହଂ 'ଖ'
୨—ମାୟା 'କ'
୩—କରାଇଲେ 'କ'
୪—ଉପଦେଶ 'କ'
୫—ଏହାର ଏବେହିଁ ଜ୍ଞାନଥିବ 'କ'
୬—ସଂସାରେ 'ଖ'
୭—ପ୍ରାଲବ୍‌ଧ 'କ'

ବୈଷ୍ଣବୀ ମାୟା ଆବୋରିଲା ତହୁଁ (୧) । କ୍ଷୀର ସଙ୍ଗତେ ମାୟା ପଶିଲା । କୁମର ଜିହ୍ୱାରେ ଲାଳସ ମିଶିଲା । ପୁଣି ପୁଣି ସ୍ୱାଦୁପାଇ ସ୍ତନ ପାନ କଲାକ ଯହୁଁ । ଅଜ୍ଞାନ ଜଡ଼ ମାୟା (୨) ନିଦ୍ରାଦ୍ୱାରେ (୩) ପଶିଲା ତହୁଁ । ତୃତୀୟା ଅବସ୍ଥାମାନଙ୍କୁ ସ୍ୱପ୍ନେ ଲାଇଲା । ଯୋଗ ନିଦ୍ରା ଛଡ଼ାଇ ପ୍ରପଞ୍ଚେ ଭଜିଲା । ଚନ୍ଦ୍ର ଜ୍ୟୋତ୍ସ୍ନାକୁ ଯେମନ୍ତ ନୀଳମେଘ ଆବୋରଇ ସେହି ମତ କରି ତାହାର ପୂର୍ବଜ୍ଞାନ ହରିଲା । ଅସ୍ୱପ୍ନ, ଅନନ୍ତ, ଅଜଡ଼ ମହାସୁଖ ହୋଇଲା ଯେଉଁ ମତ । ତାହା ମଳିନ, ବିଭ୍ରମ ମାୟାଭୟ, ତନ୍ଦ୍ରାକଲା ଅଜ୍ଞାନ ବାଳକର ସଞ୍ଜାତ । ଏବଂଭୂତ ପ୍ରକାରେ କୁମର ଅଜ୍ଞାନ ଭାବ ପାଇଲା । ଚନ୍ଦ୍ରକଳା ପ୍ରାୟେ ଦିନେ ଦିନେ ବର୍ଦ୍ଧମାନ ହୋଇ ଶୋହିଲା । ଦିବସକୁ ଦିବସ ଗୁରୁଜନ (୪) ମାନଙ୍କୁ ମୋହିଲା ପଦ୍ମବନରେ ଯେମନ୍ତ ରାଜହଂସ ଶୋହିଲା । ଦେହ ଜାମ୍ବୁନଦ ଯେମନ୍ତ ଦାହକରି ରସାଣିଲା ପ୍ରାୟେକ ଦିଶିଲା । ପୂର୍ଣ୍ଣ ଅକଳଙ୍କ ଚନ୍ଦ୍ରମଣ୍ଡଳ ପ୍ରାୟକ ମୁଖମଣ୍ଡଳ ବିକାଶିଲା । କମଳ ଉପରେକ ଭ୍ରମର ପ୍ରାୟେକ ଭ୍ରୂଲତା (୫) ଶୋଭା ପାଇଲା । କୁଣ୍ଡଳ ଦୁଇ ତରୁଣର୍କ ପ୍ରାୟେକ ଗଣ୍ଡସ୍ଥଳେ ମିଶିଲା । ବନ୍ଧୁକ କୁସୁମ ପ୍ରାୟକ ଅଧର କାନ୍ତି । ନୀଳ ଅଞ୍ଜନକୁ ଦୂଷଣ କରୁଅଛି କେଶର ଭ୍ରାନ୍ତି । ହେଳାଳୀଳା ଚକିତ ଦୃଷ୍ଟି ଦିଶୁଅଛି ଶୋଭନ (୬) । ତରୁଣୀମାନଙ୍କୁ କି ସେ ପ୍ରତ୍ୟକ୍ଷେ ମଦନ । ଶିଶୁ ପଦ୍ମ ପ୍ରାୟେକ ଚକ୍ଷୁ ଦୁଇର ଶୋଭା । ଶିରୀଷ ପୁଷ୍ପ ପ୍ରାୟେକ କୋମଳ କାନ୍ତି ଶରୀର ଆଭା । କମ୍ବୁର ପ୍ରାୟେକ କଣ୍ଠର ଶୋଭନ । ଦୁନ୍ଦୁଭିର ପ୍ରାୟେକ ବଚନ ଗମ୍ଭୀର ସୁସମ (୭) । ବଳିତ ବକ୍ଷସ୍ଥଳ ସମ୍ଭୂତ (୮) ଆଜାନୁ

---

୧—ବଳତକାରେ ଆକଷଲ ତହୁଁ 'କ'
୨—ମସ୍ତ 'ଖ'
୩—'ଖ' ରେ (ନିଦ୍ରା ଦ୍ୱାରେ) ନାହିଁ
୪—ପୁରଜନମାନଙ୍କୁ 'କ'
୫—ବନ୍ଧୂକ 'କ'
୬—ଶୋଭବନ 'କ'
୭—ସୁସ୍ୱର ବଚନ 'କ'
୮—ସୁବଳିତ ବକ୍ଷସ୍ଥଳ 'କ'

ଭୁଜଦଣ୍ଡ । ଲୀଳାଗତ (୧) ଜାଣିକ ଉନ୍ନତ ବାଳ ଷଣ୍ଢ । ଶିଶୁ ସିଂହର ପ୍ରାୟେକ ବିକ୍ରମ ଦିଶଇ । ସୂର୍ଯ୍ୟ କିରଣର କାନ୍ତି ଶରୀରେ ମିଶଇ । ଜାତ ପାଖୁଡ଼ା ପ୍ରାୟେକ ନଖର କାନ୍ତି । ମତ୍ତ ଗଜେନ୍ଦ୍ର ପ୍ରାୟେକ ଗୁଳିବାର ଭ୍ରାନ୍ତି (୨) । ଆରକ୍ତ ପୁଷ୍ପ ପ୍ରାୟେକ ଚରଣର ତଳି । ଲକ୍ଷଣବନ୍ତ ହୋଇ ଅଛି ମୀନପଦ୍ମ ଅଙ୍କୁଶ ମଣ୍ଡଳ । ଯୋଗଭ୍ରଷ୍ଟେ ଜନ୍ମ ରୁଦ୍ର ଅଂଶ ମୂର୍ତ୍ତି । ଭଲେ ଅଛି ଏହାର ବୈଷ୍ଣବୀ ଶକ୍ତି । ତେଣୁକରି ସମସ୍ତ ଲକ୍ଷଣ ମାନନ୍ତରେ ହୋଇବ ଆସମୁଦ୍ରାନ୍ତ ପୃଥ୍ୱୀରେ ଚକ୍ରବର୍ତ୍ତୀ । ସେ କୁମର ଲକ୍ଷଣନ୍ତ ବିଗୁରି ଅନଙ୍ଗ ପଦ୍ମାକର ରାଜା । ଉତ୍ସବ କରି କରାଇଲା ବିନାୟକ ସରସ୍ୱତୀଙ୍କ ପୂଜା । ଉଦୟନ ଆଚାର୍ଯ୍ୟ ବୋଲି ପଣ୍ଡିତେକ ଅଛି । ବ୍ରହ୍ମାଙ୍କୁ ପ୍ରସନ୍ନ କରାଇ ସେ ଅନେକ ବିଦ୍ୟା ପାଇଅଛି । ତାହା ଗୋଚରରେ କୁମରକୁ ସମର୍ପିଲା । ବିଦ୍ୟା ପଢ଼ାଅ ବୋଲି ଆଜ୍ଞା ଦେଲା । ସେ କୁମର ଅକ୍ଷର ପାଠନ୍ତ ପଢ଼ି ଅଙ୍କ ଖଡ଼ିସାରି । ସମସ୍ତ ବ୍ୟାକରଣ ଅଷ୍ଟାଦଶାଙ୍ଗେ ପଢ଼ିଲା । କେବଣ କେବଣ ବ୍ୟାକରଣ ମହାଭାଷ୍ୟ ବୋଲି ଯେଉଁ ବ୍ୟାକରଣ ଥିଲା । ପୂର୍ବେ ଶେଷନାଗର ବଦନରୁ (୩) ବାହାର ହୋଇଲା । ପାଣିନି ବୋଲି ଯେଉଁ ବ୍ୟାକରଣ ନାମ । ଈଶ୍ୱର ଡମ୍ବରୁରୁଁ ସେ ହୋଇଅଛି ବାହାର । ଶ୍ରୁତିସାଗର ବୋଲି ଯେବଣ ବ୍ୟାକରଣ । ଇନ୍ଦ୍ର ଦେବତା ନିମିତ୍ତେଁ ବୃହସ୍ପତି କଲେ ନିର୍ମାଣ (୪) । ସାରସ୍ୱତ ବୋଲି ଯେଉଁ ବ୍ୟାକରଣ ହେଲା । ତହିଁର ସୂତ୍ର ପୂର୍ବେ ସରସ୍ୱତୀ କହିଲା । ଅଇନ୍ଦ୍ର ବୋଲି ଯେବଣ ବ୍ୟାକରଣ । ଇନ୍ଦ୍ର ଦେବତା ନିମିତ୍ତେ ବୃହସ୍ପତି କଲା ନିର୍ମାଣ । ଚାନ୍ଦ୍ରମସ ନାମ୍ନେ ଯେବଣ ବ୍ୟାକରଣ ହୋଇଲା । ଚନ୍ଦ୍ର ଦେବତା ତାହା ପୂର୍ବେ ପଢ଼ିଥିଲା । ମହେଶ୍ୱର ସମ୍ବନ୍ଧେ ମାହେଶ୍ୱର ହୋଇଲା । ପୂର୍ବେ ବିଧାତା ଅଛି ନିର୍ମାଇଲା । ଶକଟାଶପୂନ, ଔଣାଦିକ, ସମ୍ପ୍ରଦାୟିକ, କଳାପ, ବର୍ଦ୍ଧମାନ ଆଦିକରି

---

୧—କାନ୍ତି କ୍ଷୋଭ 'ଖ'

୨—ମନ୍ଦଗତ 'କ'

୩—ବକ୍ତ୍ର 'ଖ'

୪—ବାସୁଦେବର ନିଃଶ୍ୱାସ ସେ ହୋଇଅଛି ନିର୍ମାଣ 'କ,

ବ୍ୟାକରଣ ମାନଙ୍କର ନାମ । ଉପବ୍ୟାକରଣମାନେ ଅଛନ୍ତ ଅନୁପାମ । ରସବତ, ଜୁମର, କୌମୁଘ, ଅଖ୍ୟାତ ଚନ୍ଦ୍ରକାଦ୍ଵ ସମସ୍ତ ବ୍ୟାକରଣ ପଢ଼ିଲା । ୦

କେବଣ କେବଣ ବ୍ୟାକରଣ କେବଣ କେବଣ ପ୍ରକାରେ ପଢ଼ିଲା । ପ୍ରଥମେ ବର୍ଣ୍ଣ ସଂସ୍ଥାନ କର (୧) । ସଜ୍ଞାବସର, ହ୍ରସ୍ଵ ଦୀର୍ଘ ଜାଣି, ପାଦଦ୍ଵୟ ସନ୍ଧ (୨) ପରମାଣି । ଆଗମ ଆଦେଶ ଉପଧା ବଗ୍ଗର । ଲିଙ୍ଗ, ବିଭକ୍ତି, ନପାତ ପ୍ରକୃତ, ଶବ୍ଦଲିଙ୍ଗ ସ୍ଵପ୍ନ, ଷଟ୍‌କାରକ ପଦ, ସମାସ, ଧାତୁରୂପାଦ୍ଵ କର ଅଷ୍ଟାଦଶାଂଶେ ବ୍ୟାକରଣ ପଢ଼ିଲା । ତଦନନ୍ତରେ ଶାସ୍ତ୍ରମାନନ୍ତ ପଢ଼ିଲା । କେବଣ କେବଣ ଶାସ୍ତ୍ରନ୍ତ ପଢ଼ିଲା । ଧର୍ମଶାସ୍ତ୍ର, ମୀମାଂସା, ପାତଞ୍ଜଳ, ବୈଶଷିକ, କୋମାରକ, ପଞ୍ଚରାତ୍ର ତର୍କ, ଆଗମାଦ୍ଵକର ସମସ୍ତ ଶାସ୍ତ୍ର ମାନନ୍ତ ପଢ଼ିଲା ! ଋଗ୍‌ବେଦ, ଉପନଷଦ ଆଦ୍ଵକର ସାଙ୍ଗୋ-ପାଙ୍ଗ ପଢ଼ିଲା । ମନୁ, ଯାଜ୍ଞବଲ୍‌କ୍ୟ, ଶଙ୍ଖ ଲିଖିତ, ବୃହସ୍ପତ ଇତ୍ୟାଦ୍ଵ କର ସ୍ମୃତମାନନ୍ତ ପଢ଼ିଲା । ଉପଶାସ୍ତ୍ର ମାନଙ୍କେ ପୂର୍ବେ ଦେବତାମାନଙ୍କୁ ଅସୁରମାନେ ବେଦବାଦେ ଜିଣିଲେ । ଏମନ୍ତ ଜାଣି ସେ ବାଗ୍‌ବ୍ୟାପୀ ନାରାୟଣ, ବୃହସ୍ପତ ହସ୍ତେ ଅସୁରମାନଙ୍କର ନମିତ୍ତେ ପ୍ରତ୍ୟେକେ ଗ୍ରନ୍ଥମାନ ଫଳାଫଳ କରାଇଲେ । ବୃହସ୍ପତ ସୁବାଦେ ଜିଣିଲେ (୩) । ଶୁକ୍ର ରୂପ ଧର ଅସୁରମାନନ୍ତ ପଢ଼ାଇଲେ । ବୌଦ୍ଧ ଶାସ୍ତ୍ରମାନହିଁ ବୌଦ୍ଧାନୁଶାସନେ (୪) । ବୌଦ୍ଧ, କାପାଳିକ, କ୍ଷପଣକ, ଶ୍ଵେତାକାଦ୍ଵ ମତ । ଏମାନହିଁ ଜାଣିଲ । ତଦନନ୍ତରେ ଅଷ୍ଟାଦଶ ପୁରାଣ ପଢ଼ିଲ । କେବଣ କେବଣ ପୁରାଣ । ମତ୍ସ୍ୟପୁରାଣ, କୂର୍ମପୁରାଣ, ବରାହପୁରାଣ, ବାମନପୁରାଣ, ଭବଷ୍ୟପୁରାଣ, ମାର୍କଣ୍ଡେୟପୁରାଣ, ବଷ୍ଣୁପୁରାଣ, ନୃସିଂହ-ପୁରାଣ, ଅଗ୍ନିପୁରାଣ, ପଦ୍ମପୁରାଣ, ଇତହାସପୁରାଣ, ବ୍ରହ୍ମାଣ୍ଡପୁରାଣ, ଦେବୀ-ପୁରାଣ, ଶିବ ପୁରାଣ, ଭାଗବତାଦ୍ଵ କର ସମସ୍ତ ପୁରାଣ ଉପପୁରାଣମାନନ୍ତ ପଢ଼ିଲ । ତଦନନ୍ତରେ ଜ୍ୟୋତଷ ଶାସ୍ତ୍ର ପଢ଼ିଲା । କେବଣ କେବଣ

---

୧—ସ୍ଥାପନ 'କ'

୨—ପଦ ପଦାନ୍ତ ସନ୍ଧଯା

୩—'ଖ' ରେ ନାହିଁ ।

୪—ବୋଧା 'ଖ'

ପ୍ରକାର, ବାର, ତିଥି, ନକ୍ଷତ୍ର, ଚନ୍ଦ୍ର, ଯୋଗ, କରଣ, ଗ୍ରହଯୋଗ, ଲଗ୍ନ ଜାତକ, ଯାତ୍ରା ପ୍ରଶ୍ନ, ଖଣ୍ଡରଜ, ଆୟୁଷ ନିର୍ଣ୍ଣୟ, ବୈକକ୍ଷା ଧାରଣ, ସମୁଚୟ ସହିତ କରି ସମସ୍ତ ଜ୍ୟୋତିଷ ଶାସ୍ତ୍ର ପଢ଼ିଲା । ତଦନନ୍ତରେ କାବ୍ୟ, ମହାକାବ୍ୟ, ଉପକାବ୍ୟ, ମହାକାବ୍ୟ କାଦମ୍ବରୀ, ନୈଷଧ ରାମଚରିତ, ଭାରତ ଯୋଗାର୍ଣ୍ଣବ, ଗୀତାବଶିଷ୍ଟ ରାମାୟଣାଦି ସମସ୍ତ ପଢ଼ିଲା ।

କେବଣ କେବଣ ଗୀତା ପଢ଼ିଲା । ଭଗବତ୍‌ଗୀତା, ଭାରତ ଗୀତା, ପାଣ୍ଡବ ଗୀତା, ଉତ୍ତର ଗୀତା, ଯମ ଗୀତା, ଅବଧୂତ ଗୀତା, ଗଙ୍ଗାଗୀତା, ଯାଜ୍ଞବଲ୍‌କ୍ୟ ଗୀତା, ଚାଙ୍ଗଣ ଗୀତା, ମୈତ୍ରେୟୀ ଗୀତା, ଆନନ୍ଦ ଗୀତା, କପୋତ ଗୀତା, ଜନକ ଗୀତା, ଭବିଷ୍ୟ ଗୀତା, ଶିବ ଗୀତା, ଜଡ଼ ଗୀତା, ଆନନ୍ଦ ଗୀତା, ଶୁକ ଗୀତା, ପଙ୍କଜ ଗୀତା, ଭିକ୍ଷୁ ଗୀତା, ଖ୍ରିଷ୍ଟ ଗୀତା, ବ୍ରହ୍ମ ଗୀତା, ଇତ୍ୟାଦି କରି ସମସ୍ତ ଗୀତାମାନନ୍ତ ପଢ଼ିଲା । ତଦନନ୍ତରେ ଆଗମ ପଟଳ । ଯାମଳ ଯନ୍ତ୍ର, ରସବିଷ କଳ୍ପ ସାଧନ, ମଣିମନ୍ତ୍ର ମହୌଷଧି ଆଦିକରି ସମସ୍ତ ଆଗମ ଶାସ୍ତ୍ରମାନନ୍ତ ପଢ଼ିଲା । ତଦନନ୍ତରେ ନାଟକ ଉପନାଟକ ଅଭିନୟାଦି କରି ଭରତ ପିଙ୍ଗଳଛନ୍ଦ, ଦେଶାନ୍ତର ସୂତାନ୍ତର ଭାଷା, ଅଶ୍ୱଲକ୍ଷଣ ପରୀକ୍ଷା, ଗଜ ଲକ୍ଷଣ, ନର ଚିକିତ୍ସା, ସାମୁଦ୍ରିକ, ରଥ କଉଶଳ ହସ୍ତ ଶିଳ୍ପଚିତ୍ରାଦି କରି ଉପବିଦ୍ୟାମାନନ୍ତ ଶିଖିଲା । ଏମନ୍ତ ସେ କୁମର ଶାସ୍ତ୍ରେ ବକତା, ବିଦ୍ୟାରେ ଶକ୍ତା । ଗୁଣାନୁରକ୍ତା । ବାସୁଦେବେ ଭକ୍ତା, ସତ୍ୟେସକ୍ତା, ଦରିଦ୍ରେ (୧) ଦାତା, ଆହାରେ ଭୋକ୍ତା, ଏମନ୍ତ ହୁଅନ୍ତେ ଦଶବର୍ଷ ସମ୍ପୂର୍ଣ୍ଣ ହୋଇଲା । ରାଜା ଗୁଣାକର ଆଚାର୍ଯ୍ୟଙ୍କୁ ହକାରି ସମସ୍ତ ବିଦ୍ୟା ଧନୁର୍ବେଦ ସହିତେ ଆରମ୍ଭ କରାଇଲା । ସେ ଆଚାର୍ଯ୍ୟଙ୍କୁ ଈଶ୍ୱର ପ୍ରସନ୍ନ ହୋଇ ସମସ୍ତ ବିଦ୍ୟାମାନନ୍ତ ଦେଇ ଅଛନ୍ତି । ଶ୍ରୀ ଜଗନ୍ନାଥଙ୍କର ବୈଷ୍ଣବମାନଙ୍କର ପାଦାରବିନ୍ଦ ପ୍ରସାଦୁଁ କରି ତାହା ନାରାୟଣ ଦାସ ପାଇଲ ବିମରି । ସେ ଚଉଷଷ୍ଠୀ ଅଶେଷ ବିଦ୍ୟା ପଢ଼ାଇଲ ।

---

୧ — ଦାରିଦ୍ରେ

କେବଣ କେବଣ ଅଂଶେ । ଆଦାନ, ସନ୍ଧାନ, ଆକର୍ଷଣ, ଆମନ୍ତ୍ରନ, ଗଣ୍ଡଖର, ମଣ୍ଡ ସ୍ଥିର, ଦୃଷ୍ଟି ସ୍ଥିର, ମୁଷ୍ଟି ଦୃଢ଼, ରୋପଣ, ଜୃମ୍ଭଣ, ସ୍ତମ୍ଭନ, ବ୍ୟଗ୍ର ଆସୂଚନ, ଆଚ୍ଛାଦନାରୋପଣ, ଆରମ୍ଭ ଔଷଧ କରଣ, ଅସ୍ତ୍ର ସ୍ମରଣ, ମନ୍ତ୍ର ଉପାସନ, ଯନ୍ତ୍ର ଲକ୍ଷଣ, ହୋଣ ବୀକ୍ଷଣ, ବାମ ଦକ୍ଷିଣ, ଆରୋପଣ, ମୋକ୍ଷଣ, ଗ୍ରହଣ ଚନ୍ଦନ, ଭ୍ରମଣ, ଧାରଣ, ଆକାଶ କ୍ଷେପଣ, ଖଡ୍‌ଗଫଳା ଗଦାଶକ୍ତି ଅସ୍ତ୍ରଶସ୍ତ୍ର ପ୍ଲୁତ ଗୋଚର କରଣ । ମଲ୍ଲାଦି କରି ସମସ୍ତ ବିଦ୍ୟା ପାଇଲା । ଗୁରୁ ପ୍ରସନ୍ନ ହୋଇ ଅସ୍ତ୍ର ବିଦ୍ୟା କହିଲା । କେବଣ କେବଣ ବିଦ୍ୟା ପାଇଲା । ନାରାୟଣାସ୍ତ୍ର । ପାଶୁପତାସ୍ତ୍ର । ଆଷ୍ଟ୍ରର୍ଯ୍ୟାସ୍ତ୍ର । ବ୍ରହ୍ମାସ୍ତ୍ର । ବଜ୍ରାସ୍ତ୍ର । ଚନ୍ଦ୍ରାସ୍ତ୍ର । ବାରୁଣାସ୍ତ୍ର । ମହାକାଳାସ୍ତ୍ର । ରୁଦ୍ରାସ୍ତ୍ର । ଅଗ୍ନି ଅସ୍ତ୍ର । ମେଘାସ୍ତ୍ର । ପବନାସ୍ତ୍ର । ସୂର୍ଯ୍ୟାସ୍ତ୍ର । ମୋହନାସ୍ତ୍ର । ଇନ୍ଦ୍ରାସ୍ତ୍ର । ଗନ୍ଧର୍ବାସ୍ତ୍ର । କିନ୍ନରାସ୍ତ୍ର । ପର୍ବତାସ୍ତ୍ର । ଜଳଶୋଷକ ଅସ୍ତ୍ର । ବାୟବ୍ୟାସ୍ତ୍ର । କୁବେରାସ୍ତ୍ର । ଯାମ୍ୟାସ୍ତ୍ର । ଅମୋଘ ଶକତି । ନାଗପାଶ । ଜଳପାଶ ଇତ୍ୟାଦି କରି ସମସ୍ତ ଅସ୍ତ୍ର ପାଇଲା । ସର୍ବ ସାମର୍ଥ୍ୟ କରି ଅପରାଜିତ ହୋଇଲା । ଏବଂଭୂତ ପ୍ରକାରେ ଦ୍ୱାଦଶ ବର୍ଷ ହୋଇଲା ଯହୁଁ । କିଶୋର ବୟସ ଆସି ପ୍ରବେଶ ହୋଇଲା ତହୁଁ । ରୋମାବଳୀମାନେ କୃଷ୍ଣବର୍ଣ୍ଣ ଦିଶିଲେ । ବିକାରର ଦଶାମାନ ମୁଖରେ ମିଶିଲେ । ସାଧନ ମୁଦ୍ରା ଆସି ଦେହରେ ରହିଲା (୧) । କାମଦେବର ଦେହକି କାନ୍ତିଶୀରେ ଶୋହିଲେ (୨) । ଦନ୍ତାବଳିମାନେ ନୂତନ ହୋଇଲେ । ଚନ୍ଦ୍ର ଜ୍ୟୋତ୍ସ୍ନା । ପ୍ରାୟେକ ଶୋଭା ପାଇଲେ । ଚକ୍ଷୁର (୩) ସ୍ନିଗ୍ଧ ଅଧିକ ଦିଶିଲା । ହେମନ୍ତ ପଦ୍ମପତ୍ର ଦୁଇରେକ ମତ୍ତ ଭ୍ରମର ଦ୍ୱୟ (୪) ବସିଲା । ଏବଂଭୂତ ପ୍ରକାରେ କୁମର ଶୋଭା ପାଇଲା ଯହୁଁ । ରାଜା ମନେ ମନେ ବିଚାରିଲେ ତହୁଁ । ବିବେକ ରତ୍ନାକର ମନ୍ତ୍ରୀକି ହକାରି, ଭଲ ବେଳ ବିଚାରି, ମଙ୍ଗଳ ପଚାରି, ଆଜ୍ଞା ଦେଲା । କୁମର ସନ୍ଦର୍ଭେ (୫)

---

୧—ସାଧନ ମୁଦ୍ରମାନେ ଫୁଟି ବାହାରିଲେ 'କ'

୨—ମୋହିଲେ 'କ'

୩—ଚକ୍ଷୁରୁ 'ଖ'

୪—ଦୁଇ 'କ'

୫—ସମାନେ 'ଚ'

କନ୍ୟା ଖୋଜ ବୋଇଲା । ସେ ମନ୍ତ୍ରୀ ଏମନ୍ତ ଆଜ୍ଞା ପାଇ ତିନ ପ୍ରଦକ୍ଷିଣ କରି ପାଦ୍ୟେ ପଡ଼ି ଶୋଇ ଉଠିକରି କରପଦ୍ମ ଯୋଡ଼ି ଜଣାଇଲା । ହେ ରାଜନ ଯେଉଁ କାର୍ଯ୍ୟ କଲେ ସେ ଯାଇ । ତହିଁକି ତତ୍କାଳ ସମସ୍ତଙ୍କୁ ଯେ ବାଟ ଗୃହିଁଥାଇ । ସେ ଗୃହରେ ଅଗ୍ନି ଲାଗିଲା ଉତ୍ତାରେ କୂପଖୋଳ ବସିଲା ପ୍ରାୟେ ଶୋଭା ପାଇ । ହେ ଦେବ । ବିରାବର୍ତ୍ତନ କରି ଏ ପୃଥ୍ୱୀରେ କନ୍ୟା ଖୋଜିଲଣି । ତୁମର ସଦୃଶେ ଗୁଣବନ୍ତି ହୋଇ କନ୍ୟା କାହିଁ ନ ପାଇଲା । ଏ ଜମ୍ବୁଦ୍ୱୀପ ଭିତରେ କନ୍ୟା ନାହିଁ । ଏହିକ୍ଷଣି ଦୂତମାନେ ମୋହର ହୋଇଲେ ପ୍ରବେଶ । ସାବଧାନ ହୋଇ ଶୁଣିମା ହେ ଦେବ । ତାହାଙ୍କର ଉପଦେଶ । ଏମନ୍ତ ସମୟେ ରାଜା ; ଶରଦ ମେଘର ସମୂହ ପ୍ରାୟେକ ଦିବ୍ୟ ଜଗତରେ ଚନ୍ଦ୍ର ପ୍ରାୟେକ ହୋଇ ବିଜେ କରିଅଛି । ଦିବ୍ୟ ପଲଙ୍କ ଉପରେ ଅମୃତ ଫେନସମ (୬) ଶଯ୍ୟାଏ ନିର୍ମାଣ କରାଅଛି । ତହିଁରେ ବିଜେ କରିଅଛି । ସୁରି ପାରୁଷରେ ସମସ୍ତ ଅମାତ୍ୟ-ମାନେ ନକ୍ଷତ୍ର ସମୂହର ପ୍ରାୟେକ ହୋଇଅଛନ୍ତି । ସର୍ବାଳଙ୍କାରେ ମଣ୍ଡିତ ହୋଇ ସହସେ ନିତମ୍ବିନୀ ବିଳସିନୀଗଣ ଚନ୍ଦ୍ର ଜ୍ୟୋତ୍ସ୍ନା ପ୍ରାୟେକ ଉଜ୍ଜ୍ୱଳ ଚାମର ମାନନ୍ତ ଧରନ୍ତେ କଙ୍କଣ ବଳୟମାନଙ୍କର ଝାଙ୍କାର ଶବ୍ଦ ଶୁଭୁଅଛି । ଏମନ୍ତ ହୋଇ ରାଜା ଅବଧାନ କରି ବିଜେକରି ଅଛନ୍ତି । ଏମନ୍ତ ସମୟରେ ମନ୍ତ୍ରୀ ସୁରି ନଗର ସୁରି ଦୂତଙ୍କୁ ନେଇ ଦର୍ଶନ କରାଇଲା । ପ୍ରଥମେ ପୂର୍ବ ଦିଗର ଦୂତର ନାମ ସର୍ବଜାଣ ହୋଇ । ସମସ୍ତ ବିଦ୍ୟା ଜାଣଇ । ଆଗମ୍ୟ ଗମ୍ୟକୁ ଯାଇପାରଇ (୧) । ଅଦୃଶ୍ୟ ଦୃଶ୍ୟ ହୋଇ ପାରଇ । ମନ୍ତ୍ର ରାଜା ଗଣପତିଙ୍କି ଉପାସନା କରିଅଛି । ଲେପ ରସାୟନ ପାଦୁକା ପାଇଅଛି । ଜ୍ୟୋତିଷ ଭବିଷ୍ୟ ଶାସ୍ତ୍ରେକରି ନିପୁଣ ଅଟଇ । ଏବଂଭୂତ ସର୍ବ ଜାଣଇ ଯେ ଦୂତ କହୁଅଛି । ନିଉଛାଳି କରି ପାଏ ପଡିଶୋଇ । ମଥାରେ ହାତ ଦେଇ । ରାଜା ଶ୍ରୀମୁଖଙ୍କୁ ଚାହିଁ । ନିଥିର (୨) ହୋଇ । ସରସ୍ୱତୀଙ୍କୁ ସୁମରି । ପୂଜା କଥା ବିସ୍ତର (୩) କହୁଅଛି । ହେ ଦେବ ! ଏ ବିବେକ ରତ୍ନାକର ମନ୍ତ୍ରୀର ଆଜ୍ଞା ପାଇଗଲା । ସମସ୍ତ ରାଜାମାନଙ୍କର ନଗରରେ ପ୍ରବେଶ

---

୬—ଅମୃତ ଶିଳାରେ 'ଖ'

୧—ଜାଣଇ 'ଖ'

୨—ନିସ୍ଥିର 'କ'

୩—ବିମଳ 'ଖ'

ହୋଇଲା । କୁମର ସଦୃଶେ କନ୍ୟା କାହିଁ ନ ପାଇଲା । ଭଟ୍ଟ, ଘୋଟ, ମାଳବ, ସଉରାଷ୍ଟ୍ର, ମହାରାଷ୍ଟ୍ର, ମଧ୍ୟଦେଶ ମଇଲଣ (୧) ମଣ୍ଡଳ, ଶ୍ୱେତ ପର୍ବତ, ଝାଡ଼ମଣ୍ଡଳ, ଇନ୍ଦ୍ରପ୍ରସ୍ଥ, ଯମପ୍ରସ୍ଥ, ହସ୍ତିନା, ବାରୁଣା, ଜୟନ୍ତୀ, ଅବନ୍ତୀ, ଅଯୋଧ୍ୟା, ମଥୁରା, ଗୟା, କାଶୀ, କାଞ୍ଚୀ, ମେଖଳା (୨), ମାରୁ ମାରୁତ, ଉଷ୍ଟ୍ରଦେଶ (୩), ଅନ୍ତର୍ବେଦୀ, ପାଦୁକା, ଶୈବମଣ୍ଡଳ ଏତେଦୂର ପର୍ଯ୍ୟନ୍ତେ ବୁଲିଗଲା । ପୂର୍ବ ସମୁଦ୍ର କୂଳେ ହୋଇଲ ୪) । ଏତେ ଦେଶର ମଧ୍ୟେ ଉତ୍ତମକନ୍ୟା ଦେଖିଲା । କାଶୀ ରାଜାନଗ୍ରେ । ମଣିକାନ୍ତ ପର୍ବତ ଅଗ୍ରେ ଜମ୍ବୁବଣ ନନ୍ଦାରଣ୍ୟରେ, ଅତୁଳ ମଣ୍ଡଳ କଟକରେ, କାଶୀରାଜା ଦୁହିତା ଅନଙ୍ଗାବଳୀ ନାମେ ଏକ କନ୍ୟାଏ ଦେଖିଲା । ସେ କନ୍ୟା ସର୍ବଗୁଣେ ସୁଲକ୍ଷଣୀ । ଶୁଦ୍ଧ ସୁବର୍ଣ୍ଣ ବର୍ଣ୍ଣିମା । ତରଳ ତରଙ୍ଗ ଚକିତ କୁରଙ୍ଗ ନୟନା । ଉନ୍ମତ୍ତ କ୍ରୀଡ଼ାବନ୍ତ ହର୍ଷ ଚକ୍ରବାକ ସ୍ତନୀ । ଉନ୍ମତ୍ତ ଗର୍ବବନ୍ତ ପୀୟୂଷ ଉତ୍କଣ୍ଠିତ ତରୁଣ ମତ୍ତ ଗଜେନ୍ଦ୍ରଗମନା । ଅତି ଗର୍ବିତ ପୁରୁଷ ଅଜଟ କୋକିଳବଚନା । ବିଶ୍ୱକର୍ମା କୁନ୍ଦ କର୍ତ୍ତିତ ଡମ୍ବରୁ ସମ ମଧ୍ୟ ସଂକୀର୍ଣ୍ଣମା ସରସ (୫) ବିପୁଳ ପୁଳକ ଚନ୍ଦ୍ରମ ଦାସ କୋମଳ ବଳିତ ଜଘନା । ପୃଥୁଳ ପୀବର ପୀୟୂଷ କୁମ୍ଭସମ କନ୍ଦର୍ପ ସିଂହାସନ ସମ ନିତମ୍ବିନୀ । ଅମୃତ ଘନ ଉପଳ ଘନ ଲାବଣ୍ୟ ଚନ୍ଦ୍ର ଜ୍ୟୋତ୍ସ୍ନାସମ କାନ୍ତ ଦଶନା । ନବଘନ ଉତ୍ପନ୍ନ ଘନ କନକ କାନ୍ତ କମନୀୟ ତଡ଼ିତ ବର୍ଣ୍ଣ କାନ୍ତିମା । ସର୍ବ ସୁଲକ୍ଷଣୀ । ସର୍ବଗୁଣେ ସମ୍ପନ୍ନ । କେଶର ଅଗ୍ରଭାଗ ପିଙ୍ଗଳ ଭାବୁଁ କରି ହୋଇଲା ଅବଗୁଣ ।

ହେ ଦେବ ! ଆଉ କନ୍ୟାଏ ଦେଖିଲି । ପୁଣ ପୁଣ କରି ନିରେଖି ପେଷିଲି ! ମନ୍ଦାକିନୀ କୂଳେ । ଭଦ୍ରାସନ ଦେଶେ । ବୀର ଭଦ୍ର ବୋଲି ଏକ ରାଜାଏ ଅଛଇ । ତାହାର ଦୁହିତାଏ ହୋଇ । ତାହାର ନାମ ଲୀଳାବତୀ । ସେ କନ୍ୟାର ମୁଖ ଶରଦ ଚନ୍ଦ୍ରମା ମଣ୍ଡଳକୁ ଗଞ୍ଜୁ ଅଛି । କବରୀ ଭାର କି ଦନ୍ତ ଦ୍ୟୁତିରଂ ଉପରେ ଅନ୍ଧକାରକୁ ଗଞ୍ଜୁ ଅଛି । ଚକ୍ଷୁ ତରଳ ତରଙ୍ଗ ମନ୍ମଥ

---

୧—ମଲ୍ଲଳ 'ଙ'
୨—ମେଖଳା ମଣ୍ଡଳ 'ଙ'
୩—ଅଷ୍ଟ ଦେଶ 'ଙ'
୪—ଶୋଇଲ 'ଙ'
୫—ସବ 'ଖ'

ମଣି (୧) । ଭ୍ରୂଲତା ଶୋଭା ପାଉ ଅଛି କି ବିକଚ ପଦ୍ମେ ମଧୁକର ଶ୍ରେଣୀ ବାନ୍ଧି ଆକର୍ଣ୍ଣକ ମୃଣାଳାକୃତ । ପଦ୍ମିନୀ ଜାତି । ମନ୍ମଥ ବୀଣା ବାଦନୀ । ଚିତ୍ର ଲେଖନୀ । ପୃଥୁ ନିତମ୍ବିନୀ । ସମସ୍ତ ଗୁଣେ ଅଇଲା । କେବଳ ସ ଦନୁର (୨) ଭାବୁକର ସେ କନ୍ୟା କୁମରେ ଅଯୋଗ୍ୟ ହୋଇଲା । ଆଉ କନ୍ୟାଏ ଦେଖିଲେ । ପୂର୍ବ ସମୁଦ୍ର କୂଳେ । ନଟିକାଳ ବନରେ (୩) ମଦନ ବ୍ରହ୍ମରାଜାର ଦେଶରେ । ଚିତ୍ର ତରଙ୍ଗିଣୀ ନଦୀ ପାରୁଶରେ (୪) । ହିରଣ୍ୟଗର୍ଭ କଟକରେ । ଭୂଷଣେଶ୍ୱର (୫) ଲିଙ୍ଗ ନିକଟରେ । ଚନ୍ଦ୍ରକେତୁ ବିଜ୍ଞାନ ଦୁହିତା ଅବଳା । ତାହା ନାମ ଅଟଇ ମନ୍ମଥ କଳା । ସେ କନ୍ୟାର ମୁଖ ଶୋଭା । ବିକଚ କମଳ ପୁଷ୍ପର ଆଭା । ଜମ୍ବୁନଦ ସୁବର୍ଣ୍ଣ ଚସାଣିଲାର ପ୍ରାୟେକ ଶରୀର କାନ୍ତି ଶୋଭା । ଭ୍ରୂଲତା ଦଣଇକ (୬) ମନ୍ମଥ ଧନୁ । ବ୍ରହ୍ମା ବସି ଗଢ଼ିଲ ତାକୁ କେତେ ମନୁ (୭) । ସେ କନ୍ୟା ସକଳ ଗୁଣେ ଶୋଭିଲା । ମୁଖରେ ତିଳ ଲକ୍ଷଣ ନଥିବାରୁ କଣ କୁମରକୁ ଅଯୋଗ୍ୟ ହୋଇଲା ।

ଏ ଉତ୍ତରେ ଉତ୍ତର ଦିଗର ଦୂତ ଆସି ରାଜାକୁ ଦର୍ଶନ କଲା । ସେ କହୁଅଛି । ହେ ଦେବ ! ମୁଁ ଉତ୍ତର ପ୍ରଦେଶ ଅନେକ ଦୂର ଗଲି । କୁମର ସଦୃଶେ କନ୍ୟା ନ ପାଇଲି । ସମସ୍ତ ଦେଶ ବୁଲିଲି । ଜଳ ସ୍ତମ୍ଭନ ମଣି କଣ୍ଠରେ ଲଇ । ସ୍ୱଚ୍ଛ ଆହାରମାନ ଅଣ୍ଟିରେ ପୁରେଇ । ସମୁଦ୍ରେ ବୁଲିଗଲି । ସେ ଜଳ ସ୍ତମ୍ଭନ ମଣିର ପ୍ରସାଦେ ସମୁଦ୍ର ମୋତେ କାଚ ପୀଠର (୮) ପ୍ରାୟେକ ହୋଇଲା । ତହିଁର ଉତ୍ତରେ ମୁଁ ପାଦୁକା ବିଦ୍ୟାର ବଳେ ଅନେକ ଦୂର ଗଲି । ଅନେକ ଦ୍ୱୀପ ଦେଖିଲି । କେବଣ ଦ୍ୱୀପ ସୁବର୍ଣ୍ଣ ବାଲୁକା ଅଟଇ । ମଣିରତ୍ନମାନ ନିରନ୍ତରେ ପଡ଼ିଅଛି । କାହିଁ ପର୍ବତମାନ

---

୧ — ବାଣଜାଣି 'ଖ'
୨ — ଷଡ଼ ଦନ୍ତୁର 'ଖ'
୩ — ନଟି କେଲ ଗ୍ରାମରେ 'କ'
୪ — ପାଶରେ 'କ'
୫ — ଭୁଗଣେଶ୍ୱର 'କ'
୬ — ଦଣଇ କି' ନାହିଁ 'ଖ'
୭ — ଗଢ଼ିଲକ କେତକ ମନୁ 'କ'
୮ — ବର ପଟର 'କ'

ମାଳମଣି ଅଛଇ । କାହିଁ ମର୍କତ ମଣ୍ଡପ ମାନଙ୍କରେ ସିଦ୍ଧମାନେ ସମାଧିରେ ଅଛନ୍ତି । କାହିଁ ବୃକ୍ଷମାନଙ୍କରେ ଖଟି ସେଜ ଧକରନ୍ତି ଅଳଙ୍କାର ଭକ୍ଷ ଭୋଜନ୍ତୁ ଏମାନ ଫଳ ଅଛନ୍ତି । କାହିଁ ମହାମହା ସର୍ପମାନେ ଅଛନ୍ତି । କାହିଁ ଅଶ୍ୱମୁଖ ସ୍ତ୍ରୀରମାନେ ଅଛନ୍ତି । ଏମନ୍ତେ କେତେଦୂର (୧) ଗଲା । କୁମର ସଦୃଶେ କନ୍ୟା କାହିଁ ନ ପାଇଲା ।

ତଦନନ୍ତରେ ପଶ୍ଚିମଦେଶର ଦୂତ ଆସି ପ୍ରବେଶ ହୋଇ ଦର୍ଶନ କଲା । ସେ ଦୂତରନାମ ଗୁଣନିଧାନ । ବୁଦ୍ଧିରେ କର ବୃହସ୍ପତିର ସମାନ । ଜାତିରେ ବ୍ରାହ୍ମଣ । ପ୍ରବେ ମନ୍ତ୍ରବାଦ୍ଧି । ପଞ୍ଚ ବର୍ଷରେ କଳପାରଇ ସକଳ ବିଦ୍ୟା ସାଧି । ସେ ଦୂତ କହୁଅଛି ଶ୍ରୋତେଦେବ । ପଶ୍ଚିମ ଦିଗରେ ଅନେକ ଦୂର ଗଲା । ରୁଦ୍ର ସୁଧାନିଧି ସମାନେ (୨) କାହିଁ ନ ପାଇଲା । ସିନ୍ଧୁ, ମଗଧ, ମାଗଧ, ଗିରି, ଲତା, ଗୁଳ୍ମ, ଦେଶ, ନଗର, ସିନ୍ଧୁ, ମହାସିନ୍ଧୁ, ମୂଚଳ, ସୈନ୍ଧବ, ପାଟଣା, ଗ୍ରାମ ପଟଣା, ଶବ ପାଟଣା, ଚବମଣ୍ଡଳ ଚନକୂଟାଚଳ, ବିନ୍ଧ୍ୟମନ୍ଦରାଦି କରି, ଗିରି ନଦୀ ସାଗର ପାଟଣାଦି କରି ସମସ୍ତ ରଜାମାନଙ୍କର ଦେଶରେ ପ୍ରବେଶ ହୋଇଲା । ତହିଁର ମଧ୍ୟରେ ରତ୍ନ କଞ୍ଚୁକ ଦେଶରେ; ଅସ୍ତାଚଳ ପୂର୍ବ ଦେଶରେ, ଅମୃତ କଳାନଦୀଷ୍ଟରେ, ମଧୁବଣ୍ଟି (୩) କଟକ ଭିତରେ ରଜାଏକ ଅଛି । ତାହାର ନାମ ବୈଶ୍ରବନଗ (୪) । ସେ ରଜା ବଇ-ଶ୍ରବଣର ପ୍ରାୟେକ ସକଳ ଗୁଣେ ସମ୍ପୂର୍ଣ୍ଣ । ସେ ରଜାର ମୁକ୍ତାବତୀ ବୋଲି ପାଟମହିଷୀ । ତାହାର ଦୁହିତାନାମ ମଦନବଲ୍ଲଭା ସେ ସକଳ ଗୁଣେ ସୁଲ୍ଲଭ । ମୁଖ ମଦନ ଦର୍ପଣର ପ୍ରାୟେକ (୫) ଶୋଭା । ସଜୀବ ମନମଥଂ ନିଧି ପ୍ରାୟେକ ସ୍ମିତହାସ (୬) ପ୍ରଭା । ତରଳ ତରଙ୍ଗ

---

୧—ଅନେକ ଦୂର 'କ'
୨—ସଦୃଶେ 'କ'
୩—ମଧୁବନ 'କ'
୪—ଅଇଶ ପଞ୍ଚାନନ 'କ'
୫—ଶରଦଚନ୍ଦ୍ର ପ୍ରାୟେକ 'କ'
୬—ଇଷଦ୍ଧାସ 'ଖ'

ନୟନ ମାନୋତ୍ପଳ ମାଳା କର୍ଣ୍ଣ ପର୍ଯ୍ୟନ୍ତେ ଆନ୍ଦୋଳନ ଶୋଭା । ଶତଶତ କ୍ଷୀର ସମୁଦ୍ର ସହସ୍ର ଶରଦ ଚନ୍ଦ୍ର କୁମୁଦ କୁନ୍ଦ ପୁଣ୍ଡରୀକ କମ୍ବୁ ମୁକ୍ତା ତରବାର ମନ୍ଦାକିନୀ କଲ୍ଲୋଳ ଭୁବନମନ୍ଦର ସୁଧାଫେନ ଲକ୍ଷ୍ମୀ ନନ୍ଦନ ଚକ୍ଷୁ ଶୁକ୍ଳ ଆଭା । ନୀଳାଞ୍ଜନ ଭ୍ରମର ମର୍କତ ଜୀମୂତ ନୀଳୋତ୍ପଳ ମୟୂର ଘର୍ଣ୍ଣୋପାନ୍ତ ଅଶିତ କୁସୁମ ଗର୍ବ ନିବାରଣ ନୟନାଞ୍ଜନ ଚକ୍ଷୁମଧ୍ୟ ପ୍ରଭା । ଦାଡ଼ିମ ପୁଷ୍ପ ଦଳ (୧) ମାଣିକ୍ୟ ବନ୍ଧୁକ ପକ୍ୱ ବିମ୍ବଫଳ କୋକନଦ ରକ୍ତୋତ୍ପଳ ନବଅରୁଣ (୨) ମନ୍ଦାର ଗଞ୍ଜିତ (୩) ଅଧର ଅମୃତ କଲ୍ଲୋଳିନୀ ଶୋଭା । ସମସ୍ତ ଲକ୍ଷଣେ ସମ୍ପୂର୍ଣ୍ଣ । ଶଙ୍ଖ ପଦ୍ମ ଧ୍ୱଜାଙ୍କୁଶ ଚକ୍ରାଙ୍କିତ ରେଖା ନ ଥିବାରୁ କର ସେ ହୋଇଲା ଖୁଣ ।

ଏଥିର ପଶ୍ଚିମ ପ୍ରଦେଶରେ ମାଣିକ୍ୟର ପର୍ବତେକ ଅଛି । ସେ ପର୍ବତ ତେଜରେ କର ସୂର୍ଯ୍ୟ ଦେବତା ଜୁଳୁଜୁଳା ପୋକ ପ୍ରାୟେକ ଦିଶଇ । ତହିଁ କଳ୍ପତରୁ ଏକ ଅଛି । ସେ କଳ୍ପତରୁ ଡାଳତରୁ ଶୁଦ୍ଧ ସୁବର୍ଣ୍ଣ ଅଟଇ । ନିଶାଖା ହୋଇଅଛି । ସେ ଡାଳ ତରୁକୁ ଗ୍ରହିଁ ନୁହଇ । ସେ ବୃକ୍ଷର ତଳେ ସୂର୍ଯ୍ୟର ପ୍ରାୟେ ମଣିପୀଠେକ ଅଛି । ତହିଁ ତଳେ ପୁରୁଷେକ ବସିଅଛି । ସେ ପୁରୁଷ ଧବଳବର୍ଣ୍ଣ ଅଟଇ । ସହସ୍ର ସହସ୍ର ଚନ୍ଦ୍ରମାନେ ଉଦେହୋଇଲା ପ୍ରାୟେକ ଶୋଭା ପାଉ ଅଛଇ । ମୂର୍ଦ୍ଧନର ଉପରେ ଫଣା (୪) ସାତ ଗୋଟା ଶୋଭା ପାଉଅଛି । ଷୋଳ ଚନ୍ଦ୍ରମା ଉଦେହୋଇଲା ପ୍ରାୟେକ କପାଳ ଚନ୍ଦ୍ର ଚକ୍ଷୁ ଦିଶୁଅଛି । ଇନ୍ଦ୍ରଧନୁର ପ୍ରାୟେକ ବନମାଳା (୫) ଗୋଟାଏକ କଣ୍ଠୁ ଲମ୍ବାଇ ଅଛି । ଅତ୍ୟନ୍ତ ଅନ୍ଧକାରକୁ ସମ ନୀଳ ବସ୍ତ୍ରେକ କମର ଭାଗେ ପିନ୍ଧିଅଛି । ସେ ସାତ ଫେଣାରେ ମଣି ସାତଗୋଟା ପ୍ରସ୍ତ ହୋଇଅଛି । ମଣିମାନଙ୍କର (୬) ଶିଖା ମଣ୍ଡଳ ପ୍ରାୟେକ ଉଠୁଅଛି । ଚନ୍ତାମଣି ମାନେକ ସର୍ବ୍ୟକର କଣ୍ଠରେ ଲମ୍ବାଇଅଛି । ସେ ଚନ୍ତାମଣି

---

୧—କୁସୁମ
୨—ନବ ଅରୁଣ 'ଖ' ରେ ନାହିଁ
୩—ଜିତ 'କ'
୪—ଫେଣା 'କ'
୫—ବଡ 'ଖ'
୬—ମାଣିକ୍ୟ 'ଖ'

ସକାଶରୁ ପାର୍ଶ୍ୱବର୍ତ୍ତୀ ସିଦ୍ଧମାନଙ୍କର ଭ୍ରମକାମ ନାନା ଅବିଦ୍ୟା ନାଶ ହେଉଅଛି । ସକଳ ତୈଲୋକ୍ୟ ଲକ୍ଷ୍ମୀ ମୂର୍ତ୍ତିବନ୍ତ ହୋଇ ରହିଅଛି । ଆକାଶର ଗଙ୍ଗା ଫେଣା ବିଷ ଜାଳାରେ ସୂକ୍ଷ୍ମଭାବ ହେଉଅଛି । ଏମନ୍ତେ ମୁହିଁ ସେ ମହାବିଦ୍ୟାର ବଳେ ସେ ପର୍ବତର ତଳେ ଯାଇ ହୋଇଲି । ତହିଁ ଦେଖିଲି, ଦିବ୍ୟ ସ୍ତ୍ରୀମାନେ ପ୍ରଜନ ହେଉଅଛନ୍ତି । ତହିଁ ଅମୃତମୟ ସରୋବରରେ ଚନ୍ଦ୍ରମା ପ୍ରାୟେକ କାନ୍ତି ରୂପା ପଦ୍ମମାନେ ଅଛନ୍ତି । ସେ ପଦ୍ମକେଶର ଶୁଦ୍ଧ ସୁବର୍ଣ୍ଣର । ପୃଷ୍ଠର ପଦ୍ମରାଗ ମାଣିକ୍ୟର । ସେ ପଦ୍ମମାନଙ୍କର ଗନ୍ଧ ଶଏ ଯୁଣ ପର୍ଯ୍ୟନ୍ତେ ଯାଇ । ତହିଁ ଆରକତ ବର୍ଣ୍ଣ ପରାଗେ କରି, ସେ ପଦ୍ମମାନେ ଚନ୍ଦ୍ରମଣ୍ଡଳକୁ ମଧ୍ୟ ସନ୍ଧ୍ୟାକାଳରେ ରକ୍ତବର୍ଣ୍ଣ (୧) ମେଘ ଆଚ୍ଛାଦିଲି ପ୍ରାୟେକ ଦିଶୁଅଛନ୍ତି । ଅମୃତ ମକରନ୍ଦେ ପୁଷ୍ପଯୁକ୍ତ ହେଉଅଛନ୍ତି । ସେ କମଳ ବନ ଆଶ୍ରେ କରି ଲକ୍ଷ୍ମୀ କ୍ରିଡ଼ା କରୁଅଛନ୍ତି । ହଂସ ଭ୍ରମର ଓ ନାନା ଜଳଚର ଜୀବଜନ୍ତୁମାନେ ସମସ୍ତେ ରତ୍ନଜଡ଼ିତ ସୁବର୍ଣ୍ଣ ନିର୍ମାଣ ଅଟନ୍ତି । ସେ କମଳକୁ ସୂର୍ଯ୍ୟର ଉର୍ଦ୍ଧ୍ୱ ରଶ୍ମି ସେ ଲାଗଇ । ସେ ପଦ୍ମ ରାତ୍ରେ ମୁଦ୍ରିତ ହୋଇ । ଦିବସେ ପ୍ରକାଶ ହୋଇ ସେ ପଦ୍ମମାନଙ୍କରୁ କନ୍ୟା ଗୋଟିଏ ଗୋଟିଏ ଜନ୍ମ ହୋଇ, ସେ କନ୍ୟାମାନେ ପଦ୍ମିନୀ ଅଟନ୍ତି । ପଦ୍ମବଦନୀ, ପଦ୍ମନୟନୀ, ପଦ୍ମଗନ୍ଧ, ପଦ୍ମବର୍ତ୍ତ କର ଚରଣ, ସେ କନ୍ୟାମାନେ ପ୍ରାତଃକାଳେ କୁମାରୀ ହୁଅନ୍ତି । ମଧ୍ୟାହ୍ନ କାଳରେ ଯୁବତୀ ହୁଅନ୍ତି ଏବଂ ସନ୍ଧ୍ୟାକାଳେ ବୃଦ୍ଧା ହୁଅନ୍ତି । ରାତ୍ରକାଳେ ଲୟେ (୨) ହୁଅନ୍ତି । ପୁନରପି ସେ ପଦ୍ମବନରୁ ପଦ୍ମିନୀ କନ୍ୟାମାନେ ଦିନରେ ଜନ୍ମ ହୁଅନ୍ତି । ସେ କନ୍ୟାମାନଙ୍କର ଯୁବାବୟସ ଯେବେ ସର୍ବଦା (୩) ଥାଆନ୍ତା । ନିଶ୍ଚୟେ କୁମରକୁ ସେ ଭଜନ ହୁଅନ୍ତା ।

ତଦନନ୍ତରେ ତହୁଁ ଅନେକ ଦୂର ପର୍ଯ୍ୟନ୍ତେ ଗଲି । ଭୂବାସ, ଦେବବାସ ଏବଂ ପୁରୁଷବାସ ଆଦିକରି ସମସ୍ତ ପର୍ବତ ମାନନ୍ତ ବୁଲିଲି । କୁମାର ସଦୃଶେ କନ୍ୟା କାହିଁ ନ ପାଇଲି । ଏତେକ ଜଣାଇ ସେ ମଥାରେ ହାତଦେଇ ଆଉହୋଇ ରହିଲା । ତଦନନ୍ତରେ ଦକ୍ଷିଣାଦିଗ ଦୂତ ବୈଚକ (୪) ବୋଲି,

---

୧—ହରିତବର୍ଣ୍ଣ 'କ'

୨—ମ୍ଳାନ 'ଖ'

୩—ସର୍ବଦିନେ 'ଖ'

୪—ଦ୍ୱୈଚିକ 'ଖ'

ସେ ବିଚକ୍ଷଣ ହୋଇ, କଳ୍ପ ଚିନ୍ତାମଣି ବିଦ୍ୟା ଜାଣଇ, ଅଦୃଷ୍ଟ ଅଶ୍ରୁତ (୧) ପଦାର୍ଥ ଶୀଘ୍ର ଆଣି ପାରଇ । ନନ୍ଦନବନ ପର୍ଯ୍ୟନ୍ତେ ଗମି ପାରଇ । ସମସ୍ତ ବିଘ୍ନ ମାନନ୍ତିବଳେ ନିବାରି ପାରଇ । ସେ ରାଜାଙ୍କୁ ନମସ୍କାର କଲା । କରପଦ୍ମ ଯୋଡ଼ି ଜଣାଇଲା । ଶ୍ରୀ ଦେବ । ଦକ୍ଷିଣ ଦିଗକୁ ଗଲି । ବଙ୍ଗ, କଳିଙ୍ଗ, ତେଲଙ୍ଗ, ସଉରାଷ୍ଟ୍ର, ମହାରାଷ୍ଟ୍ର, ବିଚିନ୍ନ, ମହାଚିନ, ଖମଣ୍ଡଳ, ଚଉର୍ଯ୍ୟ ମଣ୍ଡଳ, ଜଳ ମଣ୍ଡଳ, ଭେଦ ମଣ୍ଡଳ, କାଞ୍ଚି, ମାରୁଆ, ପଯ୍ୟା ପଞ୍ଚଭର୍ତ୍ତାର, ଦ୍ୱୀପ ଦ୍ୱୀପାନ୍ତର, ମହୀନ୍ଦ୍ର ମାହେନ୍ଦ୍ର, ମଳୟ, ମହେନ୍ଦ୍ର-ତନୟା, ଗୋଦାବରୀ, କୃଷ୍ଣାବେଣୀ, କାବେରୀ ସହିତ ଦେଶ, ନଗ୍ର, ଘୋଷ ପାଟଣା ବୁଲିବୁଲି କୁମାର ସଦୃଶେ କନ୍ୟା କାହିଁ ନ ପାଇଲି । ତଦନନ୍ତରେ ଉତ୍ତର ଦିଗକୁ ଦୂତ ଶଶଧ ହୋଇ । ଏ ଆଗମ ବିଦ୍ୟାମନ୍ତ୍ରେ କହିଲା ଶ୍ରୀ ଦେବ । ବ୍ରହ୍ମମାତୃକାଙ୍କୁ ସାଧିଅଛି । ଦେବତା ଶରୀର ଭାବ ଅଟଇ । ଉତ୍ତର ଦେଶରେ ଅନେକ ଦୂର ଚଳି । ସମସ୍ତ ରାଜାମାନଙ୍କର ପୁର ଖୋଜିଲି ଉତ୍ସରେ । ପ୍ରବେଶ ହୋଇଲି ଯାଇଁ ହରଦ୍ୱାର ଠାରେ । ସେଠାରେ ଅଇରାବତ ଗଜର ଦନ୍ତରନ୍ଧ୍ରରୁ (୨) ବହୁଅଛି ମନ୍ଦାକିନୀ ନିଧାର ହୋଇ । ତହୁଁ ସର୍ବ ଲକ୍ଷଣ ଶଇଳ ମାନନ୍ତ ଦେଖିଲି । ତଦନନ୍ତରେ ପାଣ୍ଡବ ମାର୍ଗେ ଅନେକ ଦୂର ଗଲି । ବ୍ରହ୍ମ ମାତୃକା ମୋତେ କାନ୍ଧରେ ବସାଇ ହୁଂକାର ନେଲା । ହିମାଚଳ (୩) ପର୍ବତ ଦେଇ ଅତ୍ୟନ୍ତ ଶୁକଳ ପର୍ବତେକ ଦେଖାଇଲା । ସେ ପର୍ବତ ଅତ୍ୟନ୍ତ ଶୁକଳ ଅଟଇ, କହି ନୁହଇଁ, କୁଶଳ (୪) ଭାବୁଁ କରି ସମସ୍ତ ଜଗତର ଗୁମ୍ଫା ସେ ପର୍ବତେ ପ୍ରତିବିମ୍ବ ଅଛି । ଚନ୍ଦ୍ରକାନ୍ତ ମଣି ଯେମନ୍ତ ଚନ୍ଦ୍ରଦରଶନେ ଯେମନ୍ତ ହୋଇ, ସେହିମତ ତହୁଁ ଅମୃତ ଶୀକରମାନେ ଜାତ ହେଉଅଛନ୍ତି । ସେ ପର୍ବତ ତେଜର ଶିଖା ବ୍ରହ୍ମଲୋକ ଯାଏ ଉଠୁଅଛି । ଆକାଶଗଙ୍ଗା ମେଖଳା ଆକାରରେ ଅମୃତ କଳାରେ ଯୁକ୍ତ ହୋଇ ବହୁଅଛି । ଗିରି ପାରୁଷରେ କ୍ଷୀର ସମୁଦ୍ର ଲହରୀ (୫) ମାରୁଅଛି । ଅମୃତ ସମୁଦ୍ର ଭିତରେ ଶ୍ୱେତ ହସ୍ତି ଗୋଟାଏ

---

୧—ଅଦୃଷ୍ଟି ଅଶ୍ରୁତ 'ଖ'
୨—ଦଶନରୁ 'କ'
୩—ହେମନ୍ତ 'ଖ'
୪—ସକ୍ଷ 'ଖ'
୫—ଲହଡ଼ା 'କ'

ପଣିଲ ପରାଏ ଶୋଭା ପାଉଅଛି । ଚନ୍ଦ୍ର ସୂର୍ଯ୍ୟ ସେ ଦୁଇ ପାଶେ ଘଣ୍ଟା ପ୍ରାୟେ ହୋଇଅଛନ୍ତି । ନକ୍ଷତ୍ରମାନେ ସେ ହସ୍ତିର ଉପରେ ପୁଷ୍ପବୃଷ୍ଟି କଲା ପରାଏ ଦିଶୁ ଅଛନ୍ତି । ସେ ମେଖଳା ପର୍ଯ୍ୟନ୍ତେ ସନ୍ଧ୍ୟା ମେଘମାନେ ନାନା ବର୍ଣ୍ଣ ଧରି ବିଚରନ୍ତେ ବିବିଧ ପ୍ରକାରେ ହସ୍ତୀକି ମଣ୍ଡିଲା ପରାଏ ଶୋଭା ଦିଶୁ ଅଛି । ପଶ୍ଚିମ ଦିଗ ସନ୍ଧ୍ୟାରେ ରକ୍ତ ହୋଅନ୍ତେ ଗଜକୁମ୍ଭରେ ସିନ୍ଦୂର ମଣ୍ଡିଲା ପରାଏ ଶୋଭା ପାଉଅଛି । ଅକାଶ ଗଙ୍ଗା ଝର ଝର ହୋଇ ମର୍କତ (୧) ଶୃଙ୍ଗରୁ ପଡ଼ନ୍ତେ ମଦଜଳ ଝରିଲା ପରାଏ ଦିଶୁଅଛି । ମେ ଶୁକ୍ଳ ମେଘମାନ ଗର୍ଜିବାରେ କରି ହସ୍ତୀ ସ୍ୱନ କଲା ପରାଏ ଶୋଭା ପାଉଅଛି । ବୁଧ, ଶୁକ୍ର ଗ୍ରହ ଦ୍ୱୟ ପ୍ରତିବିମ୍ବୁଁ ଦୁଇ ଚକ୍ଷୁ ପ୍ରାୟେ ଦିଶୁଅଛି । ଏମନ୍ତେ ସେ ପର୍ବତରେ ମାନ ସରୋବର ବୋଲି ସରୋବରେକ ଅଛି । ତହିଁ ଚନ୍ଦ୍ର ଦେବତା ଜନ୍ମ ହୋଇ ସେହିବାଟେ ପାତାଳକୁ ଯାଆନ୍ତି ।

ସେ ସରୋବର ଚନ୍ଦ୍ରମା ପ୍ରାୟେକ ଉଜ୍ଜ୍ୱଳ ଅଟଇ । ଆକାଶ-ଗଙ୍ଗା ସଙ୍ଗମ ଅଟଇ । ସେ ସରୋବରେ ସ୍ନାନ କରନ୍ତେ ଦେବତା ହୋଇ । ସେ ପର୍ବତ ଉପରେ, ସରୋବର କୂଳେ ଏକ ବୃଷଭ ଗୋଟାଏ ଅଛି । ସେ ବୃଷଭ ସୁବର୍ଣ୍ଣ ଅଟଇ । ସେ ସୁବର୍ଣ୍ଣ ବୃଷଭର ସିଂହ ଦୁଇ ମାଣିକ୍ୟର । ସେ ସିଂହର ତେଜ ବାଳ ଆଦିତ୍ୟର ପ୍ରାୟେ ପର୍ବତେ ପ୍ରତିବିମ୍ବ ଦିଶନ୍ତେ ହସ୍ତୀର ଦୁଇ ପାରୁଶରେ ଦୁଇ ପାତାଙ୍ଗ ରେଖା ପ୍ରାୟେ ଦିଶୁଅଛି । ସେ ବୃଷଭର ଚକ୍ଷୁ ଦୁଇ ମରକତ ଅଟଇ । ମୁକ୍ତା ପନ୍ତିର ପ୍ରାୟେକ ଦନ୍ତ ଶୋଭା ପାଉଅଛି । ବିଜୁଳି କାନ୍ତି ପ୍ରାୟେକ ଜିହ୍ୱା ଅଟଇ । ରୋମାବଳମାନ ମର୍କତ କଣିକା ପ୍ରାୟେକ ହୋଇ ଅଛଇ । ମେ ବୃଷଭ ମୁଖ ପିଠି ଉପରେ ଦେଇ ଶୋଇଅଛି । ସେ ବୃଷଭକୁ ଅପସର କରି ଏକ ପୁରୁଷେକ ବସିଅଛି । ସେ ପୁରୁଷ ତେଜୋମୟ ଅଟଇ । ପରମ ଧବଳ ଅଟଇ । ତାହାର ଧବଳ୍ୟଁ (୨) କରି ଜଗତ ଧବଳମୟ ପରାଏ ଦିଶୁଅଛି । ସେ ପୁରୁଷର ମୂର୍ଦ୍ଧ୍ନା ଉପରେ ଜଟା ଜୁଟ ମାନେ ଅଛନ୍ତି । କାଳନ୍ଦୀ ତରଙ୍ଗ ପ୍ରାୟେକ ହୋଇ ସେ ଜଟାମାନେ ପର୍ବତେ ଲମ୍ବି ପଡ଼ଥାନ୍ତେ କୃଷ୍ଣବର୍ଣ୍ଣ ସର୍ପମାନେ ଲମ୍ବିଲା ପ୍ରାୟେକ

---

୧—ମଧ୍ୟଶୃଙ୍ଗରୁ 'କ'
୨—ଧବଳ ବର୍ଣ୍ଣ 'ଖ'

ଦିଶୁଅଛନ୍ତି । ହସ୍ତୀକ କଳା ପାଟ ଦଉଡ଼ିରେ ବନ୍ଧନ କଲା ପ୍ରାୟେକ ଶୋଭା ପାଉଅଛି । ତହିଁ ଉପରେ ଚନ୍ଦ୍ର ଜ୍ୟୋତ୍ସ୍ନା ପ୍ରାୟେକ ଧବଳ ଆହ୍ଲାଦ ହୋଇ ଜଳଧାରା ଗୋଟିଏ ପଡ଼ୁଅଛି । ମହାଶଙ୍କ କରି ସେ ପୁରୁଷର ଜଟାରେ ପ୍ରବେଶ ହୋଇ ଝର ଝର ହୋଇ ବହିଯାଉଅଛି ପର୍ବତ ଉପରେ । ସେ ମସ୍ତକରେ ଅର୍ଦ୍ଧଚନ୍ଦ୍ର ଗୋଟିଏ ଅଛି । ସେ ଚନ୍ଦ୍ର ନିଷ୍କଳଙ୍କ ଅଟଇ । ସେ ଚନ୍ଦ୍ର ଜ୍ୟୋତିରେ କରି ପର୍ବତ ଯାକ ଆଲୋକ ହେଉଅଛି । ତହିଁ ବିହରନ୍ତା ଦିବ୍ୟ ଭୃଙ୍ଗମାନେ ଶୂନ୍ୟରେ ଥିଲା ପ୍ରାୟେକ ହୋଇ ଦିଶୁ ଅଛନ୍ତି । ସେ ଚନ୍ଦ୍ରର ଅମୃତ ଧାରମାନ ଶୂନ୍ୟରେ ଥିଲା ପ୍ରାୟ ଦିଶୁଅଛନ୍ତି । ସେ ଚନ୍ଦ୍ରର ଅମୃତ ଧାରମାନ ଆଶ୍ରେ କରି ମହାସର୍ପମାନେ ଅଛନ୍ତି । କେ ତପ୍ତ କାଞ୍ଚନର ପ୍ରାୟେକ । କେ ନିଧୂମ ଅଗ୍ନିର ପ୍ରାୟେକ । କେ ସୂର୍ଯ୍ୟର ପ୍ରାୟେକ । କେ ମାଣିକ୍ୟର ପ୍ରାୟେକ । କେ ପଦ୍ମକେଶର ପ୍ରାୟେକ । ଏମନ୍ତେ ସେ ସର୍ପମାନେ ଜଟାରେ କ୍ରୀଡ଼ନ୍ତେ ଫଣାମଣିମାନଙ୍କର ଶିଖା ସହସ୍ର ସହସ୍ର ହୋଇ ଉଠନ୍ତେ ଆକାଶରୁ ଅଗ୍ନି ଧାରମାନ ଉଠି ବୃଷ୍ଟି କଲା ପ୍ରାୟେକ ଦିଶୁଅଛି । ସେ ପୁରୁଷର ନୀଳବର୍ଣ୍ଣ ଭ୍ରୂଲତା ଦୁଇ, କାମଧେନୁର ପ୍ରାୟେକ ଅଟଇ । କି ଶରଦଚନ୍ଦ୍ର ମଣ୍ଡଳରୁ କଳଙ୍କ ପୋଛି ମୋହମାନ କରି ଗୁନ୍ଥିଲା ପ୍ରାୟେକ (୧) ଦିଶୁ ଅଛି । ସେ ପୁରୁଷର ତିନିଗୋଟି ଚକ୍ଷୁ । ଦକ୍ଷିଣ (୨) ଚକ୍ଷୁ ସୂର୍ଯ୍ୟଦେବର ପ୍ରାୟେକ ଦିଶଇ । ବାମ (୩) ଚକ୍ଷୁ ଚନ୍ଦ୍ରମଣ୍ଡଳର ପ୍ରାୟେକ ଦିଶଇ । ଲଲାଟ ଚକ୍ଷୁ ବଡ଼ବାନଳର ପ୍ରାୟେକ ଦିଶଇ । ନିରେଖି ଚାହିଁଲେ ତହିଁ ତ୍ରୈଲୋକ୍ୟ ଦ୍ରବିଭୂତ ହେଲା ପ୍ରାୟେକ ଦିଶଇ । ପୁଣି ଚାହିଁ ନୋହଇ । ସେ ପୁରୁଷ ସନ୍ଧ୍ୟା ମେଘ ପଟଳ ପ୍ରାୟେକ ପୁଣ୍ଡରୀକ ଦିଶଧାନ କରିଅଛି । କଣ୍ଠ ନୀଳବର୍ଣ୍ଣ, ମୟୂରକଣ୍ଠ ପ୍ରାୟେକ, ଜୀମୂତର ପ୍ରାୟେକ, କି ଜମ୍ବୁନଦର ପ୍ରାୟେକ, ଏମନ୍ତ ହୋଇ ନୀଳକଣ୍ଠ ଅଟଇ । ସାହସ ସ୍କନ୍ଧ, ମହାଘର୍ଘ ପଦ୍ମ ମୃଣାଳ ପ୍ରାୟେକ ବାହୁ ବିପୁଳ ଚାରି ହସ୍ତ ଅଟଇ । ସେ ହସ୍ତମାନଙ୍କର ଶୋଭା ପଞ୍ଚଶର ସର୍ପର ପ୍ରାୟେକ । ନଖମାନେ ଫଣାମଣି ପ୍ରାୟେକ ଦୀପ୍ତ ହୋଇ

---

୧—କଳଙ୍କ ଅଣି ବୁହାଇଲା ପ୍ରାୟେକ 'କ'
୨—ଦକ୍ଷିଣ ଆଡ଼ ଚକ୍ଷୁ 'କ'
୩—ବାମ ଆଡ଼ ଚକ୍ଷୁ 'କ'

ଦଶୁଅଛି । ସୂର୍ଯ୍ୟ ଜ୍ୟୋତ୍ସ୍ନା ପ୍ରାୟେକ କର୍ଣ୍ଣର କୁଣ୍ଡଳ ଅଟଇ । ସେ କୁଣ୍ଡଳର ଦୁଇଶିଖା ଧ୍ରୁବମଣ୍ଡଳ ପର୍ଯ୍ୟନ୍ତେ ଉଠୁଅଛି । ନିଧୂମ ଅଗ୍ନିର ପ୍ରାୟେକ ସର୍ପ ଗୋଟିଏ ପଇତା କରି ଲାଇଅଛି । ଉପର ଦୁଇ ହସ୍ତରେ ଶୂଳ ଡମ୍ବରୁ ଧରିଅଛି । ତଳ ଦୁଇହସ୍ତେ ମୃଗ ଅଭୟ ଅଛି । ପର୍ବତର ପ୍ରାୟେକ ନିଶ୍ଚଳ (୧) ସମାଧିରେ ବସିଅଛି । ସେ କନକ ବୃଷଭକୁ ଆଉଜି ଅଛି । ତ୍ରୈଲୋକ୍ୟପାକ ଦଗ୍ଧ କରିବାକୁ କାଳଦେବତା ପ୍ରାୟ ହୋଇ ମୂର୍ତ୍ତିବନ୍ତ ଘୁରୁଛେକ ଅଛି । ସେ ପିଙ୍ଗଳବର୍ଣ୍ଣ । ଆଦିତ୍ୟର ପ୍ରାୟେ ତେଜ । ମୁଖ ମର୍କଟର ଆକୃତି । ହସ୍ତରେ ଶୂଳ ଗୋଟିଏ ଧେନିଅଛି । ସେ ପର୍ବତକୁ ସେ ରକ୍ଷା କରିଅଛି । ସେ ପୁରୁଷର ଦକ୍ଷିଣ ପାର୍ଶ୍ୱରେ ଗଜବଦନ ପ୍ରକୃତ ହୋଇ ବାଳକ ଗୋଟିଏ ଖେଳୁଅଛି । ବାସୁକିନାଗକୁ ଧରିଅଛି । ଝଣ୍ଡେନ୍ଦୁରେ ସୁବର୍ଣ୍ଣର ଇନ୍ଦୁର ଗୋଟିଏ ଗୁଡ଼ିଅଛି (୨) । ସେ ପୁରୁଷର ଆଗରେ ଏକ ସ୍ତ୍ରୀଏ ଠିଆ ହୋଇଅଛି । କୋଟି କୋଟି ଲାବଣ୍ୟ ଜଳଧିମାନ ତାହାର କୌଣସି ଅଙ୍ଗମାନଙ୍କରୁ ଜାତ ହେଉଅଛି । କାମଦେବ, ଶେଷନାଗ, ସରସ୍ୱତୀ ଏମାନେ ତାହାର ରୂପ କହିବାକୁ ହୋଇବେ ଜଡ଼ମତି (୩) । ସେ କନ୍ୟାର ପାଦପଦ୍ମରୁ କୋଟି କୋଟି ଲକ୍ଷ୍ମୀ ଜନ୍ମ ହେଉଅଛନ୍ତି । ଅମୃତ ପଦ୍ମର ପ୍ରାୟେକ ଆୟତନ ହୋଇ ତିନି ଚକ୍ଷୁ ଅଟଇ । ତିନି ଲୋକକୁ ତିନି ଦର୍ପଣରେ ପ୍ରାୟେକ ଦଶୁଅଛି । ଜଗତ ତହିଁ ସେ ଅଛି । କ୍ଷିତଭାସ ମତେ ମୁଖ ଯେମନ୍ତ ଶୋଭା ପାଉଅଛି । ସକଳ ଜଗତର ଚକ୍ଷୁ ସେ ଆନନ୍ଦ-କଣିକା ମାତ୍ର ଦେଉଅଛି । ତାହାର ଅପାଙ୍ଗ ଲୋଚନେ ଯେଉଁ ସୁଖ ପାଇ, ମନ ବୁଦ୍ଧି ଗୋଚରେ ତାହାକୁ ନୁହଇଁ କହି । କୋଟିଏ ଯୁଗ ପ୍ରଳୟ ହୋଇଲେ ଘଡ଼ିଏ ପ୍ରାୟେକ ମଣି । ତାହାର ମୁଖକୁ ଗୃହିଁ ଗୃହିଁ ସେ ସମାଧିମୟେ ପୁରୁଷଚନ୍ଦ୍ର ଚକ୍ଷୁ ଦେଇଅଛି । ସେ କନ୍ୟା (୪) ତହିଁ । ସୂର୍ଯ୍ୟ ଚକ୍ଷୁ ଅଛି ଯୋଗ (୫) ଲୟେ ହୋଇ । ଅଗ୍ନି

---

୧—ଅଚଳ ହୋଇ 'କ'
୨—ଛପିଅଛି 'କ'
୩—ଅଯୁଗୁତ 'କ'
୪—କନ୍ୟାର 'କ'
—ଯୁଗ 'କ'

ଚକ୍ଷୁରେ (୧) କରି ଜଗତଯାକ ବ୍ୟାପିଅଛୁ ଅଛିଦ୍ର ହୋଇ । ସେ କନ୍ୟାର ଯେବେ ତିନି ଚକ୍ଷୁ ନୋହନ୍ତା, ପାର୍ବତୀ ଗୁଡ଼ ଯେବେ ଅନ୍ୟ ସ୍ତ୍ରୀ ହୋଅନ୍ତା; ସେ କନ୍ୟା ଯେବେ ମସ୍ତ୍ର (୨) ତଳେ ଥାଆନ୍ତା, ତେବେ ସେ କନ୍ୟା ଜ୍ଞାନରୁଦ୍ରକୁ ଭଜନ ହୁଅନ୍ତା । ସେ ସ୍ଥାନ ସୂର୍ଯ୍ୟହୁଁ (୩) ଉପର ଅଟଇ । ତହୁଁ ସେ ପୁରୁଷକୁ ନମସ୍କାର କରି, ବ୍ରହ୍ମ ମାତୃକା ମୋତେ ଗୁହଲ ତୋହର ପୁଣ୍ୟ । ଏମନ୍ତ ବଚନ ଦୂତ କହିଲ ଯହୁଁ । ଶୁଣି ରାଜାର ହର୍ଷ ନୋହିଲ ତହୁଁ (୪) । ଏ ଉତ୍ତରେ ରାଜା ଶଙ୍କା ପାଇଲ । କୁମାର ସମ୍ପୂର୍ଣେ ତ କନ୍ୟା ନୋହିଲ । ଏବଂଭୂତ ବିଚାର କରନ୍ତେ । କଛି ଦିବସର ଅନ୍ତେ । କାମାନନ୍ଦ ବୋଲି ଯୋଗୀ ଏକ ପ୍ରବେଶ ହୋଇଲ । ସେ ଅତ୍ୟନ୍ତ ଅଦ୍ଭୁତ । ସେ ଯୋଗୀ ଅଭିନବ ଯୁବା । କନ୍ଦର୍ପର ଆଭା । କି ଗୃଲବାର ଶୋଭା । ତରୁଣ ସିଂହର ପ୍ରଭା । କି ମତ୍ତଗଜର ଲୀଳାଗତିକି ନିନ୍ଦୁଅଛି । କି ନାୟିକାମାନଙ୍କୁ କାମବାଣ ସାନ୍ଧୁଅଛି (୫) । ସମ୍ପୂର୍ଣ୍ଣ ଚନ୍ଦ୍ରମଣ୍ଡଳ ପ୍ରାୟେକ ମୁଖମଣ୍ଡଳ । କର୍ଣ୍ଣରେ ମୁଦ୍ରା ଦୁଇଗୋଟା ଶୋଭା ପାଉଅଛି କି ଅମୃତମୟ ବେନି କୁଣ୍ଡଳ । ସେ ଯୋଗୀର ସଙ୍ଗତେ ଅଦୃଶ୍ୟ ହୋଇକରି ଭୂତ ପ୍ରେତ ପିଶାଚକ ବେତାଳ ଯକ୍ଷିଣୀ ମାତୃକାଚଣ୍ଡୀ ଆଦିକରି ସହିତେ ସମସ୍ତେ ବେଢ଼ିଅଛନ୍ତି କି ରାଜାକୁ ଅମାତ୍ୟଗଣମାନେ ଯମନ୍ତି । ସେ ଯୋଗୀ ସକଳ ବିଦ୍ୟା ଅଛି ସାଧି । ତିନି ଭୁବନକୁ ଜାଣିବାକୁ (୬) ଜାଣଇ ବୁଦ୍ଧି । ବହୁତ ଜାଣଇ କଳ୍ପ ମଉଷଧି (୭) ।

ସେ କେବଣ କେବଣ କଳ୍ପମାନ କରିଅଛି । ହିମକଳ୍ପ, ଗନ୍ଧକ-କଳ୍ପ, ନାଗକଳ୍ପ, ରସକଳ୍ପ, ଅଭ୍ରକଳ୍ପ । କର୍ପୂରକଳ୍ପ । ନିର୍ଗୁଣ୍ଡୀକଳ୍ପ । ମଣିକଳ୍ପ । ବେଦନ୍ତୀକଳ୍ପ । କ୍ଷୀରକଳ୍ପ । ଧାତ୍ରୀକଳ୍ପ ଇତ୍ୟାଦି କରି

---

୧—ଅଗ୍ନି ଚକ୍ଷୁଏ 'କ'
୨—ରବି 'ଖ'
୩—ସୂର୍ଯ୍ୟ ସ୍ଥାନହୁଁ 'କ'
୪—ରାଜା ଅତ୍ୟନ୍ତ ସନ୍ତୋଷ ସନ୍ତୋଷ ହୋଇଲକ ତହିଁ 'କ'
୫—ବିନ୍ଧୁଅଛୁ 'ଖ'
୬—ଜିଣିବାକୁ 'କ'
୭—ମହୌଷଧି 'ଖ'

ସକଳକଳ୍ପ ସାଧିଅଛୁ । କଳ୍ପଚିନ୍ତାମଣି ଗରୁଡ଼ ପୁରାଣ । କଉତୁକ ଚିନ୍ତାମଣି । ବୌଦ୍ଧ ଆଗମାଦିକର ଗ୍ରନ୍ଥ ପରିମାଣି ।

ଏବଂଭୂତ କଲ୍ପମାନନ୍ତ କରି । ବଳ ପଳିତ ନିବାରି । କାମ-ଦେବର ପ୍ରାପ୍ତେକ (୧) । ଶରୀର ଗୋଟିକ ଅଛୁ ଅତ୍ୟନ୍ତ ଯତ୍ନେ ଧରି । ତଦନ୍ତରେ 'ମଣିସାଧନ ସାଧିଅଛୁ । କେବଣ କେବଣ ମଣି ସାଧନ । ଜଳ ସ୍ତମ୍ଭନ । ଅଗ୍ନି ସ୍ତମ୍ଭନ । ରସ ସ୍ତମ୍ଭନ । ସୁବର୍ଣ୍ଣ କରଣ ମଣି । ମୋହନ କରଣ ମଣି । ଉଲୂକ ମଣି । ଖେଚର ମଣି । କାମଗ୍ରହଣ ମଣି । ଅମୃତ ମଣି । ଅକାଠ ମଣି । ଊର୍ଦ୍ଧ୍ୱଗତ ମଣି । ସର୍ବଦର୍ଶୀ ମଣି । ପାତାଳ ମଣି । ନିଧି ପ୍ରବେଶ ମଣି । ଦୃଷ୍ଟାଦୃଷ୍ଟ ମଣି । ଘାପ ମଣି । ମଣ୍ଡୂକ (୨) ମଣି । ନାଗମଣି । ଶୋଷଣ ମଣି । ମୋହନ ମଣି । ଦିବ୍ୟ (୩) ମଣି ଇତ୍ୟାଦି କରି ସକଳ ମଣିମାନନ୍ତ ଅଛୁ ସାଧନ କରି । ମନ୍ତ୍ର (୪) ଚୂଡ଼ାମଣି ବୋଲି ଆଗମ ଶାସ୍ତ୍ରେ କରି (୫) ଅସାଧ ମାନନ୍ତ ଅଛୁ ସାଧନ କରି । କେବଣ କେବଣ ସାଧନ । କଳ୍ପତରୁ ସାଧନ । ଚିନ୍ତାମଣି ସାଧନ । ପଞ୍ଚବକ୍ତ୍ର ସାଧନ । ଗରୁଡ଼ ରୁଦ୍ରସାଧନ । ଚତୁର୍ଭୁଜ (୬) ସାଧନ । କାମଧେନୁ ସାଧନ । ଆଦିକରି ଏ ସାଧନମାନନ୍ତ ଅଛୁ ସବୁ ସାଧ କରି । ତଦନ୍ତରେ ମଣିମନ୍ତ୍ର ମୁଦ୍ରାରେ ଶ୍ମଶାନ ଭୂମିରେ ମୁଣ୍ଡମାଳା ସ୍ଥାପି, ପୂଜାବିଧି କରି । ରକ୍ତ ମାଳାମ୍ବର ଧରି ଅଷ୍ଟ ବେତାଳଙ୍କୁ ସାଧିଅଛୁ(୭) । ସମସ୍ତ ବିଦ୍ୟାଙ୍କୁ(୮) ବାନ୍ଧିଅଛୁ । ତଦନନ୍ତରେ ମୃତଶବ ଭସ୍ମ ଅଗ୍ନିରେ, କଳାମେଣ୍ଢା ରୁଧିରେ ହୋମକରି, ଭୂତଚକ୍ର ମଣ୍ଡଳ ରଚିକରି, ସରସ ବସ୍ତୁ ଯନ୍ତ୍ର କଳ ପାଶ ଭୂଇଁ ଗଣ୍ଡି । ଅଞ୍ଜଳ ମନ୍ତ୍ରୀ, ଭୂତ-ମାନଙ୍କୁ ଭୃତ୍ୟ ପରିଏ କରି ବଶ କରିଅଛୁ । ତଦନନ୍ତରେ ମୃତ ପିଣ୍ଡ ଉପରେ ପୂର୍ବାଭିମୁଖ ହୋଇ, ନଦୀକୂଳେ, ବଟ ବୃକ୍ଷର ମୂଳେ ମହାନିଶା କାଳେ ।

---

୧—ପର୍ଯ୍ୟ 'ଖ'
୨—ମାଣ୍ଡୂକ 'କ'
୩—ଦ୍ରାବମଣି 'କ'
୪—ତନ୍ତ୍ର 'କ'
୫—ଶାହାସ୍ତ୍ରେ ପ୍ରମାଣେ କରି 'କ'
୬—ଚନ୍ଦ୍ର ସୂର୍ଯ୍ୟ 'କ'
୭—ସାଇଧ୍ୟ 'କ'
୮—ସକଳ ବିଘ୍ନମାନ 'କ'

ମନୁଷ୍ୟର ମୁଣ୍ଡ ମଣିମାଳା ଧରି । ବଳ ମଣ୍ଡଳ ପୂଜା କରି । ବାମଚକ୍ର ଆଚରି । ମହା ଭୈରବ ଚଣ୍ଡୀକି ଅଛୁ ମନ୍ତ୍ରବଳେ ବଶ କରି । ତଦନନ୍ତରେ ଚତୁଃଷଷ୍ଠୀ ଯୋଗିନୀକି ସାଧିଲି ।

କେବଣ କେବଣ ପ୍ରକାରେ । ପ୍ରଥମେ ମାତୃକା ଶିବାନାମ ସୁର (୧) ସୁନ୍ଦରୀ ଯକ୍ଷିଣୀକି (୨) ଷଣ ମାସେ ସାଧିଲି । ପାଶରେ ଅନ୍ୟ ପ୍ରାସାଦ ନଥିବା ଏବଂଭୂତ ଶମ୍ଭୁ ଆଳରେ ବସି । ସ୍ଫଟିକ ମାଳାରେ ଦ୍ୱାଦଶାକ୍ଷର ମନ୍ତ୍ର ପ୍ରକାଶି । ମହା ହବିଷ୍ୟ କରି । ମନବୁଦ୍ଧି ସଞ୍ଜମି । ଇନ୍ଦ୍ରିୟନ୍ତ ନୟମି । ପରମ କାଷ୍ଠାମତେ । ଗୁଗୁଳ ଧୂପାଦି କରି ପୂଜା ହୋମ ଯୁକ୍ତେ । ମାତୃକା ଶିବାକୁ ଅଛୁ ମନ୍ତ୍ରର ବଳେ ବଶକରି । ତଦନନ୍ତରେ ଘରଯା ନାମ ଯକ୍ଷିଣୀକି (୩) ଅଷ୍ଟାକ୍ଷର ମନ୍ତ୍ରେ, ଜାଳନ୍ଧରୀ ତନ୍ତ୍ରେ, ଚନ୍ଦନ ଲେପନ ପଟ୍ଟେ, ବେଲବନ ନିକଟେ, ଶ୍ରୀଖଣ୍ଡ ଲେପନ ଗାତ୍ରେ । ଶ୍ରୀଖଣ୍ଡ ଶୈଳେ । ଜାତି କୁସୁମମାଳେ । ସେ ମାଳୋତ୍ପଳାକ୍ଷୀ ରତି ପ୍ରିୟା ନାମ ଯକ୍ଷିଣୀକି ତ୍ରିସନ୍ଧ୍ୟାପଟେ ପୂଜା ବିଧାନେ ସାତଦିନେ ବଶକଲି । ସେ ଦ୍ରାକ୍ଷିଣୀ (୪) ସନ୍ଧ୍ୟାରେ ପରିବାରୀ ଘେନି ଦିବ୍ୟାଙ୍ଗନା ହୋଇ ମନ ହରଇ । ଦିବ୍ୟ ପୁରମାନ କଳ୍ପିଲେ କରଇ । ଦିବ୍ୟ ପଦାର୍ଥମାନ ମାଗିଲେ ଶୂନ୍ୟେ ଥାଇ ଦିଅଇ । ଉତ୍କଟ ଶୃଙ୍ଗାର ରସରେ ବଡ଼ ସୁଖ ପାଇ । ଦିନରେ ପଚଶ ସୁବର୍ଣ୍ଣ ବହିବାକୁ ଦିଅଇ । କୁଳାଙ୍ଗନା ପ୍ରାୟେ ହୋଇ ପାଖରେ ଶୁଅଇ । ତଦନ୍ତରେ ଶୁକ ପକ୍ଷୀର ପ୍ରାୟେକ ବର୍ଣ୍ଣ । କର୍ଣ୍ଣ ପିଶାଚୀ ନାମ ଯକ୍ଷିଣୀକି (୫) । ମାଳମଣି ମାଳାରେ ସନ୍ଧ୍ୟାକାଳରେ । ଦୁଦୁରା ବନରେ କାଞ୍ଚନ ପୁଷ୍ପରେ ଏକ ପାଦ ସ୍ଥିତେ ସର୍ବାଙ୍ଗସାକ ଘୃତ ବ୍ୟାପୃତ (୬) କରି, ମହିଷ ମୁଣ୍ଡ ପାତେ, ଅପାମାର୍ଗ ଗୃଢ଼ଜଳରେ ଏକବର୍ଣ୍ଣୀ ଗାଈ କ୍ଷୀରରେ ପାୟସ ଭକ୍ଷଣ କରି ସେ କର୍ଣ୍ଣ ପିଶାଚୀକି ଏବଂଭୂତ ପ୍ରକାରେ ବଶ କରିଅଛୁ ସାଧି । ଶଏ

---

୧—ଶୁଭ 'ଖ'
୨—ଦ୍ରାକ୍ଷିଣୀକି 'ଖ'
୩—ଦ୍ରାକ୍ଷିଣୀକି 'ଖ'
୪—ଦ୍ରାକ୍ଷିଣୀ 'ଖ'
୫—ଦ୍ରାକ୍ଷିଣୀ 'ଖ'
୬—ବ୍ୟାପିତେ 'କ'

ସୂଣର ବାରତା ଜାଣଇ ସୁଧୀ । ତଦନନ୍ତରେ ସର୍ବ ମନୋହାରିଣୀ ଦ୍ରାକ୍ଷିଣିକୁ (୧) ଧୂମ୍ରବର୍ଣ୍ଣ ମନ୍ଦାକିନୀ ତଟରେ ମନ୍ଦାର ବନ ନିକଟରେ ମଧ୍ୟାହ୍ନ କାଳରେ ଏକାଦଶାକ୍ଷରୀ ମନ୍ତ୍ରେ ନନ୍ଦନ ଗିରି, ମନ୍ଦାର ପୁଷ୍ପ, ସାଧନ ତନ୍ତ୍ରେ ହୂଂକାର ବୀଜେ ଶାଢ଼ୁଳ ଲିଙ୍ଗୁଳ ଧ୍ୱଜେ ପୀଠ ଶକ୍ତିଏ ଏକାଗ୍ର ଭକ୍ତିଏ ଚତୁର୍ଦ୍ଦଳ କମଳେ ଲିଙ୍ଗନ୍ୟାସ ମନ୍ତ୍ରେ କରି ଏହାକୁ ସାଧିଲା । ଏ ସମସ୍ତ ଜଗତରେ ଦେବ ଗନ୍ଧର୍ବ ଯକ୍ଷ କିନ୍ନର ମନୁଷ୍ୟ ମହୋରଗାଦି କରି ସମସ୍ତ ଭୂତମାନଙ୍କର ଚିତ୍ତ ମୋହ ବଶ କରି ପାରଇ । ତଦନନ୍ତରେ କମଳିନୀ ନାମ ଦ୍ରାକ୍ଷିଣୀକି (୨) ପଦ୍ମ ପୁଷ୍କର ମାନେ କମଳବନ ଥାନ୍ତା ସରୋବର କୂଳେ ନାଭିକମଳ ସ୍ଥିତ ପାଣିରେ କମଳ ମାଳା ଭରଣରେ ଅଷ୍ଟାକ୍ଷର ମନ୍ତ୍ରେ ଆଗମତନ୍ତ୍ରେ ପଦ୍ମିନୀ-ଶକ୍ତିରେ ତ୍ରିକୋଣ ପୀଠ ଯୁକ୍ତ ଅନୁସ୍ୱାର ଯୁକ୍ତ ଯୋନିରେ ଭବ ବୀଜେ କରି କମଳ ମୃଣାଳ ଆହାର ଆଚରି ଅଷ୍ଟଦଳ କମଳେ କରି ପୂଜିଲା । କମଳିନୀ ନାମ ଯକ୍ଷିଣୀକି (୩) ସେ ଅଷ୍ଟ ଦଳରେ ଭଜିଲା । ସେ ଅନେକ ଧନରତ୍ନମାନନ୍ତ ଦେଇ ପାରଇ । ଏମନ୍ତେ ସେ ଉପସର୍ପାନାମ ଯକ୍ଷିଣୀକୁ (୪) ନୀଳଗନ୍ଧଲେପି ନୀଳବସ୍ତ୍ର ପିନ୍ଧି ନୀଳମଣି ଲଇ (୫) ଅଞ୍ଜନର ପ୍ରତିମାକରି ନୀଳତିଳେକ (୬) ବାହାଡ଼ା ସମିଧରେ ହୋମକରି, ନୀଳଜମ୍ବୁଫଳ ନୀଳଉତ୍ପଳ ନୈବେଦ୍ୟ ଦେଇ ଦ୍ୱାଦଶାକ୍ଷର ମନ୍ତ୍ରେ, ଆଗମତନ୍ତ୍ରେ ବ୍ରତେକ ଯନ୍ତ୍ରେ କରି ସାଧନ କରିବାର ବେଳେ ରଥ, ଗଜ, ଅଶ୍ୱ, ପଦାତି, ସିଂହାସନ, ଦୋଳାଦିକରି ବିବିଧ ଚମତ୍କାର ପଦାର୍ଥମାନ ଦେଖାଇ ପାରଇ ଅତ୍ୟନ୍ତ କୁତୂହଳେ । ଏମନ୍ତେ ଭାର୍ଯ୍ୟା, ମାତୃକା, କର୍ଣ୍ଣ ପିଶାଚୀ, ସର୍ବମନୋହାରୀ, କମଳିନୀ, ଉପସର୍ପା, ଦର୍ଶିନୀ, ବେତାଳୀ, ମୋହିନୀ, ଜାଳନ୍ଧରୀ, ବଜ୍ରପାଣୀ, ସିଦ୍ଧମାତା, ଭଗ୍ନୀ, ସୁରସୁନ୍ଦରୀ ସହିତକରି, ଚତୁଃଷଷ୍ଟି ଯୋଗ୍ନୀକି ଅଛି ସାଧି । ସମସ୍ତ ଚମତ୍କାରମାନଙ୍କୁ ଜାଣଇ ବୁଦ୍ଧି ।

---

୧—ଦ୍ରାକ୍ଷିଣୀ 'ଖ'

୨—ଦ୍ରାକ୍ଷିଣୀ 'ଖ'

୩—ଦ୍ରାକ୍ଷିଣୀକି 'ଖ'

୪—ଦ୍ରାକ୍ଷିଣୀକି 'ଖ'

୫—ନୀଳମଣି ମାଳା 'କ'

୬—ନିମ୍ବପତ୍ରେ 'ଖ'

ଏବେ ବ୍ରହ୍ମକୁମାର ଚଣ୍ଡ, ମାଗୁଣି ଚଣ୍ଡ, ଉଗ୍ରିଷ୍ଟ ଚଣ୍ଡ, ଚରଣ ଗିରିଚଣ୍ଡ ଏମାନେ ଧରିଥାନ୍ତି । ଷାଠିଏ ଷାଠିଏ ଗୋଟାଦଣ୍ଡ । ଏହାଙ୍କୁ ପ୍ରକୃତି-ମତେ, ବିବିଧ ଯନ୍ତ୍ରେ ପୂଜାକରି, ବଶକରି ସମସ୍ତ କଉତୁକମାନଙ୍କର ପାରଇ । ଯାହା ମନେ ଧରି ତାହା ଜାଣି ପାରଇ । ଏମନ୍ତେ ଅବଳା, ତ୍ରିପୁରା, ତ୍ରିପୁର ସୁନ୍ଦରୀ, ଭୁବନେଶ୍ୱରୀ ସହିତ କରି ସମସ୍ତ ଦେବୀମାନନ୍ତ କରିଅଛୁ ଯତ୍ନେ । ହୋମ ମନ୍ତ୍ର ଯନ୍ତ୍ର ତନ୍ତ୍ରର ବଳେ କରିଅଛୁ ପ୍ରସନ୍ନ । ଉଦ୍ୟଦ୍ଦ୍ୟୁମଣି ଦ୍ୟୁତି-ବିନ୍ଦୁ କିରୀଟିଂତୁଙ୍ଗ କୁଚାଂନୟନ ତ୍ରିମ୍ୟୁକ୍ତାଂ । ସ୍ମେରମୁଖୀଂ ବରଦାଙ୍କୁଶ ପାଶ ଶୋଭିତ କରାଂ, ପ୍ରଭଜେଭୁବନେଶ୍ୱରୀଂ । ଏବଂଭୂତ ଧ୍ୟାନେ । ଏକାକ୍ଷର ମନ୍ତ୍ର ପ୍ରସନ୍ନେ, ସୁରାମାଂସ ବଳୟୁକ୍ତେ ଦେଲୁ ଯହୁଁ । ଲାକେମୀ, କାକେମୀ, ହାକମୀ, ଡାକମୀ, ବାକମୀଏ ସହିତେ ଷଟ୍‌ଚକ୍ର ଅଧିଷ୍ଠାତ୍ରୀ ଷଟ୍‌ଶକ୍ତି ଭୁବନେଶ୍ୱରୀ ସହିତେ କରି ପ୍ରସନ୍ନ ହୋଇଲେ ତହୁଁ । ଏ ଭୁବନେଶ୍ୱରୀ ଅତିଅନ୍ତ ପ୍ରସନ୍ନ ହୋଇ । ଖଣ୍ଡଇନ୍ଦୁଯୁକ୍ତ ମୁକୁଟେକ ଲଇ । ଇନ୍ଦ୍ରାଧିବାସେ ଯୁକ୍ତ ହୋଇ ପ୍ରସନ୍ନ ବଦନେ ବୋଇଲା । ହେ କାମାନନ୍ଦ ତୋହର ବାଞ୍ଛା ସିଦ୍ଧି ହୋଇଲା । ଯୋଗୀ ସାଷ୍ଟାଙ୍ଗେ ପାଦରେ ପ୍ରଣାମ କରି କରପତ୍ର ଯୋଡ଼ି ଜଣାଇଲା । ହେ ମାତା ତୁ ଯେବେ ମୋତେ ହୋଇଲୁ ପ୍ରସନ୍ନ । ନିଷ୍ଠନ୍ତେ ଅମୃତ ଅଧିକରି କରିବି ଆପ୍ୟାନ । ଏହା ଶୁଣି ସେ ଗୋସାମଣି ବୋଇଲା ବର ମାଗ । ଯୋଗୀ ବୋଇଲା ପରମଶ୍ରେୟ ଦେ । ଭୁବନେଶ୍ୱରୀ ବୋଇଲା ପରମଶ୍ରେୟ ମୋକ୍ଷସିନା । ସେ ମୋହର ଅଧିକାର ନୁହଇ । ତାହା ଶ୍ରୀକୃଷ୍ଣ ବ୍ୟତିରେକେ ଆନ ଦେଇ ନ ପାରଇ । ମୁଁ ତୋତେ ଉପଦେଶ ଦେବି ତୁ ମୋକ୍ଷ ହୋ । ଯୋଗୀ ବୋଇଲା ମୋକ୍ଷ କେମନ୍ତ । ଭୁବନେଶ୍ୱରୀ ବୋଇଲେ ସଂସର୍ଗହିଁ ନାହିଁ । ଇନ୍ଦ୍ରିୟହିଁ ନାହିଁ । ମନବୁଦ୍ଧି ନାହିଁ । ମୁହିଁ ମୋହର ନାହିଁ । ଅହଂକାର ନାହିଁ । ଜ୍ଞାନାଜ୍ଞାନ ନାହିଁ । ଜାଗ୍ରତ ସ୍ୱପ୍ନ ନାହିଁ । କେବଳ ସତ୍ତ୍ୱ ମାତ୍ର । ଆନନ୍ଦ ଘନ ନିବିଡ ବୋଧ ସ୍ୱରୂପ । ତୁରୀୟାତୀତ, ଚୈତନ୍ୟ ମାତ୍ର ବ୍ୟାପୀ, ସତ୍ୟ, ନିତ୍ୟ, ଅନନ୍ତ । ତ୍ରୟକାଳ ସ୍ଥାୟୀ ପୂର୍ଣ୍ଣବ୍ରହ୍ମ । ସନାତନ । ଏବଂଭୂତ ଦଶାକୁ ହାଦେ ମୋକ୍ଷ ବୋଲି । ଯୋଗୀ ବୋଇଲା ଏ ମୋକ୍ଷରେ ବିଷୟ ରସ ଅଛିଟି କି । ଦିବ୍ୟ ପଦାର୍ଥ-ମାନ ଖାଇବାକୁ ମିଳଇଟି କି । ଦିବ୍ୟ ସ୍ତ୍ରୀମାନ ଭୋଗ କରିବାକୁ ମିଳଇଟି କି । ଦିବ୍ୟ ପୁରମାନଙ୍କରେ କ୍ରୀଡ଼ା କରିଟି କି । ଦିବ୍ୟବସ୍ତୁମାନ ମିଳଇଟି କି । ଏହାଶୁଣି ଗୋସାମଣି ବୋଇଲେ କିନ୍ତୁ ଅଜ୍ଞାନ ନରକ ଏ । ଶ୍ରୋତ୍ରୁ, ଶ୍ରବଣ, ଶ୍ରୋତା, ଦ୍ରଷ୍ଟା ଦର୍ଶନ, କିଛିହିଁ ନାହିଁ । ଯହିଁ, ଅବିଦ୍ୟା ପ୍ରପଞ୍ଚ

ଭ୍ରମ ଥିବ କାହିଁ । ଏହାଶୁଣି ଯୋଗୀ ବୋଇଲ ମୋହର ମୋକ୍ଷରେ କାର୍ଯ୍ୟ ନାହିଁ । ବିଷୟରସ ବ୍ୟସନକ ଆନନ୍ଦ ଅବା ଅଛି କାହିଁ । ବିଷୟ ଆନନ୍ଦ ହିଁ ସେ ସୁଖ । ସୁଖ ହିଁ ସେ ଜ୍ଞାନ । ନୋହିଲେ କେମନ୍ତେ ଖଣ୍ଡେନ୍ଦୁ ଚୂଡ଼ାମଣି । ଅର୍ଦ୍ଧାଙ୍ଗେ ଅନନ୍ତ ହିମାଳୟନନ୍ଦନୀ । ଆପଣେ ସୁଖ ପାଉଅଛି । ଜଗତକୁ ବିଡ଼ମ୍ବି ଭଣ୍ଡାଇବା ନିମିତ୍ତ ସ୍ତ୍ରୀ ବସ୍ତୁ ଅଜ୍ଞାନ ବୋଲି କହୁଅଛି । ଉପବାସେ ଥାଇ । ଖଗକାକର ଖାଇ । ସଙ୍ଗ ନ ଦେଖି । ଅରଣ୍ୟ ଭୂମିରେ ଥାଇ । କେ ଅବା କାହିଁ ଅଛି ଆନନ୍ଦ ସୁଖପାଇ । ଦିବ୍ୟ ହେମ ଘରେ । ସୁଲୋଚନା ମଣ୍ଡଳରେ । ଚନ୍ଦ୍ରଜ୍ୟୋତ୍ସ୍ନାରେ । ଉଜ୍ଜ୍ୱଳ ଗବରେ । ଚନ୍ଦନ ଲେପନ ଗାନରେ । ମନ୍ଦ ମନ୍ଦ ପବନରେ । ବୀଣା ଶ୍ରବଣରେ । କୁସୁମୋଦ୍ଭବ ଉପବନରେ । ମଳୟ ମନ୍ଦ ପବନରେ । ନବୀଢ଼ ଆଲିଙ୍ଗନରେ ମୃଗଦୃଶାର ପ୍ରେମ ପ୍ରସନ୍ନ ମୁଖ ଦର୍ଶନେ । କେ ଅବା ନପାଇବଟି ପରମ ସୁଖ ଏସନେ । ମୋହ ମତେ । ବିଷୟ ହିତେ । ବୋଧଜ୍ଞାନ । ଏଥିଉତ୍ତାରେ କେ ନୋହଇ ଜ୍ଞାନ । ତୁମ୍ଭେ ଯେ ମୋତେ ମାତା ଦେବ ବର । ପ୍ରସନ୍ନ ହୋଇ ଅନୁଗ୍ରହ କର । ଯାହା ମାଗିବି ତାହା ସାବଧାନ କର । ହାଦେ ଏହି ଦେହ ମୋହର ସର୍ବଦା ଯୁବା ହୋଇ ଆରୋଗ୍ୟରେ ଥିବ । ସକଳ ଭୋଗ-ମାନ କଲେ ବାଧକ ନୋହିବ । ସହସ୍ର ସ୍ତ୍ରୀ ଭୋଗକଲେ ହେଁ ସହିବ । ସମସ୍ତ ପଦାର୍ଥମାନ ଖାଇଲେ ହେଁ ଦହିବ । ଯହିଁକି ଇଚ୍ଛା ମୋହର ତହିଁକି ଯିବ । ମନ କଳ୍ପିତର ଭୋଗମାନ ପାଇବ । ପ୍ରଳୟ ଅଗ୍ନିରେ ଦଗ୍ଧ ନୋହିବ । ଦିବ୍ୟ ସ୍ତ୍ରୀମାନଙ୍କୁ ମଦନରସେ ଭୋଗ କରିବାକୁ ଚାଇବ । ସୁନ୍ଦର ପଣେ ସମସ୍ତଙ୍କୁ ମୋହିବ । ତୋ ଅନୁଗ୍ରହ ହେଲେ ଭୋ ମାତଃ ! ଏ ବର ପାଇବ । ଏମନ୍ତ ବର ମାଗିଲା ଯହୁଁ । ମହାମାୟା ଠହଠହ ହୋଇ ହସିଲା ତହୁଁ । ବୋଇଲେ ଭୋ ପୁତ୍ର ଅବଦ୍ୟାର ବଳେ କାମ-ବଶକୁଁ ଯାଉଅଛୁ ଯହୁଁ । ଇନ୍ଦ୍ରିୟ ଲାଳସ ବର ମାଗିଲୁ ତହୁଁ । ହାଦେ ଏମନ୍ତ ଯୋଗ ସାଧନରେ ସେ ହୋଇ । ତୁ ଏବେ ଯୋଗ ସାଧନ କର । ଏମନ୍ତ ବୋଲି ମହାମାୟା ଯୋଗୀକି ଯୋଗ ସାଧନା କହୁଅଛି । ପୂର୍ବେ ଶୁଦ୍ଧ ସ୍ଫଟିକ ମଣ୍ଡପେ ବସି । ଈଶ୍ୱର କୋଳେ ପଶି ଶୁଣିଲି ଯାହା । ପ୍ରସନ୍ନ ହୋଇଲି ତୋତେ କହିବି ତାହା । ଏହି ସାଧନ ଆଶ୍ରେକଲେ ତୁ ଯେତେ କହିଲୁ ତହିଁରୁ ବଡ଼ କଥାମାନ ହେବ ଅବହେଳେ । ହାଦେ ପ୍ରଥମେ ମହାବ୍ରାହ୍ମ ମୁହୂର୍ତ୍ତ ଜାଣି ନିଦ୍ରାରୁ ଉଠିବୁ । ଉଠି ଅନ୍ତ ପ୍ରକ୍ଷାଳନ ସାରିବୁ ।

କେବଣ କେବଣ ପଖାଳ । ଚନ୍ଦ୍ର ସୂର୍ଯ୍ୟ ପଖାଳ । ନାଗାର୍ଜ୍ଜୁନ ପଖାଳ । ଜଳପୂରକ ପଖାଳ । ଘଟିକା ଶ୍ରବଣ ପଖାଳ । ବିଗଣ୍ଡି ପଖାଳ । ମଳଖଣ୍ଡ ପଖାଳ । ଏବଂଭୂତ ପ୍ରକାରେ ପଖାଳମାନଙ୍କ ସାରି । ଶୀତ ଭସ୍ମ ଲେପନ ହୋଇ । କଳ୍ପ ଔଷଧ ଖାଇବ୍ରୁ, ସୂର୍ଯ୍ୟଙ୍କୁ ଧ୍ୟାଇ୍ବ, ଦିବ୍ୟ କୋମଳ ଆସନରେ ବସିବୁ ।

ଆସନଯୋଗେ ଚଉଷଠିଖଣ୍ଡ ହୋଇ । କେବଣ କେବଣ ଆସନ । ପ୍ରଥମେ ସିଦ୍ଧାସନ, କୁମ୍ଭାସନ, କମଳାସନ, ବଜ୍ରାସନ । ବୀରାସନ । ସୁଖାସନ । ଚବୁକାସନ । ଚନ୍ଦ୍ରାସନ । ଶୀର୍ଷାସନ । ପର୍ବାସନ । ଧନୁରାସନ । କୁଳାସନ । ଭେକାସନ । କମଠାସନ । ଭଦ୍ରାସନ । ସ୍ୱସ୍ତିକାସନ । ଇତ୍ୟାଦି ଚୌରାଶୀ ଆସନର ମଧ୍ୟେ ଯାହା ଯେଉଁପାରୁ । ଏଥି ଚ୍ଚରି ଆସନ ଶ୍ରେଷ୍ଠ ହୋଇ । ସେ କେବଣ କେବଣ ଆସନ । ପଦ୍ମାସନ । ଭଦ୍ରାସନ । ସ୍ୱସ୍ତିକାସନ । ସିଦ୍ଧାସନ । ଏଥୁ ଯାହା ଯେଉଁପାରି । ଏମନ୍ତ ପ୍ରକାରେ ସିଦ୍ଧାସନେ ବସିବୁ । ଏ ସିଦ୍ଧାସନ କେମନ୍ତ । ବାମପାଦ ଅଗ୍ର ଜାନୁରେ ଦୃଢ଼କରି ନିବେଶିବୁ । ଦକ୍ଷିଣ ପାଦ ବୃଷଣ ଉପରେ ସ୍ଥାପିବୁ । ସ୍ଥାପି ସ୍ଥିର ହୋଇ ରହିବୁ । କଣ୍ଠ ହୃଦୟ ନାଭି ସବୁ ଦଣ୍ଡବତ କରି ଧରିବୁ । ଅତି ଉଚ୍ଚ ଅତି ନୀଚ ନୋହିବୁ । ମୂଳକମଳ ରୁନ୍ଧିବୁ । ବିକମଳ ବାନ୍ଧିବୁ । ଚବୁକ ହୃଦୟରେ ସନ୍ଧିବୁ । ବଙ୍କାନାଳ ଆକୋଞ୍ଚିବୁ । କୁକ୍ଷି ଦୁଇ ଅନ୍ୟୋନ୍ୟ ହସ୍ତରେ ସଙ୍କୋଚିବୁ । ଦୃଷ୍ଟି ନାସାଗ୍ରେ ଦେବୁ । ଅପାନ ପବନ ଘରକୁ ଧ୍ୟାଇବୁ । କାମରି ଅଳରି ମଧ୍ୟନାଦ ଜାତ କରିବୁ । ପ୍ରାଣ ପବନଙ୍କୁ ସ୍ଥିର କରି ହୃଦୟରେ ଧରିବୁ । ଏମନ୍ତ ଭାବକୁ ସାଧନା ଯୋଗ ବୋଲି । ଏଥି ଉତ୍ତାରେ ଅଷ୍ଟାଦଶ ବନ୍ଧ ଅଛି । କେବଣ କେବଣ ବନ୍ଧ । ମତ୍ତମାତଙ୍ଗ କେଶରୀ ବନ୍ଧ । ଓଡ଼ିଆଣି ବନ୍ଧ । ଜାଳନ୍ଧରୀ ବନ୍ଧ । ଖେମ ବନ୍ଧ । ଭୈରବ ବନ୍ଧ । ତ୍ରିକୂଟ ବନ୍ଧ । ବୃଷଭ ବନ୍ଧ । ଖେଚରୀମୁଦ୍ରା ବନ୍ଧ । ବିପରୀତ ବନ୍ଧ ଇତ୍ୟାଦି ଅଷ୍ଟାଦଶ ବନ୍ଧ ମଧ୍ୟରେ ମତ୍ତମାତଙ୍ଗ କେଶରୀ ବନ୍ଧ, ଓଡ଼ିଆଣି ବନ୍ଧ, ଜାଳନ୍ଧରୀ ବନ୍ଧ ଏ ତିନି ବନ୍ଧ ଆଚରିବୁ । ପୁଣି ଚଉଷଷ୍ଠୀ ମୁଦ୍ରା ଅଛି । ସେ ମୁଦ୍ରାମାନେ କେ କେ ଉଦସ୍ଥା ମୁଦ୍ରା । ଉଲ୍ଲାସ ମୁଦ୍ରା । ଖେଚରୀ ମୁଦ୍ରା । ଗଗନ ମୁଦ୍ରା । ପରମ ମୁଦ୍ରା । ଶଙ୍ଖିଣୀ ମୁଦ୍ରା । ସମ୍ଭବ ମୁଦ୍ରା । ଭୈରବୀ ମୁଦ୍ରା । ଅମୃତ ମୁଦ୍ରା । କାପାଳୀ ମୁଦ୍ରା । ମୂଳମୁଖ ମୁଦ୍ରା । ଓଲଟ ମୁଦ୍ରା ବିକଟ ମୁଦ୍ରା । ମହାଦଷ୍ଟା ମୁଦ୍ରା ।

ତନସ୍ଥ ମୁଦ୍ରା । ତଳସ୍ଥ ମୁଦ୍ରା । ଭୂଞ୍ଚ ମୁଦ୍ରା । ଅଧ ମୁଦ୍ରା । ଊର୍ଦ୍ଧ୍ୱ ମୁଦ୍ରା ଇତ୍ୟାଦି କରି ଚତୁଷଷ୍ଠୀ ମୁଦ୍ରାରୁ । ଖେଚରୀ । ସମ୍ଭବୀ । ଅମୃତ । ଭୂଞ୍ଚ । ଏ ଗୁରୁ ମୁଦ୍ରା ଘେନିବୁ । ସେନ ଖେଚରୀ ସ୍ଥାନେ ଜିହ୍ୱା ଷେପିବୁ । ଊର୍ଦ୍ଧ୍ୱ ଧୂମ୍ର ଜ୍ୟୋତି ଜ୍ୱାଳା ନିବାରିବୁ । ଚନ୍ଦ୍ରକଳା ନ ସାରିବୁ । ଅମୃତ ପାନ କରିବୁ । ସାମ୍ଭବ କଳାରେ କରି ଶରୀରଯାକେ ପୂରିବୁ । ଏ ଗୁରୁ ମୁଦ୍ରା ଘେନିବୁ । ଏ ଗୁରୁ ମୁଦ୍ରା କଲ୍ଲ ଉତ୍ତରେ । ଏ ଶରୀର ଯେଉଁଠାରେ ଅଛି ଧ୍ୟାନ୍ତଏ ରୋପଣ କରିବୁ । କେବଣ କେବଣ ପ୍ରକାରେ । ପ୍ରଥମେ ପାଦ ତଳକ ରସାତଳ ବୋଲି । ପାଦର ବୃଢ଼ା ଅଙ୍ଗୁଳିକ ଧୂମ୍ରବର୍ଣ୍ଣ ଆକାଶ ବୋଲି କଳ୍ପିବୁ । ତଦୁପରି ମହାତଳ ବୋଲି । ପାଦ-ତଳକ ନୀଳାକାଶ ବୋଲି କଳ୍ପିବୁ । ନୀଳବର୍ଣ୍ଣ ରୂପେ ଦେବତା ଅଧିଷ୍ଠାନୀ ତଦୁପରି ଅଗ୍ନିଂକ ତଳାତଳ ବୋଲି । ତାହା ପବନ ସ୍ୱରୂପ କରି କଳ୍ପିବୁ ପୀତ ସ୍ୱରୂପ କରି । ତହୁଁ ଗଡ଼ୁଗଣ୍ଠିକ (୧) ସୁତଳ ବୋଲି । ଏହା ଜଳମଧ୍ୟ କରି ଦେଖିବୁ । ଏ ଜଳମଧ୍ୟ ଜଡ଼ ଆବର୍ତ୍ତ ଅଛଇ । ତଦୁପରି ଆଣ୍ଠୁ ଖୋଲକୁ ବିତଳ ବୋଲି । ଏ ବିତଳେ ବିଶ୍ୱନାଥ ଆକାଶେ ବସଇ । ଏ ବିପରୀତ ଲୋକ । ଏ ସମସ୍ତେ ହେଁ ପାଦ ଊର୍ଦ୍ଧ୍ୱ ଶିର ତଳକୁ ଅଛଇ । ତଦୁପରି ଆଣ୍ଠୁକୁ ଅତଳ ବୋଲି । ଏଥେ ଚନ୍ଦପୀଠ ବସଇ । ତଦୁପରି ଜାନୁକୁ ପାତାଳ ବୋଲି । ଏଥେ ନାଗ-ଲୋକ ବସଇ । ତଦୁପରି ପାତାଳଦ୍ୱାର ବସଇ । ତଦୁପରି ମୂଳକମଳ ବସଇ । ମୂଳକମଳ ଉପରେ କନ୍ଦସ୍ଥାନ ବସଇ । କନ୍ଦ ସ୍ଥାନ ଉପରେ ଜ୍ୟୋତି ଚନ୍ଦ୍ର ବସଇ । ଜ୍ୟୋତିଚନ୍ଦ୍ର ଉପରେ ସ୍ୱାଧିଷ୍ଠାନ ବସଇ । ସ୍ୱାଧିଷ୍ଠାନ ଉପରେ ଊର୍ଦ୍ଧ୍ୱ (୨) କାଳଗ୍ରନ୍ଥି ବସଇ । ଊର୍ଦ୍ଧ୍ୱ କାଳ ଗ୍ରନ୍ଥି ଉପରେ ତିନି ତହୁଡ଼ୀ (୩) ବସଇ । ତିନି ତହୁଡ଼ୀ ଉପରେ ବଙ୍କାନାଳ ବସଇ । ବଙ୍କାନାଳ ଉପରେ ମଳଭାଣ୍ଡ ବସଇ । ମଳଭାଣ୍ଡ ଉପରେ ନାଡ଼ୀଚକ୍ର ବସଇ । ନାଡ଼ୀଚକ୍ର ଉପରେ କୁଣ୍ଡଳୀ ବସଇ । କୁଣ୍ଡଳୀ ଉପରେ ତ୍ରିକୂଟ ଯନ୍ତ୍ର ବସଇ । ତ୍ରିକୂଟ ଯନ୍ତ୍ର ଉପରେ ନାଭିକମଳ ବସଇ । ନାଭିକମଳ ଉପରେ ଅଗ୍ନିମଣ୍ଡଳ ବସଇ । ଅଗ୍ନିମଣ୍ଡଳ ଅନ୍ତର୍ଗତେ ବଡ଼ବାଗ୍ନି ବସଇ । ସେ ବଡ଼ବାଗ୍ନିକ ବେଢ଼ି ସାତ ସମୁଦ୍ର ବସଇ ।

---

୧—ଟଉଗ ଗଣ୍ଠିକ 'କ'

୨—ଅର୍ଦ୍ଧ 'ଲ'

୩—'ଖ' ରେ ତିନି ତହୁଡ଼ୀ······ବସଇ ନାହିଁ

ତହିଁ ଉପରେ ଅନ୍ତରୀକ୍ଷ ଲୋକ ବସଇ । ପଶ୍ଚିମ ଭାଗେ ମେରୁ ବସଇ । ସେ ମେରୁର ପାରୁଶରେ ସର୍ଗଲକ୍ଷ ବସଇ । ସର୍ଗଲକ୍ଷ ଉପରେ ବାୟୁ ଲୋକ ବସଇ । ବାୟୁଲୋକ ଉପରେ ଅଷ୍ଟଦଳ ବସଇ । ଅଷ୍ଟଦଳ ଉପରେ ସୋମ ସୂର୍ଯ୍ୟାଗ୍ନି ମଣ୍ଡଳ ବସଇ । ଏଥେ ଆଦିତ୍ୟଲୋକ ବସଇ । ତଦୁପରି ଗନ୍ଧର୍ବ ଲୋକ ବସଇ । ଗନ୍ଧର୍ବ ଲୋକ ଉପରେ ନକ୍ଷତ୍ର ଲୋକ ବସଇ । ନକ୍ଷତ୍ର ଲୋକ ଉପରେ ଚନ୍ଦ୍ରଲୋକ ବସଇ । ଚନ୍ଦ୍ରଲୋକ ଉପରେ ଦେବଲୋକ ବସଇ । ଦ୍ୱାଦଶ ଦଳ ଉପରେ ବିଷ୍ଣୁ ବସଇ । ତଦୁପରି ଜନ-ଲୋକ ବସଇ । ଜନଲୋକ କଣ୍ଠ ଦେଶକୁ ବୋଲି । ଏ ଷୋଡ଼ଶରେ ନାଦ ବ୍ରହ୍ମଣୀ ସରସ୍ୱତୀ ବସଇ । ତଦୁପରି ତଳପାଟି ତପଲୋକ ବସଇ । ତଦୁପରି ଘଣ୍ଟିକା ବସଇ । ଘଣ୍ଟିକା ଉପରେ ଲମ୍ବିକା ବସଇ । ଲମ୍ବିକା ଉପରେ ତାଳୁଚକ୍ର ବସଇ । ତାଳୁଚକ୍ର ଉପରେ ଊର୍ଦ୍ଧ୍ୱକାଳ ଗ୍ରନ୍ଥି ବସଇ । ଊର୍ଦ୍ଧ୍ୱକାଳ ଗ୍ରନ୍ଥି ଉପରେ ତ୍ରିବେଣୀ ସଙ୍ଗମ ବସଇ । ସଙ୍ଗମ ଉପରେ କାଉଁସ୍ତମଣ୍ଡଳ (୧) ବସଇ । କାଉଁସ୍ତ (୨) ମଣ୍ଡଳ ଉପରେ । ଶ୍ରୀହାଟ (୩) ପାଟଣା ବସଇ । ଶ୍ରୀହାଟ (୪) ପାଟଣା ଉପରେ ଭବଦେଶ (୫) ବସଇ । ଭବ ଦେଶ (୬) ଉପରେ ପରମହଂସ ବସଇ । ପରମ ହଂସ ଉପରେ ଶ୍ୱେତ ମଣ୍ଡଳ ବସଇ । ଶ୍ୱେତମଣ୍ଡଳ ଉପରେ ଜ୍ୟୋତିର୍ଲୋକ ବସଇ । ଜ୍ୟୋତିର୍ଲୋକ ଉପରେ ମହଲୋକ ବସଇ । ମହଲୋକ ଉପରେ ଚନ୍ଦ୍ରନାଡ଼ୀ ବସଇ । ତଦୁପରି ଊର୍ଦ୍ଧ୍ୱମୁଖ ସହସ୍ରଦଳ ବସଇ । ତଦୁପରି ଶିବଲୋକ ବସଇ । ତଦୁପରି ବ୍ରହ୍ମଲୋକ ବସଇ । ତଦୁପରି କାଳଲୋକ ବସଇ । ତଦୁପରି ଧ୍ରୁବ-ଲୋକ ବସଇ । ତଦୁପରି ସହସ୍ର ଦଳକମଳ ବସଇ । ତଦୁପରି ପରମେଶ୍ୱର ବସଇ । ଏଠାରୁ ତେଣିକି ଅଜ୍ଞାନ ନିରଞ୍ଜନଭୂମି ମାତ୍ରାମାତ୍ର ସର୍ବତ୍ରପୂର୍ଣ୍ଣ । ନିର-ନ୍ତର ପୂରିଅଛି । ଏଥିର ଯେ ପଶ୍ଚିମ ଭାଗେ ମେରୁ ଦଣ୍ଡ କହିଲି । ସେ ମେରୁ ଷୋଡ଼ଶ ଡମ୍ବରୁ ହୋଇ । ସେ ଡମ୍ବରୁମାନଙ୍କର ନାମ । ବାୟୁଡମ୍ବରୁ ।

---

୧—କାମସ୍ତମଣ୍ଡଳ 'ଝ'
୨—କାମସ୍ତ
୩—ଶ୍ରୀହାଟ 'କ'
୪—ଶ୍ରୀହାଟ 'କ'
୫—ଭୁବନେଶ୍ୱର 'କ'
୬—ଭୁବନେଶ୍ୱର 'କ'

ଅଗ୍ନିଡମ୍ବରୁ । ଚନ୍ଦ୍ରଡମ୍ବରୁ । ସୂର୍ଯ୍ୟଡମ୍ବରୁ । ବ୍ରହ୍ମଡମ୍ବରୁ । ଦେବଡମ୍ବରୁ । ରୁଦ୍ରଡମ୍ବରୁ । ଭୈରବଡମ୍ବରୁ । ଗ୍ରନ୍ଥିଡମ୍ବରୁ । କାଳଡମ୍ବରୁ । କାମଡମ୍ବରୁ । ଭ୍ରମରଗୁହାଡ଼ମ୍ବରୁ । ଊର୍ଦ୍ଧ୍ୱଡମ୍ବରୁ । ମଧ୍ୟଡମ୍ବରୁ । ଅଧରଡମ୍ବରୁ । ଏହାକୁ ଭେଦିଲେ ଜସ ହୋଇ ତାହା ଶୁଣ ।

ହାଦେ ବ୍ରହ୍ମଡମ୍ବରୁ ଭେଦିଲେ ବ୍ରହ୍ମଲୋକ ଯାଇ । ରୁଦ୍ରଡମ୍ବରୁ ଭେଦିଲେ ରୁଦ୍ରଲୋକ ଯାଇ । ଭୈରବଡମ୍ବରୁ ଭେଦିଲେ ତ୍ରିକାଳ ଥାଇ ଅମର ହୋଇ । କାଳଡମ୍ବରୁ ଭେଦିଲେ କାଳକୁ ଜିଣଇ । କାମଡମ୍ବରୁ ଭେଦିଲେ କାମ ସିଦ୍ଧି ହୋଇ । ଊର୍ଦ୍ଧ୍ୱଡମ୍ବରୁ ଭେଦିଲେ ଆକାଶଗାମୀ ହୋଇ । ଏ ଡମ୍ବରୁମାନଙ୍କ ଅଧିଷ୍ଠାତ୍ରୀ ଦେବତାମାନଙ୍କୁ ମନେ ମନେ ପୂଜିବୁ । ବ୍ରହ୍ମଡମ୍ବରୁରେ ବ୍ରହ୍ମା, ରୁଦ୍ର ଡମ୍ବରୁରେ ରୁଦ୍ର । ଭୈରବକାଳ ଅଧିଷ୍ଠାତ୍ରୀ ହୁଅନ୍ତି । ଏ ଷୋଡ଼ଶ ଡମ୍ବରୁକୁ ଆଶ୍ରେ କରି ଏ ଶରୀର ଧାରଣା ଅଛି । ଏ ଷୋଡ଼ଶ ଡମ୍ବରୁରେ ଚନ୍ଦ୍ର ଷୋଡ଼ଶ କଳା ବସନ୍ତି । ଷୋଡ଼ଶ କଳା କେ କେ । ଆଲୋଳା । କଲ୍ଲୋଳନୀ । ଉଚ୍ଛ୍ୱଳନ୍ତୀ । ଉନ୍ମାଦନୀ । ତରଙ୍ଗିଣୀ । ସୋମପ୍ଲୁନ୍ତୀ । ଲମ୍ବଟା । ଲହରୀ । ଲୋଳା । ଲଳନ୍ତ । ପ୍ରକୃତ । ଶ୍ରବନ୍ତୀ । ପ୍ରବାହା । ସନ୍ଧ୍ୟା । ପ୍ରସନ୍ନୀ । ପ୍ରସାଦୁଶୀଳା । ଏବଂଭୂତ ପ୍ରକାରେ ଚନ୍ଦ୍ରର ଷୋଡ଼ଶ କଳା । ଏ ଡମ୍ବରୁମାନଙ୍କୁ ମେରୁ ବୋଲି । ଏ ମେରୁ ଦ୍ୱାଦଶ ଶୃଙ୍ଗ (୧) ହୋଇ । ସେ ଶୃଙ୍ଗମାନେ ଦ୍ୱାଦଶନାଡ଼ୀ ହୋନ୍ତି । ଏ ଦ୍ୱାଦଶ ନାଡ଼ିରେ ଦ୍ୱାଦଶ ଆଦିତ୍ୟ ବସନ୍ତି ।

ଦ୍ୱାଦଶ ଆଦିତ୍ୟର ଦ୍ୱାଦଶ କଳା । କେ କେ ସେ । ତପନୀକଳା ଖରଏ ଖରଏ ତାପ କରଇ । ଗ୍ରାସନୀକଳା ଜଗତ ଶରୀରକୁ ଗ୍ରାସଇ । ଉଷ୍ମନୀକଳା ଉଷ୍ମ କରଇ । ଆକୋଚନୀକଳା ଆକୋଚନ କରଇ । ଶୋଷନୀକଳା ସମସ୍ତ ଶୋଷଇ । ପ୍ରବୋଧନୀକଳା ସମସ୍ତ ପ୍ରବୋଧ କରାଇ । ଅକ୍ଷିଣୀକଳା ଚକ୍ଷୁ ପ୍ରକାଶଇ । ତୁଷ୍ଟିକଳା ସନ୍ତୋଷ କରଇ । ଊର୍ଦ୍ଧ୍ୱମୀ-କଳା ଊର୍ଦ୍ଧ୍ୱରେତା କରାଇ । କୃଷ୍ଣରେଖାକଳା ମୁଖ କୃଷ୍ଣ କରାଇ । କରଣାବର୍ତ୍ତକଳା କରଣମାନ ଜାତ କରାଇ । ପ୍ରଭା ନାମ କଳା ଜ୍ୟୋତିର୍ମୟୀ

---

୧ — ଶଙ୍ଖ 'ଙ୍ଗ'

କରାଇ । ଏମନ୍ତେ ତାପିନୀ, ଗ୍ରାସିନୀ, ଉଗ୍ରିମା, ଆକୋଚନୀ, ଶୋଷଣୀ, ପ୍ରବୋଧିନୀ, ଅକ୍ଷିଣୀ, ତୃଷ୍ଣନୀ, ଊର୍ଦ୍ଧ୍ୱନୀ, କୃଷ୍ଣରେଖା, କରଣାବନ୍ଧୀ, ପ୍ରଭ୍ରବା । ଏ ସୂର୍ଯ୍ୟଙ୍କର ଦ୍ୱାଦଶ କଳା । ଏମନ୍ତେ ଏ ଦ୍ୱାଦଶ କଳାକୁ ଦ୍ୱାଦଶ ଆଦିତ୍ୟ ବୋଲି । ଏ ଦ୍ୱାଦଶ ନାଡ଼ୀରେ ବସନ୍ତି । ଦଶ ପବନେ ଅଗ୍ନିର ଦଶକଳା ବସନ୍ତି । ସେ ଦଶ ପବନେ କେ କେ । ପ୍ରାଣପବନ । ସମାନ । ବ୍ୟାନ । ଉଦାନ । ଅପାନ । ନାଗ । କୂର୍ମ । କଞ୍ଜଳ୍କ । ଦେବଦତ୍ତ । ଧନଞ୍ଜୟ । ଇତି ଦଶପବନ ' ପ୍ରାଣାଦି ବ୍ୟକ୍ତ ପଞ୍ଚପବନ । ନାଗାଦି ଅବ୍ୟକ୍ତ ପଞ୍ଚପବନ । ହୃଦୟ, ଗୁଦ, ନାଭି, କଣ୍ଠ, ସର୍ବ ଦେହାଦିରେ ପ୍ରାଣାଦି ପଞ୍ଚପବନମାନେ ବସନ୍ତି । ବାକ୍‌ପାଦ, ପାଣି ଗୁଦ, ଉପସ୍ଥରେ ନାଗାଦି କରି ସେ ପଞ୍ଚପବନେ ବସନ୍ତି । ଏମନ୍ତେ ଏ ଦଶ ପବନଙ୍କରେ (୧) ଅଗ୍ନିରୁ ଦଶକଳା ବସଇ । କଳାମାନ କେ କେ ଦାକ୍ଷିଣିକା । ନାଗଢୋ । ଜ୍ୱାଳା । ସ୍ଫୁଲିଙ୍ଗା । ପ୍ରଚଣ୍ଡା । ପାବକା । ରୌଦ୍ରୀ । ଦାହା । ପ୍ରାଣା । ସଞ୍ଚାବଳୀ । ଇତି ଅଗ୍ନି ଦଶ କଳା । ଏକାଦଶୀ ନିଜ କଳା ସେ ଜ୍ୟୋତି ବ୍ରହ୍ମଦ୍ୱାରେ ବସଇ । ଏ ଦଶ ପବନେ ଦଶ ନାଡ଼ୀରେ ବସନ୍ତି । ଏ ଦଶ ନାଡ଼ୀ କେ କେ । ଇଡ଼ା । ପିଙ୍ଗଳା । ଶୁଷୁମ୍ନା । ଗାନ୍ଧାରୀ । ହସ୍ତୀଜିହ୍ୱା । ପୂଷା । ଅଳମ୍ବୁଷା । କୌଷୀ (୨) । ଶଙ୍ଖିନୀ । ସ୍ୱସ୍ତିତା । ଇଡ଼ା ପିଙ୍ଗଳା ନାସାଦ୍ୱାରେ ବହଇ । ଶୁଷୁମ୍ନା ତାଳୁ ସମ ବ୍ରହ୍ମରନ୍ଧ୍ର ପର୍ଯ୍ୟନ୍ତ ବହଇ । ଅଧରୁ ହସ୍ତୀଜିହ୍ୱା ବହଇ । କର୍ଣ୍ଣଦ୍ୱାରେ ଗାନ୍ଧାରୀ ବହଇ ପୁଷା ଅଳମ୍ବୁଷା ଚକ୍ଷୁଦ୍ୱାରେ ବହଇ । କୌଷୀ ଚ୍ଛେଦ୍ୟ ଦ୍ୱାରେ ବହଇ । ଶଙ୍ଖିନୀ ଲିଙ୍ଗଦ୍ୱାରେ ବହଇ । ସ୍ୱସ୍ତିତା ବ୍ରହ୍ମରନ୍ଧ୍ର ପର୍ଯ୍ୟନ୍ତ ବହଇ । ଏମନ୍ତେ ଇଡ଼ା ନାଡ଼ୀ ଶ୍ୱେତବର୍ଣ୍ଣ । ପିଙ୍ଗଳା । ପୀତବର୍ଣ୍ଣ । ଶିଷୁମ୍ନା ଜ୍ୟୋତିର୍ମୟ ହୋଇ । ଗାନ୍ଧାରୀ ନୀଳବର୍ଣ୍ଣ । ପୂଷା ଲୋହିତ ବର୍ଣ୍ଣ । ଅଳମ୍ବୁଷା ଧୂମ୍ରବର୍ଣ୍ଣ । କୌଷୀ ପାଣ୍ଡୁର ବର୍ଣ୍ଣ ହୋଇ । ହସ୍ତିଜିହ୍ୱା ହରିତ ବର୍ଣ୍ଣ ହୋଇ । ଶଙ୍ଖିନୀ ଶ୍ୱେତବର୍ଣ୍ଣ ହୋଇ । ଏ ନାଡ଼ୀମାନଙ୍କୁ ଆଶ୍ରେକରି ଅନେକ ନାଡ଼ୀମାନେ ଅଛନ୍ତି । କେ ଅତ୍ୟନ୍ତ ସୂକ୍ଷ୍ମ । କେ ଅତ୍ୟନ୍ତ ବନ୍ଧ । କେ କୁଣ୍ଡଳ ଭାବ । କେ ଯନ୍ତ୍ରଗୁରା ପ୍ରାୟେକ । କେ ମୃଣାଳ ତନ୍ତୁଭାବ କେ କୁରୁବଲ୍ଲୀ କୁଷ୍ମଭାବ । କେ କୁରୂପ ଭାବ । କେ ଚ୍ଛିଦ୍ରମୟ । କେ ପଂକ୍ତିମୟ । କେ ସୌଖ୍ୟ ଭବ । କେ ଶ୍ୱାସଭାବ ।

---

୧ ଦଶ କଳାରେ 'ଖ'
୨—କହଷୀ

ଏମନ୍ତେ ବାସ୍ତୋର ସହସ୍ର ନାଡ଼ୀମାନ କର୍ମଧର୍ମ କରି ଅଧ ଉର୍ଦ୍ଧ୍ୱ ହୋଇ ଅଛନ୍ତି । ଏ ଅଦୃଶ୍ୟ ଏହା ଜାଣି ନୁହଇ । ଅନେକ ଅଭ୍ୟାସେ ସେ ଦୃଶ୍ୟ ହୁଅଇ । ଏମନ୍ତେ ସେ ନାଡ଼ୀମାନଙ୍କରୁ ଦନକୁ ଦୁଇନାଡ଼ୀ ଲେଖାଏ ପବନ ଛୁଡ଼ାଉଥାଇ । ଏମନ୍ତେ ଶଏ ବର୍ଷେ ପ୍ରାଣିକ ମଲ୍ଲ ବୋଲି ବୋଲନ୍ତି । ହାଦେ ପବନ ଯାହାଁ ନାଡ଼ୀରୁ ନଚ୍ଛୁଡ଼ କୁମ୍ଭକ ପ୍ରକାରେ ପୂରକ ହୋଇ ପୂର୍ଣ୍ଣ ହୋଇ । ସ୍ଥିରହୋଇ ପ୍ରାଣ ପବନ ଏକ ଦ୍ୱାରେ ଏକା ଗ୍ରାସିଲେ ଦେହନ୍ତୁ ଜୀବନ ନ ଯାଇ ସର୍ବଦା । ଏମନ୍ତେ ସେ ଉମ୍ବରୁମାନଙ୍କ ·ମଧ୍ୟରେ ଘୃତ ବୋଲି ନାଡ଼ୀ ଏକ ହୋଇ । ସେ ଘୃତ ନାଡ଼ୀ ଅନ୍ତର୍ଗତେ ଶୁଙ୍କ ବୋଲି ନାଡ଼ୀ ଏକ (୧) ହୋଇ । ସେ ଶୁଙ୍କ ନାଡ଼ୀ ଅନ୍ତର୍ଗତେ ସୂକ୍ଷ୍ମ ବାଳ ବୋଲି ଖଣ୍ଡି ଏକ ହୋଇ । ·ସୂକ୍ଷ୍ମବାଳ ଅନ୍ତର୍ଗତ ଜ୍ୟୋତି ବୋଲି ନାଡ଼ୀ ଏକ ହୋଇ । ସେ ଜ୍ୟୋତି ନାଡ଼ୀ ଅନ୍ତର୍ଗତେ ବ୍ରହ୍ମ ବୋଲି ନାଡ଼ୀ ଏକ ହୋଇ । ସେ ବ୍ରହ୍ମ ନାଡ଼ୀରେ ଚନ୍ଦ୍ର ସୂର୍ଯ୍ୟଙ୍କୁ ସମକରି ଭଣ୍ଟଲେ ସମସ୍ତ ନାଡ଼ୀମାନଙ୍କରୁ ପବନ ଛୁଡ଼ଇ । ସେ ନାଡ଼ୀ ମୃଣାଳ ସୂକ୍ଷ୍ମ ସହସ୍ରେ ଭାଗକଲେ ଯେମନ୍ତ ସୂକ୍ଷ୍ମ ତହୁଁ ଅତିଅନ୍ତ ସୂକ୍ଷ୍ମ ଅଟଇ । ଏମନ୍ତେ ଉପର ଦନ୍ତପାଟି ଠାରୁ ଚେଣିକ ଦ୍ୱାଦଶ (୨) ଆଙ୍ଗୁଳ ଉତ୍ସର୍ଗ ଅଟଇ । ତାହାକୁ ଅଚଳ ବ୍ରହ୍ମାଣ୍ଡ ବୋଲି ସେ ନ ଚଳଇ । ତାହା ଶୂନ୍ୟ ନୋହଇ । ତହୁ ଆଙ୍ଗୁଳକେ ବ୍ରହ୍ମାଣ୍ଡ ଲେଖାଏଁ ଦ୍ୱାଦଶ ବ୍ରହ୍ମାଣ୍ଡ ବସଇ । ଏକବିଂଶତି ବ୍ରହ୍ମାଣ୍ଡ ନାଏ (୩) । ତହିଁ ଉର୍ଦ୍ଧ୍ୱ ଶଙ୍ଖିନୀ (୪) ବୋଲି ବଡ଼ ଗୁପ୍ତ ହୋଇ ନାଳେକ ବସଇ । ସେ ନାଳ କର୍ମ ଯୋଗକୁ ଗୁରୁବଚନ ଅଟଇ । ଚନ୍ଦ୍ର ସୂକ୍ଷ୍ମକଳା (୫) ବୋଲି ତାକୁ । ସେ ବାଟେ ଚନ୍ଦ୍ର ସୂକ୍ଷ୍ମକଳା ଅମୃତ ସ୍ୱରୂପେ ସ୍ରବୁଁ ଅଛି । ସେ ବାଟକୁ ପବନ ଉର୍ଦ୍ଧ୍ୱ କରି ସୁରୁଳ (୬) ପ୍ରାପ୍ତେକ କରି ସୁଭୁଳ

---

୧—ବ୍ରହ୍ମନାଡ଼ୀ ଏକ ହୋଇ 'କ'
୨—ଦଶ 'କ'
୩—ନାସ୍ତିରେ 'କ'
୪—ସଙ୍ଗିନୀ 'କ'
୫—ଚନ୍ଦ୍ର ସୂକ୍ଷଣା 'ଖ'
୬—ମୁରଳୀ 'କ'

ନମେ ଛନ୍ଦେ (୧) କଇଁ ନାଡ଼ରେ ପାଣି ତୋଳିଲା ପ୍ରାଏ କରି ତୋଳୁଥିଲେ । ଆକାଶ ସୂକ୍ଷଣା (୨) ଭେଦଇ । ତହିଁ ଉପରେ ଶୋଭା ଦ୍ୱାଦଶ ମଣ୍ଡଳ ବୋଲି ଏକ ମଣ୍ଡଳ ବସଇ । ସେ ମଣ୍ଡଳ ବାମାବର୍ତ୍ତି ହୋଇ ସେଠାରେ ପ୍ରାଣରନ୍ଧ୍ର ସମ୍ବନ୍ଧ ଅମୃତ କୁଣ୍ଡ ହେଉଅଛଇ । ଗମ୍ଭୀର ବର୍ତ୍ତିଠାରେ ଯେମନ୍ତ ପାଣି ରହଇ ତେମନ୍ତ ପ୍ରାଯୁକ୍ତ ହୋଇ । ତହିଁ ଅମୃତ ଥାଇ । ତାହାକୁ ମହାରସ କୂପ ବୋଲି । ସେ ରସ କୂପ ଅତିଅନ୍ତ ଅମୂଲ୍ୟ । ଏକ କଣିକାକୁ ଗୋଟିଏ ମାଣିକ୍ୟ ନୁହଇ ତୁଲ୍ୟ । ସେ କୂପ ଆବୋରି କାଳ କାଞ୍ଚ ଥାଇ (୩) । ସେ କାଳ କାଞ୍ଚ କେମନ୍ତ (୪) । ଜନ୍ମ ହୋଇଲା ବେଳହୁଁ ଯେ ପୂର୍ବର ପବନ ମାର୍ଗ ଗୁଡ଼ି ବାହାରକୁ ବହଇ । ଇଅଁଳା ପିଅଁଳା (୫) ମାର୍ଗ ଦ୍ୱାରରୁ ସେ ସୂକ୍ଷ୍ମ ମାର୍ଗ ଗୁଡ଼ଇ । ଗୁଡ଼ନ୍ତେ ତହିଁ ଖଣ୍ଡିଏ ମାଂସ ବଢ଼ଇ । ବଢ଼ି ସେ ଦ୍ୱାର ଗୋଟି ଆବୋରି ଥାଇ । ଉର୍ଦ୍ଧ୍ୱ ଶୀତଳ (୬) କର୍ମ କରନ୍ତେ ହେଁ ସେ ମାର୍ଗକୁ ପବନ ଯାଇ । ପବନ ଗଲେ ବା ସେ ମାଂସ ବିଭେଦ ହୋଇବ । ଅବା ବିଭେଦ ନୋହିଲେ ମୁଣ୍ଡରେ ଯେ ଧାତୁମାନେ ମଧ୍ୟ ତରଳ ହୋଇଅଛନ୍ତି । ଏ ଜନ୍ମ ମରଣ ଦିଅନ୍ତି । ଦେହକୁ ଜରାବସ୍ଥା କରନ୍ତି । ସେ ଧାତୁମାନେ ନ ଶୁଖନ୍ତି । ପବନ ଲାଗିଲେ ଶୁଖିସିନା । ଏମନ୍ତେ ସେ ମାର୍ଗକୁ ପବନ ନ ଯାଇ । ଯେ ପବନ ମାର୍ଗ ରୁନ୍ଧିମାକେ କାଳ କାଞ୍ଚ ବୋଲି, କାଳ ଶଙ୍ଖ ହେଲା କମ୍ପା (୭) । ଯହୁଁ ସେ ସକାଶୁ ପ୍ରାଣିଙ୍କ ମୃତ୍ୟୁ ହୁଅଇ । ତହିଁକି କପାଳ ହସ୍ତ କର୍ମ ଯୋଗ ଏ ଗୁରୁ କର୍ମ ଜାଣିଲେ ସେ ଦାନକୁ ଦାନ ପୀଡ଼ଇ । ପୀଡ଼ି ସେ ରସକୂପ ଉଚ୍ଛୁଳି ପବନ ସଙ୍ଗେ ଧାଇଁ । ପବନ ମାର୍ଗ ପାଇଲେ ବାହାର ନୁହଇ । ସେ ସହସ୍ର ଦଳ କୋଷକୁ ଧାଏଁ ଧାଇଲେ ରୋଗ ଶୋକ ଜରା ଜଡ଼ ତୁଟଇ । ଏହା ଚତୁ-

---

୧—ସିଦ୍ଧ କର୍ମ ଛନ୍ଦେ 'କ'
୨—ଆକାଶ ସୂକ୍ଷ୍ମ ଗଙ୍ଗା 'କ'
୩—ଟାକଥାଇ 'କ'
୪—ସେ କେମନ୍ତ 'କ'
୫—ଇଡ଼ା, ପିଙ୍ଗଳା 'ଖ'
୬—ସିଦ୍ଧ 'ଖ'
୭—କାଳଭବ ବନ୍ଧୁଳ କମ୍ପା 'କ'

ଷଷ୍ଠୀ ଯୋଗ ମଧ୍ୟେ ଏହାକୁ ନିରୂପ ଯୋଗ ବୋଲି । ତଦନନ୍ତରେ ମୂଳ କମଳ ଚତୁର୍ଦିଗ ଷଡ଼ଗ୍ରନ୍ଥି ତହିଁ ଥାଆନ୍ତି । ଅଧୋଗତ ଅପାନ ପବନକୁ ଊର୍ଦ୍ଧ୍ୱଗତ କରି ଗୃପି କରି ହୁଁକାର ନାଦ ଆଚରିବ । ସାକ-ମୁଦ୍ରା କରି ଅଗ୍ନି ପବନ ସଙ୍ଗେ ଉଠି ମଳ ଭାଣ୍ଡ ପୋଡ଼ି ଅମୃତ କଳା-ମାନନ୍ତ ଊର୍ଦ୍ଧ୍ୱଗତ କରାଇ ଶରୀର ଆଗ ଗଳକମଳ ଯନ୍ତ୍ରଭୋଗ (୧) ଏମାନଙ୍କୁ ପୋଡ଼ଇ । ଏମନ୍ତ ପ୍ରକାରେ କରି ପ୍ରାଣାୟାମ କରିବୁ । ସେ ପ୍ରାଣାୟାମ କେମନ୍ତ । ଏକ ପ୍ରଣବ ଯୋଗ ଶବ୍ଦରେ । ପ୍ରଣବ ଲକ୍ଷଣ ହାଦେ ଶୁଣୁ । ଏକା ହୋଇ ପ୍ରାଣ ପବନ ସେ ଅଛୁ । ହୃଦୟ ଗୁହାରେ । ସେ ନାରାୟଣ ସ୍ୱରୂପ ଅଟଇ । ସେ ପ୍ରାଣ ପବନ ଚଳନ୍ତି ଯହିଁ । ତାହାର ଗତ ଅତ୍ୟନ୍ତ ଭବ-ଜ୍ଞାନ ବୋଲି ଭାଟିବକ ଜାତ ହେଲି ତହୁଁ । ସେ ପ୍ରାଣ ପବନକୁ ଅଜ୍ଞାନ ଶକ୍ତି ହୋଇଲି ଶିବ ଶକ୍ତି ସଂଯୋଗ । ପ୍ରାଣ ପବନ ଦଶଧା ହୋଇଲି । ଏହାକୁ ପ୍ରାଣ ପବନ ବୋଲି । ଏ ଦଶ ପବନ ଅଣଚାଷ କଳା ହୋଇ । ଏ ପବନ ମନ ଆଯୂତ ମନକୁ ନିର୍ମଳ କରି । ନିର୍ମୋହିମା, ଶଙ୍ଖିମା, ସଞ୍ଚଳା, ଲୀଳା, ଲମ୍ଭିମା ଏ ପାଞ୍ଚ ଶକ୍ତି ବମ୍ବର ମୁହଁରୁ ଛୁଡ଼ାଇବ ଯାବତ । ଚକ୍ର ଦକ୍ଷିଣାବର୍ତ୍ତ କରି ବଡ଼ବାନଳ ଧାରଣା ଆଚରି କୁମ୍ଭାର (୨) ଯନ୍ତ୍ର ପ୍ରାୟେକ କରି ଅଗ୍ନି ଜାଳିବାକୁ ହୁଂକାର ଫାର୍ତ୍ତି (୩) ଜାଳି ପ୍ରଜ୍ୱାଳ କରିବ । ସେ ଅଗ୍ନିଶିଖା କୁଣ୍ଡଳୀମାକୁ ଲାଗିବ । ସର୍ପଦଣ୍ଡ ବାଜିଲେ ଯେମନ୍ତ ଫେର (୪) ଧରି ରହଇ (୫) ସେହି ମତ ହୋଇ ସେ ନାଭି ସଳଖ ହୋଇ ଉଭା ହୁଅନ୍ତେ । ଶଙ୍ଖିମା ବମ୍ବରକୁ ମନ ପବନ ବଳାଇବ ବିଯୋଗିମା (୬) କର୍ମରେ କରି । ସେହିମତ ସେ ମନ ପବନରେ ଆଧାରେ ଯୋନିରେ ନାଭିରେ, ହୃଦୟରେ, କଣ୍ଠରେ, କପାଳରେ, ଭ୍ରମର କୁହରରେ, ଭୃଙ୍ଗରେ, ଶ୍ରୀହାଟରେ ଗମଇ । ତ୍ରିବେଣୀରେ ଶଙ୍ଖିନୀରେ ପାଣି ଏମାନନ୍ତ ଭେଦ ସହସ୍ରଦଳ ଶେଖରକୁ

---

୧—ଆଗମନ ଜଡ଼ 'ଙ'
୨—କମାର 'ଙ'
୩—ଫାପ 'ଙ'
୪—ଫେରୁ 'ଙ'
୫—ଛଠଇ 'ଙ'
୬—ବଳ ଅଲି 'ଙ'

ବୋଲି ଗଲେ ଚନ୍ଦ୍ର ସୂର୍ଯ୍ୟ ସମ ବୋଲି । ଏ ଯୋଗକୁ ଉଜାଣି ବୋଲି । ଏ ଯୋଗରେ ବୃଦ୍ଧମାନେ କାମଦେବର ଉପାସ୍ୟେକ ହୁଅନ୍ତି । ତଦନନ୍ତରେ ମୂଳକମଳ ଚତୁର୍ଦଳ ନିରୋଧ ତହିଁ ଥାଇ ଅପାନ ପବନକୁ ଊର୍ଦ୍ଧ୍ୱଗତି କରି ଗୃପି, ଘର୍ଷକରି ହୁଙ୍କାର ନାଦ କରି ଉଗୃରିବ । ଲୋକ ମୁଦ୍ରାକରି ତହୁଁ ଅଗ୍ନି ପବନ ସଙ୍ଗେ ଉଠି ମଳଭାଣ୍ଡ ପୋଡ଼ି ଅମୃତ କଳାମାନ ଊର୍ଦ୍ଧ୍ୱଗତି କରି । ଶରୀରେ ମଳ ଯେଉଁ ରେଖା ଏମାନଙ୍କୁ ପୋଡ଼ଇ ନାଡ଼ୀମାନଙ୍କର ସନ୍ଧିରେ । ଲାଳାମାନେ ଗୃରି ପବନ ସଞ୍ଚାରଇ ନ ଦେଉଥାନ୍ତି । ସେ ଲାଳାମାନଙ୍କୁ ପୋଡ଼ଇ । ଏମନ୍ତ ଅଚଳ ବ୍ରହ୍ମାଣ୍ଡ ଉପରେ ଯେଉଁ ଊର୍ଦ୍ଧ୍ୱ ଶଙ୍ଖିନୀ ବୋଲି ସେ ବାଟେ ବଙ୍କା ନାଳ ଭେଦି ତହୁଁ ମଧ୍ୟ ବାଟେ ନାଡ଼ୀ ଚକ୍ର ଦେଇ ହୃଦୟ ଆକାଶ ବାଟେ ଧ୍ୟାନ ଯୋଗ ବାଟେ କରି ସୂକ୍ଷ୍ମ ଯୋଗ ବାଟେ ଏ ଗୃରି ବାଟେ ପବନ ଊର୍ଦ୍ଧ୍ୱକୁ ଉଠଇ, ସମସ୍ତ ଦଳ ଭେଦି ସହସ୍ର ଦଳକୁ ଗମନ୍ତି । ସେ ଚନ୍ଦ୍ରକୂଟ ପଦ୍ମରେ ଗୃରି ପବନେ ରୁଣ୍ଡିଭୂତ ହୁଅନ୍ତି । ହୋଇ ଲୟ ହୁଅନ୍ତି । ଏ ଯୋଗସିଦ୍ଧି ହୋଇଲେ ଏ ଦେହ ଆକାଶରେ ଯାଇ ।

ଏଥିଉତ୍ତାରେ ପ୍ରଣବ କରିବୁ । ସେ ପ୍ରଣବ କେମନ୍ତ । ଦ୍ୱାଦଶ ମାତ୍ରା ହୋଇ ଉତ୍ତମ, ମଧ୍ୟମ, କନିଷ୍ଠ ହୋଇ । ବାମ ନାଶାରେ ଚନ୍ଦ୍ରମଣ୍ଡଳ ଧାରଣାରେ କରି ପବନକୁ ସେ ଷୋଳ ଅଂଶେ ପୂରିବ । ନାଭି ପଦ୍ମେ କ୍ରମେ କ୍ରମେ କରି ଷୋଡ଼ଶ ଅଂଶେ ରୁହାଇବ ।' ସେ ଷୋଡ଼ଶ ଅଂଶକୁ କୁମ୍ଭକ କରିବ । ହୃଦୟରେ ନାରାୟଣଙ୍କୁ ଧ୍ୟାନ ସଙ୍ଗତେ । ଦକ୍ଷିଣ ନାଶାରେ ତହୁଁ ଷୋଡ଼ଶ ଅଂଶକୁ ରେଚକ କରିବ । ଶଙ୍ଖିନୀ ନାଳବାଟେ ଊର୍ଦ୍ଧ୍ୱଗତି ସହସ୍ରଦଳ ବାଟକୁ ଯିବ । ସମସ୍ତ ପବନ ସହସ୍ର-ଦଳରେ ରୁଣ୍ଡୀଭୂତ ହୋଇଲେ ଜରା, ଜଡ଼, ରୋଗ, ନିଦ୍ରା, ଘୋର କାଳରାତ୍ରି ଏହାକୁ ଗ୍ରାସି ଚନ୍ଦ୍ରରେ ମିଶିଲେ । ଚତୁଃଷଷ୍ଠୀ କଳା ଚନ୍ଦ୍ର ହୋଇ ବୋଲି ଜାଣି । ଗୃରି ଷୋଳ ଅଂଶେ ଚତୁଃଷଷ୍ଠୀ ହୋଇଲେ । ଅନ୍ତ୍ର ସଂଖ୍ୟା ମାତ୍ରକେ ପ୍ରଣବ ଶୁଣୁ । ଇଡ଼ାଦ୍ୱାରେ ପୂରୋଇ ପିଙ୍ଗଳା ଦ୍ୱାରେ ରେଚିବୁ । ପିଙ୍ଗଳା ଦ୍ୱାରେ ପୂରୋଇ ଇଡ଼ାଦ୍ୱାରେ ରେଚିବୁ । ମଧ୍ୟ ଶୁଷୁମ୍ନାରେ କୁମ୍ଭକ କରୁଥିବୁ । ସୋମ ସୂର୍ଯ୍ୟ ଧାରଣାରେ କରି । ଏହାକୁ ଲଘୁ ପ୍ରାଣାୟାମ କହନ୍ତି । ଏ ଉକ୍ତ ରସ କର୍ମ ଅଟଇ । ଅରୁନ୍ଧତୀ ମାର୍ଗ କପାଟ ଫେଡ଼ିବାକୁ କୁଞ୍ଚିଏ କ୍ରମ । ତଦନନ୍ତରେ ପ୍ରତ୍ୟାହାର କରିବ । ପବନକୁ ଚନ୍ଦ୍ର କଳା ସହିତ

କରି ଅଙ୍ଗନକୁ ଗ୍ରାସୁଥିବ । ଗ୍ରାସ କ୍ଷମ କରି ଆକାଶକୁ ଗ୍ରାସୁଥିବ । ପ୍ରତ୍ୟାହାର ଅନ୍ତେ ପ୍ରତ୍ୟାହାର । ଆହାର ହିଁ ସଂଯମ କରିବ । ଅଗ୍ନି, ମାହେନ୍ଦ୍ର, ବାରୁଣୀ, ବାୟୁ ଏ ଚ୍ଛରି ବେଳରୁ । ଅଗ୍ନି ବେଳ ଯେଉଁ ପିଙ୍ଗଳା ସେ ସୂର୍ଯ୍ୟ ନାଡ଼ୀ ତହିଁ ପବନ ଥିବ । ସ୍ଥିର ହୃଦୟ ଶାନ୍ତ ହୋଇବ । କଟୁ, ଲବଣ, ତିକ୍ତ, ଅମ୍ଳ, କଷା, ମଧୁର, ବିବର୍ଜିତ, ଏଥି ରାଜସ ତାମସ ବିବର୍ଜିତ । ରସ ସ୍ନିଗ୍ଧ ଉଷ୍ଣ ସ୍ୱାଦୁ ଅଲ୍ପକରି ଯୁକ୍ତ ଆହାର କରିବ । ଦୁଇ ଭାଗ ଅନ୍ନ ପୁରେଇବ । ଭାଗେ ଜଳ ପୁରେଇବ । ଭାଗକ ପବନକୁ ଥିବ । ଏମନ୍ତ ଆହାର କରିବ । ତିକ୍ତର ମଧ୍ୟେ ନିମ୍ବ । କଷାର ମଧ୍ୟେ ହରିଡ଼ା । ଆମ୍ବିଳର ମଧ୍ୟେ ଅଁଳା । ମଧୁରର ମଧ୍ୟେ ମଧୁ । କଟୁର ମଧ୍ୟେ ଅଦା । ଲବଣର ମଧ୍ୟେ ସୈନ୍ଧବ । ରସର ମଧ୍ୟେ ଇକ୍ଷୁ । କ୍ଷୀରର ମଧ୍ୟେ ଗବ୍ୟ । ଧାନର ମଧ୍ୟେ ଯବ । ଅନ୍ନର ମଧ୍ୟେ ଶାଳିଅନ୍ନ । ଗୁଡ଼ର ମଧ୍ୟେ ସାକର । ବୀଜର ମଧ୍ୟେ ମରିଚ । ଲତାର ମଧ୍ୟେ ପଟୋଳ । ବୃକ୍ଷର ଫଳ ମଧ୍ୟେ ଶ୍ରୀଫଳ । ଲେପର ମଧ୍ୟେ କୃଷ୍ଣ ତୈଳ । ଇତ୍ୟାଦି ଶୁଭ ପଦାର୍ଥମାନ ଯଥୋଚିତ ସମୟରେ ଭୋଗ କରିବ । ବାତ ଶୂଳ ଶାନ୍ତ । ପୂର୍ଣ୍ଣାପୂର୍ଣ୍ଣ ସଦା ଆବର୍ତ୍ତିକ ଆସ୍ୱାଦନାର୍ଥ ବାଧ ଏହାକୁ ପ୍ରତ୍ୟାହାର ବୋଲି ।

ତଦନନ୍ତରେ ଧ୍ୟାନ କରିବ । ସେ ଧ୍ୟାନ କେମନ୍ତ । ଶୂନ୍ୟ ଚୂଳି (୧) ଧ୍ୟାନ । ପାତାଳାକାଶ ଧ୍ୟାନ । ଅଧଊର୍ଦ୍ଧ୍ୱ ମଧ୍ୟାନ୍ୟ ନାଡ଼ୀଚକ୍ର ଧ୍ୟାନ । ପ୍ରାଣ ପବନ ଧ୍ୟାନ । ଜ୍ୟୋତିଃ ପ୍ରକାଶ ଧ୍ୟାନ । ଗଗନ ଶତଦଳ ଧ୍ୟାନ । କୁଣ୍ଡଳିନୀ ଧ୍ୟାନ । ପ୍ରତିଭା ଧ୍ୟାନ । ନିବିଡ଼ ଅନ୍ଧକାର ଧ୍ୟାନ । ଅବ୍ୟାକୁଳ ଧ୍ୟାନ । ବାସନା ଅବୟବ ଧ୍ୟାନ । ପଞ୍ଚଭୂତ ଧ୍ୟାନ । ଇତ୍ୟାଦି କରି ଅନେକ ଧ୍ୟାନ କରିବୁ । ଅଧିଷ୍ଠାତ୍ରୀ କରିବ । କେବଣ କେବଣ ଅଧିଷ୍ଠାତ୍ରୀ । ହସ୍ତରେ ଇନ୍ଦ୍ର ଦେବତା । ପାଦରେ ବିଷ୍ଣୁ ଦେବତା । ଗମନରେ ପବନ ଶକ୍ତି ଅଧିଷ୍ଠାତ୍ରୀ ଦେବତା । ନାଭିରେ ଅଗ୍ନି ଦେବତା । ଆହାରଜଠରେ ଯମ ଦେବତା । ଚକ୍ଷୁରେ ଅଗ୍ନି ଦେବତା (୨) । ମନରେ ଚନ୍ଦ୍ର ଦେବତା । ଜିହ୍ୱାରେ କାଳ ଦେବତା । ନିଦ୍ରାରେ କାଳରାତ୍ରୀ ଦେବତା । ପ୍ରଣବରେ

୧—ସ୍ଥଳୀ 'ଢ'
୨—ଆଦିତ୍ୟ ଦେବତା 'କ'

ନାସାପୁଟରେ ଦେବତା । ଶ୍ରୋତ୍ରରେ ଆକାଶ ଦେବତା । ଇତ୍ୟାଦି ଅଧିଷ୍ଠାତ୍ରୀ ଦେବତାମାନଙ୍କୁ ମାନସିକେ ପୂଜାକରି ଧ୍ୟାନ କରିବୁ ।

ଚତୁଃଷଷ୍ଠୀ ଧାରଣାମାନ ଅଛି । ଯୋଗ ରତ୍ନାକର ପ୍ରମାଣେ । କେବଳ କେବଳ ଧାରଣା । ବିଗ୍ରମ ଧାରଣା । ବଡ଼ବାନଳ' ଧାରଣା । ଘଟଟଣ୍ଡ ଧାରଣା । ପଞ୍ଚଭୂତ ଧାରଣା । ପରମହଂସ ଧାରଣା । ହିମବନ୍ତ ଧାରଣା । ଦିଗ୍‌ଗଜ ଧାରଣା । ସରସ୍ୱତୀ ଧାରଣା । ମହେଶ୍ୱର ଧାରଣା । ଇତ୍ୟାଦି କରି ଚତୁଃଷଷ୍ଠୀ ଧାରଣା କରିବ । ଏ ଧାରଣାରେ କରି ଯେଉଁ ଧାରଣା । ଯେଉଁ ଯୋଗୀ ବଶ କରିଅଛି ସେ ପ୍ରଳୟକାଳକୁ ଜିଣଇ । ବଳ୍କଳା ଧାରଣା କରିଲେ । ବ୍ରହ୍ମାଣ୍ଡ ଉତ୍ପତ୍ତି ପ୍ରଳୟ ହେଉଥିଲେ ହେଁ ମୁହୂର୍ତ୍ତେ ସ୍ଥାପେ ମଣଇ । ଯେଉଁ ସ୍ଥାନରେ ଯେମନ୍ତ ପ୍ରକାରେ ଧାରଣା କରିବ ତାହା ଜଗନ୍ନାଥଙ୍କ ଅନୁଗ୍ରହ ଥିଲେ ତାହା ବି ମରି (୧) ପାରଇ । ଭୂଷଣ୍ଡିକାକ ବାରଣ, ପାର୍ବତୀ, ଏ ଦୁଇ ଧାରଣା ଜାଣି ପ୍ରଳୟକାଳମାନନ୍ତ ବଞ୍ଚଇ । ଏ ଚତୁଃଷଷ୍ଠୀ ଧାରଣା । ସମ୍ପୂର୍ଣ୍ଣ କରି ବଳଭଦ୍ର ହିଁ ସେ ଜାଣଇ । ହନୁମନ୍ତ (୨) ଆଧାରଣା ଜାଣଇ । ନନ୍ଦିକେଶ୍ୱରର ଦଶଧାରଣା ଜାଣଇ । କାର୍ତ୍ତିକେଶ୍ୱର ଦଶଧାରଣା ଜାଣନ୍ତି । ବୃଷଭ ଦ୍ୱାଦଶ ଧାରଣା ଜାଣଇ । ଈଶ୍ୱର ଭୈରବ ରୂପେ ଚତୁଃଷଷ୍ଠୀ ଧାରଣା ଜାଣଇ । ମହାକାଳ ଦ୍ୱାବିଂଶତି ଧାରଣା ଜାଣଇ । ବିଶ୍ୱକ୍‌ସେନ ଏକବିଂଶତି ଧାରଣା ଜାଣଇ । ଜୟ ବିଜୟ ସପ୍ତ ବିଂଶତି ଧାରଣା ଜାଣନ୍ତି । ଚତୁଃଷଷ୍ଠୀକ ଗୁରୁ ଗୁଣିଲେ ଯେତେ । ଶ୍ରୀ ଜଗନ୍ନାଥଙ୍କ ଅନୁଗ୍ରହରୁ ଯୋଗୀ ଜାଣଇ ତେତେ । ଏହାକୁ ଧାରଣା ଯୋଗ ବୋଲି ।

ତଦନନ୍ତରେ ଲୟବ୍ୟୋମ ପଞ୍ଚମ ସୋମଧାରଣା କରିବ । ତଦନନ୍ତରେ ସମାଧିଦ୍ୱାରେ ସମାଧି କରିବ । ଏମନ୍ତ ଯୋଗ ସ୍ୱୟଂ ଇନ୍ଦ୍ରଜାଲ ଅଗ୍ନି ସମ୍ବରଣୀୟ ହୋଇ (୩) । ଜ୍ୟୋତିର୍ମୟ ହୋଇ । ହାଦେ ପରମ ମହାତ୍ମାମାନେ ସେ ଏହା ଜାଣି ପାରନ୍ତି । ସେ କେମନ୍ତ ମହାତ୍ମାମାନେ । କୋଟି କୋଟି ପର୍ବତର ପ୍ରାୟେକ ଯାହାର ଧୈର୍ଯ୍ୟ । କୋଟି

---

୧—ଜାଣି ପାରଇ 'କ'

୨—ହନୁମାନ 'ଖ'

୩—ଅନନ୍ତ ଶରୀର ରଚନା ହୋଇ 'କ'

କୋଟି ସିଂହର ପ୍ରାଏକ ଯାହାର ସୌର୍ଯ୍ୟ । କୋଟି କୋଟି ଯମର ପ୍ରାଏକ ଯାହାର ନିଷ୍ଠୁର । କୋଟି କୋଟି ବଜ୍ର ପ୍ରାଏକ ଯାହାର ହୃଦୟ କଠୋର । କୋଟି କୋଟି ଆକାଶର ପ୍ରାଏ ଯାହାର ଶୁଦ୍ଧି । କୋଟି କୋଟି ବୃହସ୍ପତିର ପ୍ରାଏ ଯାହାର ବୁଦ୍ଧି । କୋଟି କୋଟି ମୁନିର ପ୍ରାଏ ଯାହାର ଯତି (୧) । କୋଟି କୋଟି ସୂର୍ଯ୍ୟର ପ୍ରାଏ ଯାହାର ଜ୍ୟୋତି । କୋଟି କୋଟି ସମୁଦ୍ରର ପ୍ରାଏ ଯାହାର ପୂର୍ଣ୍ଣ । କୋଟି କୋଟି ଚନ୍ଦ୍ରର ପ୍ରାଏ ଯେ ସୌମ୍ୟ । କୋଟି କୋଟି ଇନ୍ଦ୍ରର ପ୍ରାଏ ଯେ ଯୋଗ । କୋଟି କୋଟି ଧନ୍ୱନ୍ତରି ପ୍ରାଏ ଯେ ଆରୋଗ୍ୟ । କୋଟି କୋଟି ରଙ୍କର ପ୍ରାଏ ଯେ ଇନ୍ଦ୍ରିୟ ଐଶ୍ୱର୍ଯ୍ୟ ସମ୍ପୂର୍ଣ୍ଣ । ସେ ମହାତ୍ମା ଜାଣି ପାରଇ । ଈଶ୍ୱର ବଳଭଦ୍ରଙ୍କ ଯୋଗପୂର୍ଣ୍ଣ । ହାଦେ ଅଶ୍ୱର ପ୍ରାଏକ ଯେ କାମୁକ ହୋଇବ । ନିରନ୍ତର ଯେ ମିଥ୍ୟା କହିବ । ଅହୋରାତ୍ରେ ଯେ ମାଦେକ (୨) ହୋଇବ । ସର୍ବଥା ଇନ୍ଦ୍ରିୟ ଜିଣି ନ ପାରିବ । ପିଶାଚର ପ୍ରାଏକ ପ୍ରକୃତି ହୋଇବ । ରୋଗାଦି ଦୋଷ ନିରନ୍ତରେ ଥିବ । ଏବଂଭୂତ ନରାଧମମାନଙ୍କୁ ଜଗନ୍ନାଥ ଅନୁଗ୍ରହ କଲେ । ଯୋଗ ସାଧନ କରିପାରଇ ଅବହେଳେ । ଶ୍ରୀ ଜଗନ୍ନାଥଙ୍କର ସେବକମାନଙ୍କର ପାଦରଜ ଧେନିମାରୁଁ କରି । ନାରାୟଣ ଦାସ ଏହା ପାଇଲା ବସରି । ଏମନ୍ତ ବୋଲି ଭୁବନେଶ୍ୱରୀ ଆଜ୍ଞାଦେଲା ଯହୁଁ । କାମାନନ୍ଦ ଯୋଗୀ ଯୋଗ ଥୋକାଏ ସାଧିଲା ତହୁଁ ।

ସେହି ଏହି ଯୋଗ ସାଧନ କରି ଦେହ କନ୍ଦର୍ପର ପ୍ରାଏ (୩) କରିଅଛି । କାମାକ୍ଷୀ ମନ୍ତ୍ର ଉପାସନା କଲାରୁ କରି ବଶୀକରଣ ବିଦ୍ୟା ପାଇଅଛି । ସମସ୍ତ ଶକ୍ତି ସିଦ୍ଧ ହୋଇଅଛି । କେବଳ ଶକ୍ତି । ପର୍ବତ ଚାଳନ ଶକ୍ତି । ଅପରାଜିତ ଶକ୍ତି (୪) । ସୂକ୍ଷ୍ମ ଶକ୍ତି । ଚଳନ ଶକ୍ତି । ବୁଦ୍ଧି ଶକ୍ତି । ଖେଚରୀ ଶକ୍ତି । ଏ ଶକ୍ତିମାନେ କ୍ରମେ ସିଦ୍ଧ ହୋଇଅଛନ୍ତି । ଯହୁଁ ଦେଇଅଛି ଯୋଗରେ ମତି । ବୁଦ୍ଧି ଯୋଗ ଶକ୍ତି ସେ ହୋଇଅଛି । ଯହୁଁ

---

୧—କୋଟିଠାରୁ ଯତି ପର୍ଯ୍ୟନ୍ତ 'କ' ରେ ନାହିଁ
ତାହା ବଦଳରେ—"କୋଟି କୋଟି ଚନ୍ଦ୍ରର ପ୍ରାଏ
ଯାହାର ଆହ୍ଲାଦ କରିଭ୍ରାନ୍ତି" ଅଛି ।

୨—ମଦ 'ଖ'

୩—ବଜ୍ର ପ୍ରାଏକ କରିଅଛି 'କ'

୪—ଅପରାଜିତା 'ଖ'

ବାସୁଦେବର ଭକ୍ତ ହୋଇଅଛୁ । ଏ ଯୋଗ ପୂର୍ବେ ସରସ୍ୱତୀଙ୍କୁ ପରମେଶ୍ୱର କହିଲେ । ସରସ୍ୱତୀ ଅନୁଗ୍ରହ କରି ଭୁବନେଶ୍ୱରୀଙ୍କି କହିଲେ । ଭୁବନେଶ୍ୱରୀ ଅନୁଗ୍ରହ ପୂର୍ବକ କାମାନନ୍ଦଙ୍କୁ କହିଲେ । ତାହା ନାରାୟଣ ଦାସ ଶ୍ରୀକୃଷ୍ଣ ପଦାରବିନ୍ଦରୁ କରି (୧) ପାଇଲା । ଏ ଅଂଶର ନାମ ତ୍ରୈଲୋକ୍ୟ ବିଜୟେ ହି କିରଣଙ୍କ ମତେ କଥାରେ ଚତୁର୍ଥ ଅଂଶ ହୋଇଲା ସମ୍ପୂର୍ଣ୍ଣ । ଏବେ ପଞ୍ଚମ ଅଂଶ ପ୍ରଥମ ବର୍ଷ ରସକଳାର ସୁଧାନିଧି ବୋଲି ପଞ୍ଚମ ଅଂଶର ନାମ । ରସରତ୍ନ ଅଧିକାରେ ଶୁଣିଲେ ସକଳ କାମ । ଏମନ୍ତେ ସେ କାମାନନ୍ଦ ଯୋଗୀ ଯୋଗ ସିଦ୍ଧି ପାଇ । ବିଷୟ ରସକୁ ଧ୍ୟାୟି । ଭୂମଣ୍ଡଳକୁ ବଡ଼ ବୋଲି ଆଗମ ଶାସ୍ତ୍ର କହଇ । ଈଶ୍ୱର ମାୟାରେ କରି କେ କେଉଁଆଡ଼େ ଅଛୁ । ଏହା ଜାଣି ନୋହଇ । ଯେ ଯେତେ ଜାଣଇ ସେହି ତେତେ ହେଁ କହି ପାରଇ ।

ଏମନ୍ତେ ସେ ଅନଳ ଖେଚର । ଅନିଳ ଯେ ପବନ । ତାହାର ପରି ବ୍ୟଗ୍ର ଅଟଇ । ଖେଚର ଆକାଶର ଚର ଅଟଇ । ଧୂମ୍ର ମାଳ ଅଟଇ । ମଙ୍ଗଳଗ୍ରହ ପରି ଦୁଇ ଚକ୍ଷୁ ଅଟଇ । ଇଚ୍ଛାକଲେ ଆଦିତ୍ୟ ମଣ୍ଡଳେ ପଶଇ । ମନ କଲେ ଧ୍ରୁବଲୋକ ଯାଏ ଶିର ଲାଗଇ । ସ୍ୱଭାବେ ତାଳ ଗଛ ଗୋଟା ପ୍ରାୟେ ହୋଇଥାଇ । ଭୂତ ଭବିଷ୍ୟ ସକଳ ଶାସ୍ତ୍ର ଜାଣଇ । ଗୁରୁ କରି ଈଶ୍ୱରଙ୍କୁ ମଣଇ । ଅଚରଚରଙ୍କୁ ଯାଇ ପାରଇ । ମହାବାତେ ରହି ପାରଇ । ତୁଣ୍ଡେ ଭେରୀ ବାଇ ପାରଇ । ସ୍ଥୂଳ ପଦାର୍ଥ ଖାଇ ପାରଇ । ଅଗ୍ନି, ଜଳ, ପବନେ ଥାଇ ପାରଇ । ଦୂର ଲୋକକୁ ଯାଇ ପାରଇ । ବଜ୍ର ପଡ଼ିଲେ ସହି ପାରଇ । ଗଗନ ମାର୍ଗେ ଉଡ଼ି ପାରଇ । ନିମିଷକେ ତିନିଭୁବନ ଭ୍ରମି ପାରଇ । ଶୂନ୍ୟେ ଲମ୍ବି ହୋଇ ରହି ପାରଇ । ଦୃଶ୍ୟେ ଅଦୃଶ୍ୟେ ମିଶି ପାରଇ । ବିଜୁଳି ମାର୍ଗେ ପଶି ପାରଇ । କାମ କଉତୁକେ ରସି ପାରଇ । ବୀରମାନଙ୍କୁ ଗ୍ରାସି ପାରଇ । ଧନରତ୍ନମାନ ହରି ପାରଇ । ନାନାବର୍ଣ୍ଣ ଧରି ପାରଇ । ନଦୀ ପହଁରି ପାରଇ । ହସ୍ତେ ଖଟ୍ୱାଙ୍ଗ (୨) ଧରି ପାରଇ । ପବନେ ଗମି ପାରଇ । ଜଳ ଭିତରେ ବୁଡ଼ି ପାରଇ ।

---

୧—ପାଦ ସେବାରୁ 'ଙ'
୨—ଖଡ଼ଗ 'ଙ'

ପକ୍ଷୀର ପ୍ରାୟେକ ଉଡ଼ ଥାରଇ । ମନୁଷ୍ୟ ପ୍ରାୟେକ କଥା କହୁଥାଇ । ପୂର୍ବେ ବାସୁଦେବଙ୍କୁ ଅଧମ ଭକ୍ତ କଲ ଯହୁଁ, ପାପର ବଳେ ଭୂତ ଶକ୍ତ ପାଇଲ ତହୁଁ । ସେ ଭୂତ ପାର୍ବତୀଙ୍କ ସ୍ମୁରେ ନୃତ୍ୟ କଲାଯହୁଁ, ମାହେଶ୍ୱରୀ ଅନୁଗ୍ରହ କଲେ ତହୁଁ । ପ୍ରଳୟ କାଳରେ (୧) ରକ୍ଷା କରଇ । ପୁଣ ପ୍ରାୟେ କର ମନେ ଧରଇ । ଏବଂଭୂତ ଅମାଳ ଖେଚର ନାମେ ଭୂତ କାମାନନ୍ଦର ସଙ୍ଗେ ସଖା ହୋଇ । ମହାବିଦ୍ୟାର ବଳେ ପ୍ରସନ୍ନ କରାଇ ଆପ୍ତେ ବଶ କରଅଛୁ । ଅନ୍ୟ ଭୂତମାନେ ପଞ୍ଚମ ତତ୍ତ୍ୱ ଷଷ୍ଠ ତତ୍ତ୍ୱ ସପ୍ତମ ତତ୍ତ୍ୱ ହୋନ୍ତି । ଅଷ୍ଟମ ତତ୍ତ୍ୱ ହୋଇଲେ ତାହାକୁ ଚଣ୍ଡ ବୋଲ । ଚଣ୍ଡ ଦ୍ୱାଦଶ ତତ୍ତ୍ୱ ଯାଏ ହୋଇ (୨) । ତ୍ରୟୋଦଶ ତତ୍ତ୍ୱକୁ ବେତାଳ ବୋଲ । ବେତାଳ ପଞ୍ଚଦଶ ତତ୍ତ୍ୱ ଯାଏ ହୋଇ । ଷୋଡ଼ଶ ତତ୍ତ୍ୱକୁ ବିଦ୍ୟାଧର ବୋଲ । ଏ ଅଷ୍ଟାଦଶ ଯାଏ ହୁଅନ୍ତି । ଊନବିଂଶ ତତ୍ତ୍ୱଠାରୁ ଏକବିଂଶ ତତ୍ତ୍ୱ ଯାଏ କ୍ଷୁଦ୍ର ଲିଙ୍ଗ ହୋଇ । ଚତୁର୍ବିଂଶତି ତତ୍ତ୍ୱକୁ ସିଦ୍ଧ ବୋଲ । ଏ ଶରୀର ପବନ ସ୍ୱରୂପ ହୋଇ । ଏବଂଭୂତ ପୃଥ୍ୱୀର ସ୍ଥୂଳ ନାନାକାର କଠିନ ଗନ୍ଧ, ଏ ଗୁଣ ତତ୍ତ୍ୱକୁ ଛାଡ଼ି, ଏକବିଂଶତି ତତ୍ତ୍ୱ ପାଇଅଛୁ । ଯହୁଁ ବାସୁଦେବର ଭକ୍ତ ରହିଅଛୁ । ତହୁଁ ପାପରବଳେ ଭୂତ ହୋଇ (୩) ଦେବତା ପ୍ରଭାବ ହୋଇଅଛୁ । ଏମନ୍ତେ ଭୂତ । ଅଧିଭୂତ । ମହାଭୂତ । ଦିବ୍ୟଭୂତ ଇତ୍ୟାଦି କର ପରମ ଭୂତମାନେ ହୁଅନ୍ତି । ଗୁରୁଅଧୀତ ଜ୍ଞାନ ଜାଣିବାରୁ କର ମହାଭୂତ ପରମେଶ୍ୱରଙ୍କୁ (୪) ବୋଲ । ଅଧିଭୂତ ଈଶ୍ୱରଙ୍କୁ ବୋଲ ସିଦ୍ଧମାନଙ୍କୁ ଦିବ୍ୟଭୂତ ବୋଲ । ଏ ଦିବ୍ୟ ଭୂତରେ ଗଣନାଥ, ଅନଳ ଖେଚର ହୋଇ ।

କାମାନନ୍ଦର ଭୂତ, ପ୍ରେତ, ପିଶାଚ, ଯୋଗ୍ନୀ, ଡାକିଣୀ (୫), ଚଣ୍ଡ, • ବେତାଳଗଣ ସହିତ ସୈନ୍ୟରେ ଏବଂଭୂତ ସେନାପତି ହୋଇ । ସେ କାମାନନ୍ଦର ନାମୈକ ଇନ୍ଦ୍ର ଅମାତ୍ୟ ହୋଇ । ପାର୍ବତୀ ଏହାଙ୍କୁ

---

୧—ପ୍ରଳୟକାଳମାନଙ୍କରୁ 'କ'
୨—ହୁଅନ୍ତି 'ଖ'
୩—ଭୂତତତ୍ତ୍ୱ ପାଇଲେ ହେଁ 'କ'
୪—କୃଷ୍ଣଙ୍କୁ 'କ'
୫—ଯକ୍ଷିଣୀ 'କ'

ଭୂତଚୂଡ଼ାମଣି ପଦ ଦେଇ ଅଛନ୍ତି । ଏମନ୍ତେ ସେ ଭୂତଚୂଡ଼ାମଣିକି ଧରି । ହସ୍ତ (୧) ପେଠ ଦେଇ । ପଚାରିଲେ ହେ ଭୂତ ପୁଙ୍ଗବ । ପୂର୍ବେ ଯାହା ପଚାରିଲି ସେ ଅଭିନବ ଚୈତନ୍ୟ ନାମେ ରୁଦ୍ରଗଣ ପରା ଏ କଟକରେ ଜନ୍ମ ହୋଇଅଛି । ଜ୍ଞାନ ସୁଧାନିଧି ନାମ ବହିଅଛି । ସମସ୍ତ ଶାସ୍ତ୍ରେ ନିପୁଣ ହୋଇଅଛି । ରୂପ ଗୁଣ ସମସ୍ତଙ୍କୁ ମୋହିଅଛି । ରାଜ୍ୟ ହିଁ ଶୋଭା ପାଉଅଛି । ପୂର୍ବ ଜ୍ଞାନ ହିଁ ତାହାର ପାଶୋର ଯାଉଅଛି । ଏହାକୁ ପାଇ ଅବିଦ୍ୟା ମୃତ୍ୟୁସଞ୍ଜିବନୀ କରଣୀ କନ୍ୟା ଜନ୍ମ ହୋଇଅଛି ।

ଏବେ ସେ କନ୍ୟା କେଉଁ ରାଜା କଟକରେ କେମନ୍ତ ପ୍ରକାରେ ଅଛି (୨) ଏହା କହ । ସେ କଥା କର୍ଣ୍ଣକୁ ଭୂଷଣ ଅଟଇ । ମୋତେ ଆନ ନ ଘଟଇ । ଶ୍ରବଣେ ଅମୃତ ପାନକଲା ପ୍ରାୟେକ ଶୁଣିମି । ମହାବିଦ୍ୟାର (୩) ବଳେ ହରି ଆଣିମି । ଆଲିଙ୍ଗନ କରିବି । ଯାହାର ସ୍ତନକଳଶ (୪) ଆଶ୍ରେକରି କାମ ଜଳଧି ତରିବି । ତ୍ରୈଲୋକ୍ୟ ସୁନ୍ଦର ଅଛି ତାହାର ତନ୍ହିଁ । ତାହାକୁ ଭୋଗକଲେ ସେ ସକଳ ସୁଖ ପାଇ । ସେ କି ବିଦ୍ୟାଧରି, ସୁରାଙ୍ଗନାବା, ନାଗାଙ୍ଗନାବା, କି ଦକ୍ଷ କନ୍ୟା, ଶିବାଙ୍ଗନା, ଦିବ୍ୟ ସୀମନ୍ତିମୀବା । ବଳନ-ଦେହା, ମୃଗ ଦର୍ଶିମୀ । ହେ ମିତ୍ର ତ୍ରୈଲୋକ୍ୟର ମଧ୍ୟେ ଦିବ୍ୟ ସୁନ୍ଦରୀମାନଙ୍କୁ ମୁଁ ବଳେ ଅପହରି ଆଣିପାରଇ । ସେ ଅବା କେତେ ମାତ୍ରଟି । ତାହାର ଜନ୍ମର ବୃତ୍ତାନ୍ତ ଯେ ପୂର୍ବେ କହିଲୁ, ଏବେ ସେ କାହିଁଅଛି କହ । ଏହାଶୁଣି ସେ ଭୂତ ବୋଇଲା । ହେ ଇନ୍ଦ୍ରଜାଲିକ ଯୋଗେନ୍ଦ୍ର ପୁରୁଷ । ପୂର୍ବେ ଯେମନ୍ତ କହିଲି ସେ ପ୍ରକାର ସେ କନ୍ୟା ଜନ୍ମ ନୋହିଲା । ଈଶ୍ୱର ଆଜ୍ଞାଉଁ କରି ସର୍ବଦା ତାହାର ନବଯୌବନ ସ୍ଥିର ହୋଇଲା । ମାନସରୋବର କୂଳେ ତପ କରୁଥା ବୋଲି ପାର୍ବତୀ କହିଲେ । ଥୋକାଏ ଦିନ ଥିବୁ ଯେ ତୋତେ ନେଇ ଆସଇ ତାହାର ସଙ୍ଗତେ ମୃତ୍ୟୁ ଲୋକକୁ ଯିବୁ । ଧର୍ମଧ୍ୱଜ ରାଜାର ଦୁହିତା ହୋଇବୁ । ତଦନନ୍ତରେ ତୋହର ଭର୍ତ୍ତାକୁ ପାଇବୁ । ତୁ ମୋହର ଦେହରୁ ଜନ୍ମ ।

---

୧—ହାତ 'କ'
୨—ହୋଇଅଛୁ 'ଖ'
୩—ମାହାନ୍ଦ୍ର ବିଦ୍ୟାର 'କ'
୪—ପର୍ବତ 'କ'

ତୋହର ଭର୍ତ୍ତା ଈଶ୍ୱରଙ୍କୁ ସମ । ଏମନ୍ତ ଅଜ୍ଞାପାଇ ସେ କନ୍ୟା ମାନସରବର ଜଳେ ରହିଲା । ଜଗତ ମୋହିଲା । ବିଶିଷ୍ଟଚନ୍ଦ୍ର ଉଦୟ ପ୍ରାୟ (୧) ମୁଖ ଶୋହିଲା । ମାନସରବରରେ ପଦ୍ମବନେ ଅଛି । ସେ ସୁବର୍ଣ୍ଣ ପଦ୍ମ ଅଟଇ । କେଶର ପଦ୍ମରାଗ ମାଣିକ୍ୟ, ପୁଷ୍କର ବ୍ରହ୍ମଜାତର ହୀରା, ନାଡ଼ମର୍କତ, ମୃଣାଳ ଶୁଦ୍ଧସ୍ଫଟିକ, ପରାଗ ସିନ୍ଦୂର କର୍ପୂର, ମକରନ୍ଦ ଅମୃତ, ପଙ୍କ ମୃଗନାଭି କସ୍ତୁରୀ । ସେ ପଦ୍ମ ଜ୍ୟୋତି ଶିଖାମାନେ ଉଠୁଅଛନ୍ତି । ସେ ପଦ୍ମ ଶିଶିରେ ନାଶ ନ ଯାଇ । ଚନ୍ଦ୍ର ଉଦୟରେ ଫୁଟଇ । ସର୍ବଦା ମଳିନ ନ ହୋଇ । ପୁଷ୍ପିତ ହୋଇଥାଇ । ସ ପଦ୍ମବନକୁ ପବନ ଦେବତା ପଶି ନ ପାରଇ । ଭ୍ରମର ଚୁମ୍ବି ନ ପାରଇ ।

ଲକ୍ଷ୍ମୀଦେବୀ ଅମର ସ୍ତ୍ରୀମାନଙ୍କୁ ସଙ୍ଗରେ ଘେନି ସେହି ପଦ୍ମବନରେ ବିହରୁଥାନ୍ତି (୨) ଏମନ୍ତେ ସେ ପଦ୍ମ ବନରେ । କ୍ରୀଡ଼ା କରନ୍ତେ ଏକ ଦିନେ ସେ କନ୍ୟାକୁ ଦେଖିଲେ । ଅମୃତ ନୟନେ ନିରେଖିଲେ । ତାହାର ମୁଖ ଚାହିଁ ପୁଣ ପୁଣ ନିରେଖି ଆଶ୍ଚର୍ଯ୍ୟ ପାଇଲେ । ଆଶ୍ଚର୍ଯ୍ୟ ପାଇ ଆପଣା ଦେହକୁ ଚାହିଁଲେ । ପୁଣି ତାହାର ଦେହକୁ ଚାହିଁଲେ । କାହିଁ ବିଚାରିଲେ ବିଧାତା ସବୁରି ଗର୍ବ ହରଇ । ସେ ନିମନ୍ତେ ତ୍ରିପୁର ସୁନ୍ଦରୀମାନଙ୍କର ଗର୍ବ ହରିବାକୁଟି (୩) ଏହାକୁ ଜନ୍ମ କରିଅଛି । ସଙ୍ଗତେ ବିହରନ୍ତା ପରିବାରୀ ଅମର ସ୍ତ୍ରୀମାନେ ଲକ୍ଷ୍ମୀଙ୍କି ଚାହିଁ ତା ଦେହକୁ ଚାହାନ୍ତି । ଅନ୍ୟୋନ୍ୟ ଦୁହିଙ୍କର ତହିଁ ଚକ୍ଷୁ ହରଇ । ଏମନ୍ତେ ସେ ଲକ୍ଷ୍ମୀଦେବୀ ଆପଣାକୁ ଆପଣେ ଅପରତେ ପାଇ ପରିବାରୀମାନଙ୍କୁ ପଚାରିଲେ । ଆଗୋ ମୁଁ ଏ କନ୍ୟାର ପ୍ରାୟେକ (୪) ଦିଶଇ କି । ଏହା ଶୁଣି ବୋଇଲେ ସେମାନେ, ହେ ଦେବୀ ! ଜଗତର ଲକ୍ଷ୍ମୀ, ନାରାୟଣର ପାଟମହିଷୀ ତୁ । ତୁମ୍ଭଙ୍କୁ (୫) ତୁଲାଇବାକୁ ନାହିଁ । ପୁଣି ଏହି ତୋହର ଦୁହିତା ପ୍ରାୟ ଦିଶଇ । ଅବଶ୍ୟ ମାତାର ତହୁଁ ଯୁବା ଝିଅ ଶୋଭା ପାଇ । ଏହା ଶୁଣି କମଳା ବିଚାରିଲେ

---

୧—ଦୁଇ ଚନ୍ଦ୍ର ହୋଇଲା ପରି 'କ'
୨—ବିହାର କରୁଥାନ୍ତି 'ଖ'
୩—ଗାଳିବାକୁ 'ଚ'
୪—ପରି 'କ'
୫—ତୋତେ 'ଛ'

ଏହା ଦେଖିଲେ ନ ପୁଣ ମୋତେ ନାରାୟଣ ଛାଡ଼ନ୍ତି । ପୁରୁଷମାନେ ଭ୍ରମର ପ୍ରାୟେ ସିନା । ନବୀନ ଭଲ ପାଇଲେ ଶରଧା କରନ୍ତି । ଏମନ୍ତ ବିଚାରି (୧) ସେ କନ୍ୟାକୁ ଦୁହିତା କରି କଳ୍ପିଲେ । ବିଚାରିଲେ ମୁଁ ଏହାକୁ ପୁଜା କଲେ ପରମେଶ୍ୱରଙ୍କର ପ୍ରିଅ ହେଇବ । ଆଉ ସେ ଭାରିଯା ନ କରିବେ । ଏମନ୍ତ ବିଚାରି, ଯେ କନ୍ୟାକୁ ହକାରି, ଦୁହିତା କରି, ଦିବ୍ୟ ବସ୍ତ୍ର ଅଳଙ୍କାର ଭରି, ଦେବସ୍ତ୍ରୀମାନଙ୍କର ପ୍ରାୟେ କରି ସଙ୍ଗେ ଘେନି ବିହରୁଥାନ୍ତି ।

ଏମନ୍ତେ ସେ ମେରୁପର୍ବତର ଲାଗେ, କାଞ୍ଚନସ୍ଥଳୀ ପୂର୍ବଭାଗେ, ସିନ୍ଧୁନଦୀତଟରେ, ମଧୁବେଳା ବନ ନିକଟରେ, ଅନ୍ଧକାର-ଭୂମି ପାଶରେ, ପୃଥ୍ୱୀତିଳକ ବୋଲି ନାମ କଟକ ବସଇ । ସେ କଟକରେ ଧର୍ମଧ୍ୱଜ ବୋଲି ରାଜା ଏକ ହୋଇ । ତାହାର କୋକିଳାବତୀ ବୋଲି ପାଟମହିଷୀ । ସେ ରାଜା ଅତ୍ୟନ୍ତ ବୈଷ୍ଣବ ଅଟଇ । ଧର୍ମବନ୍ତ ଅଟଇ । ବାସୁଦେବର ତହିଁ ମନବୁଦ୍ଧି ଦେଇ ବାହ୍ୟଜ୍ଞାନ ପାଶୋରି ଥାଇ । ଜଡ଼ ଗୋଟିଏ ପ୍ରାୟୁ ହୋଇ-ଥାଇ । ସ୍ତ୍ରୀମାନେ ଧରି ସକଳ କର୍ମ କରାନ୍ତି । ଦେଖୁଥିଲେ ହେଁ ନ ଦେଖଇ । ଶୁଣୁଥିଲେ ହେଁ ନ ଶୁଣଇ । ଶୀତ ଉଷ୍ଣ ନ ଜାଣଇ । ଅମାତ୍ୟମାନେ ରାଜ୍ୟ ଚିନ୍ତା କରୁଥାନ୍ତି । ତିକ୍ତ, ଅମ୍ଳ, କଟୁ, କଷା, ମଧୁର, ଲବଣାଦି ସ୍ୱାଦୁ-ମାନଙ୍କ ନ ଜାଣଇ । ସ୍ତ୍ରୀମାନେ ଯଥୋଚିତ ବେଳେ (୨) ମଣୋହି କରାନ୍ତି । ଭୁଣ୍ଡରେ ଗୁଣ୍ଡି ଗୁଣ୍ଡି କରି ଭୁଞ୍ଜାଇ ଦିଅନ୍ତି । ସେ ମହା ବାସୁଦେବର ତହିଁ ମନ ବୁଦ୍ଧି ଦେଇ ଦେହ ଜ୍ଞାନ ଛାଡ଼ି ରାଜା ହୋଇଥାଇ । ଏମନ୍ତେ ସେ ରାଜା ହରିଦିନକର ଏକାଦଶୀ ନିଶିରେ ଉଜାଗର ହୋଇ ବିଷ୍ଣୁଙ୍କୁ ଧ୍ୟାୟି ମଥାରେ ମହାପ୍ରସାଦ ଦେଇ ବସିଅଛି । ଏମନ୍ତ ସମୟୁ ଶତ୍ରୁ ସୈନ୍ୟ ଘେନି ବାହିଲା । ରାଜାଙ୍କୁ ଉଗରି ଜଣାନ୍ତେ ସେ ରାଜା ସମାଧିରେ କରି ସମାହିତ ହୋଇ ବସିଅଛି । ମନ, ଧ୍ୱଜ, ଅଙ୍କୁଶ, ଶଙ୍ଖ, ପଦ୍ମ, ଚକ୍ର, ଅଙ୍କୁଶ, ମତ୍ସ୍ୟ-ରେଖା ଅଙ୍କିତ ଲକ୍ଷ୍ମୀ ଆଶ୍ରୟ ପାଦପଦ୍ମକୁ ସହୁଁ ଚିନ୍ତା କରୁଅଛନ୍ତି । ତହୁଁ କରି କାହାରି ବଚନ ନ ଶୁଣିଲା । ଏମନ୍ତେ ଅମାତ୍ୟମାନଙ୍କରେ ଶତ୍ରୁ (୩)

୧—ଏବମ୍ଭୂତ 'କ'
୨—କରି 'ଖ'
୩—ଘେନ 'କ'

ନିବାରଣ ନ ଗଲା । ନିଁ ଯାନ୍ତେ ରାଜାର ନଗରରେ ଆସି ଶତ୍ରୁ ରାଜା ସୈନ୍ୟମାନେ ବେଢ଼ିଲେ । କଟକ ଜୁର କଲେ, ମହାଦେଶମାନେ ପୁନଃ ପୁନଃ କରି କଳହଂସୀ ସୁସ୍ୱର ପ୍ରାପ୍ତେ କରି ଖୋଳ କରି ଆକର୍ଷି କରି କ୍ରୀଡ଼ା କରନ୍ତେ ହେଁ ସେ ରାଜାର ସମାଧି ନ ଭାଙ୍ଗିଲା ଯହୁଁ ଶତ୍ରୁ ସୈନ୍ୟମାନେ ଭିତରକୁ ପଶିବାକୁ ଲୋଡ଼ିଲେକ ତହୁଁ । ନଗ୍ରେ ଅଗ୍ନି କି ଲଗାଇବାକୁ ବିଚାର କରନ୍ତେ, ସେ ମହାପ୍ରଭୁ ବାସୁଦେବ ବୈଷ୍ଣବଙ୍କର ମାନନ୍ତ ରକ୍ଷା କରିବା ନିମନ୍ତେ ସୁଦର୍ଶନ ଚକ୍ରକୁ ଆଗହୁଁ (୧) ଆଜ୍ଞା ହୋଇ- ଅଛି । ଏମନ୍ତେ ସେ ପୁରକୁ ସେହି ଦିନୁ ସୁଦର୍ଶନ ରକ୍ଷା କରିଥାଇ । ତଳାର୍ଦ୍ଧେ ଅବକାଶ ନ ଥାଇ । ଏମନ୍ତେ ସେ ରାଜାର ସ୍ତ୍ରୀରେ କାମ୍ୟ ନାହିଁ, ମୈଥୁନ ନାହିଁ । ବାସୁଦେବର ତହିଁ ଇନ୍ଦ୍ରିୟମାନଙ୍କୁ ସମର୍ପି ଥାଇ । ସ୍ତ୍ରୀରିଙ୍କୁ ବାସୁଦେବ ବୋଲି ଜାଣଇ । ଦେହ ବୁଦ୍ଧି ଥିଲେ ସେ ମଦନ ବଶକୁ ଯିବ ସିନା । ଏମନ୍ତେ ସେ ରାଜା ଲୟରେ ଥାଆନ୍ତେ ହେଁ ଚକ୍ରର କଣିକାସି କଣିକା ମାତ୍ରକ ତେଜରେ ଶତ୍ରୁ ସୈନ୍ୟ ନାଶଗଲା ।

ଏମନ୍ତେ ସେ ରାଜାର ପାଟ ମହିଷୀ କୋକଳାବତୀ । ଲକ୍ଷ୍ମୀଦେବୀଙ୍କି ଅନେକ ପ୍ରକାରେ ସେବା କରୁଥାଇ । ଅନେକ ପ୍ରକାରେ (୨) ସେବା କରନ୍ତେ ଲକ୍ଷ୍ମୀଦେବୀ ପ୍ରସନ୍ନ ହୋଇଲେ । ଅର୍ଦ୍ଧ ରାତ୍ରେ ନିବିଡ଼ ଅନ୍ଧକାର ମଧ୍ୟରେ ବସି ମହାଲକ୍ଷ୍ମୀଙ୍କି ଧ୍ୟାନ କରନ୍ତେ । ଲକ୍ଷ୍ମୀଦେବୀ ମୂର୍ତ୍ତିବନ୍ତ ହୋଇ । ଭୂମିକି ଅଳପ ଛାଡ଼ି ଆସି ପ୍ରବେଶ ହୋଇଲେ । କେମନ୍ତ ପ୍ରକାରେ ହୋଇ (୩), ସହସ୍ର ସହସ୍ର ଚନ୍ଦ୍ର, ସହସ୍ର ସହସ୍ର ସୂର୍ଯ୍ୟ, ସହସ୍ର ସହସ୍ର ବିଜୁଳି, ସହସ୍ର ସହସ୍ର ଅଗ୍ନି, ସହସ୍ର ସହସ୍ର ମାଣିକ୍ୟର ଜ୍ୟୋତି, ସମସ୍ତ ରୁଣ୍ଡୀଭୂତ କଲେ ହେଁ ସେ ଲକ୍ଷ୍ମୀଦେବୀର କାନ୍ତିକ ସରି ନୋହଇ । ବ୍ରହ୍ମାଣ୍ଡପୁର ଜଣି ମାଣିକ୍ୟଙ୍କର ଶିଖାମାନେ ଉଠୁ ଅଛନ୍ତି । ମୁଖପଦ୍ମର ବାସ ଚତୁର୍ଦ୍ଦିଗ ଲୋକଙ୍କୁ ଯାଉଅଛି । ଦେବତାମାନେ କ୍ଷୀରସମୁଦ୍ର ମନ୍ଥି ଯେଉଁ ଅମୃତ ଜାତ କଲେ, ତେମନ୍ତ ସହସ୍ର ସହସ୍ର ଅମୃତ ସମୁଦ୍ରମାନ ମନ୍ଥିଲେ ଯେଉଁ ଅମୃତ କଳା ରହିବ ତହୁଁ ବିଶେଷ ଅମୃତନିଧି ଅଟଇ । ଏମନ୍ତେ ସେ

---

୧—ପୂର୍ବହୁଁ 'କ'

୨—ଅନେକ ଭାଷାରେ 'କ'

୩—ପ୍ରାପ୍ତେକ ହୋଇ 'କ'

ଅମୃତ ସମୁଦ୍ରମାନ କୋଟି କୋଟି ହୋଇ ଅର୍ଧବମୃତରୁ ଉଚ୍ଛୁଳିଲା ପରିଏ ହୋଇ ବଶୁଅଛନ୍ତି । ଚକ୍ଷୁ ଅପାଙ୍ଗେ ଗୃହାନ୍ତେ ସଚରାଚର ଜଗତଯାକ ସବୁ ଜଡ଼ (୧) ପ୍ରାପ୍ତ ହୋଇ ଲବଣୀ ପ୍ରାପ୍ତ ହୋଇ ତରଳ ଅନ୍ଧକାରେ ଲୟ ହୋଇ ସୁଷୁପ୍ତି ର ପ୍ରାପ୍ତେ ଅଜ୍ଞାନ ହୋଇ । ସେ ଅପାଙ୍ଗ କାଉଁରିଦେବଙ୍କର କାମଦେବ ଅଟଇ । ନାରାୟଣଙ୍କୁ ହିଁ ସେ ଜନ୍ମ ଦୁଃଖ ଦିଅନ୍ତା ଅଟଇ । ଅନନ୍ତରୂପୀ ପୃଥ୍ୱୀଭାର ସହନ୍ତା ଅଟଇ (୨) । ମହା କମଠକୁ ଏ ଜଗତଭାର ବହନ୍ତା ଅଟଇ ନିର୍ଗୁଣ ବ୍ରହ୍ମକୁ ହିଁ । ଗୁଣମାନ କରନ୍ତା ଅଟଇ । ସେ ଅପାଙ୍ଗ ଖେଦରେ ତରଳ ତରଙ୍ଗେ ଗତାଗତ ହୁଅନ୍ତେ ଏ ଚରାଚର ଜଗତ ସେ ଅପାଙ୍ଗ ସଙ୍ଗତେ ଉଦେ ଅସ୍ତ ହେଉ ଅଛନ୍ତି କି ? ସେ ଚକ୍ଷୁର (୩) ଅପାଙ୍ଗ ଲୀଳାରୁ ବ୍ରହ୍ମା, ଇନ୍ଦ୍ର, ରୁଦ୍ର ପଦମାନଙ୍କର ଲକ୍ଷ୍ମୀମାନେ ସହସ୍ର ସହସ୍ର ହୋଇ ସ୍ଫୁରୁ ଅଛନ୍ତି କି ? ଅମୃତ ଶୀକରମାନେ ଗଡ଼ୁ ଅଛନ୍ତି (୪) କି ? ସେ ଚକ୍ଷୁରୁ କୌଣସି କୋଣ ଭାଗ କରୁଣାରୁ ଚନ୍ଦ୍ର ସୂର୍ଯ୍ୟ ହେଉଅଛନ୍ତି କି ? ସେ ଚକ୍ଷୁ ଅପାଙ୍ଗ ଲୀଳାରେ ଯେତେ ଚନ୍ଦ୍ର ଅନାଦି ସୃଷ୍ଟିଠାରୁ ହୋଇଲେଣି ଏବେ ଯେତେ ଚନ୍ଦ୍ର ହୋଇବେ, ଏ ସବୁ ଚନ୍ଦ୍ରମାନଙ୍କୁ ଏକ କରି ସବୁଙ୍କର କଳଙ୍କମାନ କାଢ଼ି ପକାଇ, ଅମୃତ ସମୁଦ୍ରେ ମିଶାଇ । ବିଶ୍ୱକର୍ମା କୁଳେ ବସାଇ, ଏକ ଚନ୍ଦ୍ର କରି କଲ୍ପିଲେ ହେଁ ସେ ଲକ୍ଷ୍ମୀ ଦେବୀର ବଦନଚନ୍ଦ୍ରକୁ ସରି ନୋହି ନଉଛଣା ପ୍ରାପ୍ତେକ ହୋଇବ । ସେ ମୁଖଚନ୍ଦ୍ର ଲାବଣ୍ୟ କହି ଲୋଡ଼ିଲେ ହେଁ ମନ ବୁଦ୍ଧି ଅସ୍ତକୁ (୫) ଯାଇ । ଯେଉଁ ମୁଖପଦ୍ମ ଆଶ୍ରେ କରି କାମଦେବ ଜଗତେ ଦେବଦାଳନ ପଦ ପାଇଲା । ନାରାୟଣଙ୍କୁ ବନ୍ଦୀ କରିବାକୁ ଦୁଇ କର୍ଣ୍ଣେ ଚନ୍ଦ ତାଟଙ୍କ ଦୁଇ ଭରିଅଛି । ସେ ତାଟଙ୍କ ଦୁଇ କେମନ୍ତ ଅଟଇ । ଏକ ସଂସାର ଚନ୍ଦ, ଆରେକ ଜ୍ଞାନଚନ୍ଦ, ଏ ଦୁହିଙ୍କି ସମ ପ୍ରକାରେ ଧରିଅଛି । ପୁଣି ସେ ତାଟଙ୍କ ଦୁଇ କେମନ୍ତ ଅଟଇ । ସକଳ ବ୍ରହ୍ମାଣ୍ଡମାନଙ୍କର ଦେବ ଗନ୍ଧର୍ବ ମଷ କନ୍ନରାଦି କରି ସକଳ କାମଦେବମାନଙ୍କୁ ବନ୍ଦୀ କଲୁ

---

୧—ଜଡ଼ 'କ'
୨—ଅନନ୍ତ ରୂପେ ପୃଥ୍ୱୀଭାର ନସ୍ତନ୍ତା ଅଟଇ 'କ'
୩—ଲକ୍ଷୀର ଖ'
୪—ଉଠୁଅଛନ୍ତି 'କ'
୫—ଗ ସ୍ତକୁ 'ଚ'

ବୋଲି କର୍ଣ୍ଣରେ କହୁଅଛନ୍ତ୍ତି କି ? ଜହିଁ ଥାନ୍ତା ମଣିମାନେ ଜାଜ୍ୱଲ୍ୟମାନ ହୁଅନ୍ତେ ତହୁଁ ସକଳ ବ୍ରହ୍ମାଣ୍ଡମାନଙ୍କରେ ଆଦିତ୍ୟ କଣାମାନ ସ୍ଫୁରୁଅଛନ୍ତି କ (୧) ? ଜୀବନନିଧିର ପ୍ରାଯ୍ୟେକ ହୋଇ କଣ୍ଠରେ ସଙ୍ଗିମା ବର୍ତ୍ତୁଳ ସରଦଚନ୍ଦ୍ର ପ୍ରାଯ୍ୟେକ ହୋଇ ଧବଳ ମୁକ୍ତାମାଳମାନ ଶୋଭା ପାଆନ୍ତେ ଦେବତାମାନେ ଅମୃତସ୍ନାନ କରନ୍ତେ ଟୋପି ଟୋପି ହୋଇ ସେ ଦିଶୁଅଛନ୍ତି କ ? ସ୍ତନମଣ୍ଡଳ ଦୁଇ ସକଳ ଜଗତଜୀବନନିଧି ଯେ ଅମୃତରତ୍ନ ତହିଁ, ପୂରାଇଲା ଅଛି କ ? ରୋମ କଣିକାମାନଙ୍କରେ (୨) ଥାନ୍ତା ସ୍ୱେଦ କଣିକାମାନେ କାମ ବ୍ରହ୍ମା ବ୍ରହ୍ମାଣ୍ଡକୁ କାରୁଣ୍ୟ ଜଳଟି କ ? ସେ ସ୍ତନ ସଙ୍କଟେ (୩) ପଡ଼ି କାମଦେବ ନମଗ୍ନେ ଲସ୍ୟେ ହୋଇଲା କ ? ଗମ୍ଭୀର ନାଭି ସକଳ ଜଗତର ସକଳ ସୁଖ ଥିବାର ବିବର (୪) କ ? ମଧ୍ୟଦେଶ ହିଁ ସେ ନାରାୟଣ·····ଜମାଣିବାର ଅଙ୍ଗୁଳି ସଙ୍ଗତ ବଳୀ କ ? ଚରଣ ଦୁଇ ସମସ୍ତ ବିଦ୍ୟାମାନଙ୍କର, ସମସ୍ତ ନିଧିମାନଙ୍କର, ସମସ୍ତ ଐଶ୍ୱର୍ଯ୍ୟମାନଙ୍କର, ସମସ୍ତ ଜନ୍ମ ତପଫଳମାନଙ୍କର ଆଶ୍ରିତ ଧାମ କ ? ଚରଣେ ପ୍ରଣାମ କରିବାରୁ ଜରି ରଙ୍ଗ ଲାଗି ସେ ସୂର୍ଯ୍ୟର ଅରୁଣ କାନ୍ତି କ ? ସମସ୍ତ ବ୍ରହ୍ମମାନେ, ସମସ୍ତ ଦେବତାମାନେ, ସମସ୍ତ ଭୂତମାନେ, ସମସ୍ତଙ୍କର (୫) ଧ୍ୟାନ ଚିନ୍ତାମଣି ରତ୍ନ କ ସେ ? ସେ ପାଦପଦ୍ମ ସ୍ଥିର ପାରୁଣରେ ଅମର ସ୍ତ୍ରୀମାନେ ପ୍ରଣିପତ୍ୟ କରନ୍ତେ (୬) ତାହାଙ୍କର ଚୂଡ଼ାମଣିମାନଙ୍କର ଧବଳଶିଖା ଉଠନ୍ତେ ସେ ପାଦପଦ୍ମ ଧୋଇଲା ପରାଏ ହୋଇଅଛି କ ? ସନ୍ଧ୍ୟାବାଳମାନେ ସେ ଚରଣ ହୃଦୟରେ ଧରି କୁଙ୍କୁମ ବୋଳିବାରୁ ସେ ଆରକ୍ତ ପୂରିଅଛି କ ? ସେ ନଖ-ପଂକ୍ତି ପ୍ରକାଶ ହୁଅନ୍ତେ ଅନ୍ଧକାର ଭୂମିରୁ ଅନ୍ଧକାର ଛଡ଼ାଇଅଛି କ (୭) ? ପାତାଳତଳ ଅନ୍ଧକାର ନଖ ଜ୍ୟୋତି ପ୍ରକାଶ କରାଉଅଛନ୍ତି କ ?

---

୧—ସ୍ଫୁରିଅଛନ୍ତି କ 'ଙ'
୨—ସେ ସ୍ତନ ମକରୀରେ
୩—ନକଟେ 'ଖ'
୪—ବିକାର 'ଖ'
୫—ସମସ୍ତଙ୍କର 'ଙ'
୬—ପ୍ରମାଣ କରି ଶୋଅନ୍ତେ 'ଙ'
୭—ଛୁଡ଼ି ଅଛି କ 'ଙ'

ଏମନ୍ତେ ସେ ଲକ୍ଷ୍ମୀଦେବୀ । ସେ ଶ୍ୱେତପଦ୍ମାସନ ହୋଇ, ଶ୍ୱେତ ମଣି ଲାଇ, ଶ୍ୱେତ ପଙ୍କଜମାଳା ଧରି, ଶ୍ୱେତ ପଦ୍ମ ଧରି ଶ୍ୱେତ ବସ୍ତ୍ର ପିନ୍ଧି, ଶ୍ୱେତ ପୁଷ୍ପ କବରୀରେ ବାନ୍ଧି, ଶ୍ୱେତ ଚାମର ମଣ୍ଡି, ଶ୍ୱେତ ଚନ୍ଦନ ଲେପି ହୋଇ ଶ୍ୱେତ ଚାମର ମଣ୍ଡିଲା ରଥରେ ଶ୍ୱେତ ଅଶ୍ୱ ଚାରିଗୋଟା ଯୋଚ ଶ୍ୱେତ ଗଜ ଚାରିଗୋଟା ଚାରି ପାର୍ଶ୍ୱରେ ଶ୍ୱେତ କୁମ୍ଭ ଚାରିଗୋଟା ଧରି ଉଭା ହୋଇଅଛି । ସେ ଘଟ ଚାରିଗୋଟା ଶ୍ୱେତଗଙ୍ଗାଜଳ ଅମୃତ ସହିତ କରି ତ୍ରୈଲୋକ୍ୟ ଚୂଡ଼ାମଣିରେ ଅଭିଷେକ କରାଉଅଛନ୍ତି । ଏମନ୍ତ ହୋଇ ସେ ଲକ୍ଷ୍ମୀ ଦେବୀ ପ୍ରସନ୍ନ ହୋଇ । ସେ କୋକଳାବନ୍ତି କଡରେ ଉଭା ହୋଇଲେ । ବର ମାଗ ବୋଇଲେ । ସେ ମହାଦେବୀ ମହାଲକ୍ଷ୍ମୀର ମୁଖକୁ ଚାହିଁ ସେହିକ୍ଷଣେ ଅଜ୍ଞାନ ହୋଇଲା । ମନକୁ ମୋହିଲା । ତ୍ରୈଲୋକ୍ୟ ଶୋହିଲା । ଆନନ୍ଦେ ବୁଡ଼ିଲା । ସ୍ତ୍ରୀ ପୁରୁଷ ବୋଲି ବାରି ନୋହିଲା । ଆଶ୍ଚର୍ଯ୍ୟ ହୋଇଲା । ମୋହ ଯାଇ ଶୋଇଲା (୧) । ଚାହିଁ ନୋହିଲା । ଅଦୃଶ୍ୟ ଅପୂର୍ବ (୨) ଦେଖିଲା । ସ୍ତ୍ରିରୀ ରୂପକୁ ସ୍ତ୍ରିରୀ ଦେଖି ଢଳିଲା । ଦଣ୍ଡକେ ସଚେତ ହୋଇଲା । କରପଦ୍ମ ଯୋଡ଼ିଲା । ବୋଇଲା ହେ ମାତଃ ! ମୋତେ ଯେବେ ଦେବ ବର । ତୋହର ପ୍ରାପ୍ୟେକ କରି ସନ୍ତତିଏ କର । ଏହା ଶୁଣି ଗୋଷାମଣିଏ (୩) ବୋଇଲେ ହସି । ମୋହର ପରାଏ ହୋଇ ମୁହିଁ ଯେ ଅଛି । ଆରେକ ଅବତାର ପାର୍ବତୀ ଦେହରୁ ଜାତ କରିଅଛି । ସେ ମନୁଷ୍ୟ ରୂପ ହୋଇଅଛି (୪) । ତୋହର ଭକ୍ତିବଳେ ତାହାକୁ ଦେବି ଗୋ ମୃଗାକ୍ଷି । ଏମନ୍ତ ବୋଲି ସେ ଅବିଦ୍ୟା ମୃତସଞ୍ଜିବନୀ (୫) କନ୍ୟାର ହସ୍ତ (୬) ଧରି ପୂର୍ବ କଥା ସୁମରି ବୋଲିଲେ ମୁଁ ଏହାକୁ ଅଛି ଦୁହିତା କରି । ଏ ମୋହର ପ୍ରାଣସରି । ଅନେକ ଯତ୍ନେ ଜନ୍ମ କଲି ଗଉରୀ । ଏହାକୁ ବର ପଣେ ଭଜନ

---

୧—ମୋହକାଲେ ମୋହିଲା 'ଖ'
୨—ଅଦୃଷ୍ଟପୂର୍ବ ରୂପ
୩—ଘୋଷାମଣି 'କ'
୪—ଧରିଅଛୁ 'କ'
୫—ମୃତସଞ୍ଜୀବନୀ 'କ'
୬—ହାତ 'କ'

ଶଙ୍ଖ । ମୁଁ ତୋତେ ଏହାଙ୍କୁ ଦେଲି ଦୁହିତା (୧) କରି । ଏହାଙ୍କୁ ଅନେକ ଯତ୍ନେ ପ୍ରତିପାଳି ଥିବୁ । ମୋତେ ଯେମନ୍ତ ଦେଖୁଁ ତେମନ୍ତ ଦେଖିବୁ । ଏହାର ସକାଶରୁଁ ଅନେକ ଶ୍ରେୟ ପାଇବୁ । ଏ ଅଯୋନି ଜାତ ଅଟଇ । ଏହାର ଅଙ୍ଗସଙ୍ଗ ପାଇବ ଯେ, ଏ ପୃଥିବୀରେ ବିଖ୍ୟାତ ଈଶ୍ୱର ସେ । ଏହାଙ୍କୁ ତୁ ବଳେ ନ କରିବୁ ବିଭା (୨) । ଏହା ଇଚ୍ଛାଏ ଏ ବରିବ ଯାହା । ଅନେକ ରାଜପୁତ୍ର ଆଣି ସ୍ୱୟମ୍ବର କରିବୁ । ଏହା ମନକୁ ନ ଯୋଗାଇଲେ ବାହୁଡ଼ାଇ ଦେବୁ । ଏମନ୍ତ ବୋଲି ସେ କନ୍ୟାଙ୍କୁ ସମର୍ପି ଦେଲେ; ଆଲିଙ୍ଗନ କରି କର୍ଣ୍ଣରେ କହିଲେ । ଶୁଣ ମାତ ! ହାଦେ ଚୈତ୍ର (୩) ଶୁକ୍ଳ ତ୍ରୟୋଦଶୀ (୪) ଦିନରେ ଶ୍ୱେତସରୋବର କୂଳରେ ଯେଉଁ କୁମର ତୋତେ ଦେଖିବ ବିଭ୍ରାନ୍ତ ହୋଇ ଦେଖିବ (୫) ଈଶ୍ୱର କରି ସ୍ତନକୁ ବର୍ଣ୍ଣିବ । ତୋହର ଗଳାରେ ଅମୃତମଣି ଲମ୍ବାଇବ । ସେ ତୋହର ଚକ୍ଷୁକୁ ଖଣ୍ଡେନ୍ଦୁଚୂଡ଼ାମଣି ପ୍ରାପ୍ତେକ ବଳିବ । ସେ ତୋହର ଭର୍ତ୍ତାଟି । ଏଣୁ ନିକଟେ ତାହାଙ୍କୁ ସ୍ୱପନେ ଦେଖିସିନା । ଏବଂଭୂତ ଆଜ୍ଞା ଦେଇ ସେ କନ୍ୟାଙ୍କୁ ରାଜାର ଦୁହିତା ପଣେ (୬) ଥୋଇ । ପରମେଶ୍ୱରଙ୍କ ପାଦପଦ୍ମ ସେବା କରିବାକୁ ଗଲେ ବେଗ ବେଗ (୭) ହୋଇ । ଆକାଶମାର୍ଗେ ବୈକୁଣ୍ଠକୁ ଗଲେ । ଶୁଣ ଯୋଗେନ୍ଦ୍ର (୮) ପୁରୁଷ ହାଦେ ଏମନ୍ତ ହୋଇ ସେ କନ୍ୟା ଅଛୁ ଅବନୀ ତିଳକ (୯) । କଟକରେ ସେ ଧର୍ମଧ୍ୱଜ ରାଜାର ନଗରେ କୋକିଳାବନ୍ତି ପାଟମହିଷୀ ପୁରେ । ବ୍ରହ୍ମା, ଇନ୍ଦ୍ର, ରୁଦ୍ର ଯାହାଙ୍କୁ ନ ପାରିବେ ମୂର୍ଚ୍ଛି ଆଉ ଇତର ଲୋକେ ଛାର କି କଥା ଅଛୁ । ତ୍ରୈଲୋକ୍ୟ

---

୧—ଝିଅ 'କ'
୨—ବିଭା 'ଖ'
୩—ଚଇତ 'କ'
୪—ଚତୁର୍ଦ୍ଦଶୀ 'କ'
୫—ନିରେଖିବ 'କ'
୬—ଦୁହିତା କରି 'କ'
୭—ବ୍ୟଗ୍ର ବ୍ୟଗ୍ର 'କ'
୮—ଯୋଗୀନ୍ଦ୍ର 'କ'
୯—ତିଳେକ 'କ'

ଯାହାଙ୍କୁ ସୁନ୍ଦରପଣେ ନ ଘଟଇ ସେ (୧) ପ୍ରାପ୍ତ ହେବାକୁ ଦୁର୍ଲ୍ଲଭ ଅଟଇ। ସେ ପୁରକୁ ଚନ୍ଦ୍ର ରକ୍ଷା କରଅଛି। ତୁ ଯେ ପଚ୍ଛରିଲୁ ଜଗତ ସୁନ୍ଦରୀ ବିଷୟରେ ସର୍ବାଙ୍କୁ ଶ୍ରେଷ୍ଠ କେ ଅଛି ବୋଲି (୨)। ସେ କଥା ବିସ୍ତାରି କରି ମୁଁ କହିଲି ଯାହା। ଉପାଏ (୩) କରି ଆଣି ପାରିଲେ ଆଣ ତାହା। ଏହା ଶୁଣି ସେ ଇନ୍ଦ୍ରଜାଲିକ ଯୋଗୀ ଅଷ୍ଟ ଐଶ୍ୱର୍ଯ୍ୟ ଭୋଗୀ। ହରଷ ହୋଇଲା। ମିତ୍ରକୁ (୪) ଆଲିଙ୍ଗନ କରି ବୋଇଲା। ମୁଁ ବିନୟ ହୋଇ ବୋଲୁଅଛି (୫) ତୋତେ। ସେ ମନ୍ମଥ ସଞ୍ଜୀବ (୬) ନିଧିକି ପ୍ରାପତ କରି ମୋତେ। ଏମନ୍ତ ବିଶ୍ବର ସେ ଯୋଗୀ ବୋଇଲା। କାମଦେବର ବଶକୁ ଅଇଲା। ଶୀତଳ ନିଶ୍ୱାସ ତପତ (୭) ହୋଇ ବହିଲା। ଭୋକ ନ ରୁଚିଲା। ବାଟ ନ ଦିଶିଲା। ଚନ୍ଦ୍ରରଶ୍ମି ତପତ ଲାଗିଲା। ସକଳ ସିଦ୍ଧି ଭାଗିଲା। ମଳୟ ପବନ ଦହିଲା। କାମବାଣ ସହିଲା। ଶ୍ରବଣ ମାଣିକେ ମୋହିଲା। ସ୍ୱେଦଧାର ବହିଲା। ମନ କନ୍ୟା ଠାଇଁ ରହିଲା। ଅପ୍ରାପତ ପ୍ରାପତ କରି କଳ୍ପିଲା।

ଜଗତପାଳକଙ୍କୁ କନ୍ୟାରୂପ କରି ଦେଖିଲା। ମନ୍ମଥ ଅଗ୍ନି ଲାଗିଲା। ହେଠ ଯୋଗ ଭାଗିଲା। ବନ୍ଧ (୮) ବିନ୍ଦୁ ତରଳିଲା। ଅନୁଗ୍ରହେ ଚନ୍ଦ୍ର ଗଳିଲା। କାମପାଶେ ପଡ଼ିଲା। ଷୋଳ ଉମ୍ବରୁ ସଡ଼ିଲା। ଚକ୍ଷୁ ଉଲଟିଲା (୯)। ହୃଦୟ ଫୁଟିଲା। ଦର୍ପ ତୁଟିଲା। କାଳ ଭେଟିଲା। ଖଗ ଚନ୍ଦ୍ର ଲାଗିଲା। ନିରନ୍ତରେ ମନ୍ମଥ ଜାଗିଲା। ରସପଙ୍କେ ଲାଗି ତା ଦେହ ହୋଇଲା ଷିନ୍ନ। ଅଙ୍ଗମାନ କି କାମଦେବ କରୁଅଛି ଭିନ୍ନ। ଏବଂଭୂତ ବିରହ

---

୧—ଏ 'କ'
୨—ତୁ ଯେ ପଚ୍ଛରିଲୁ ସେ କନ୍ୟାର କଥା 'କ'
୩—ଉପାୟ ବଳେ କରି 'କ'
୪—ମିତ୍ରକୁ 'କ'
୫—ମୁଁ ବିନୟ ହେଉଅଛି
୬—ସଜୀବ 'କ'
୭—ତପ୍ତ
୮—ବିନ୍ଦୁ 'କ'
୯—ଲେଉଟିଲା 'ଖ'

ଅବସ୍ଥା ପାଇ ସେ ଅମଳ ଖେଚର ନାମକ ଭୂତକୁ ବୋଇଲା । ହେ ସଖା ! ସେ କନ୍ୟା ଯେବେ ଅଛି ତହିଁ । ଆମ୍ଭର ଏଥି କି କାର୍ଯ୍ୟ ହେବ ରହୁ । ସେ କଟକକୁ ବୋଲି ବେଗ ଯିବା । ଚଣ୍ଡକୁ ଅବଜ୍ଞା କରି କନ୍ୟାକୁ ହରି ଆଣିବା । ଏ ଗନ୍ଧର୍ବ କନ୍ୟାଠ କନ୍ୟାହୁଁ ବଡ଼ ନୋହୋଇ । ଏମନ୍ତ ବିଗୁରି ସେ ଯୋଗୀ କଣ୍ଠାସ ବାରି, ପିବାର ଲଗ୍ନ ବିଗୁରି, କାକଚରିତ ଆଚରି, ଜଳନ୍ଧରୀ ଖଡ଼୍ଗ ସୁମରି, ବେତାଳ-ମାନଙ୍କ ହକାରି ଆଜ୍ଞା ଦେଲ । ଅବମାଡଳକ କଟକକୁ (୧) କଢ଼ାଅ ବୋଲି ବୋଇଲ । ଶଙ୍ଖନାଦ (୨) ବାଇଲ । ଜାଳନ୍ଧରୀ ବିଦ୍ୟାରେ କରି ରଥ ଗୋଟିଏ କରି ସାଜଲ (୩) । ସେ ରଥ ସୁଦ୍ଧସ୍ଫଟିକର ପ୍ରାୟେ ଦିଶଇ । ରଥ-ଧ୍ୱଜ ପତାକାରେ ବିଜୁଳି ତେଜ ମିଶଇ । ଗୃରଚକ ଧୂମ୍ରବର୍ଣ୍ଣ (୪) ଦିଶଇ । ଚଥଦଣ୍ଡରେ (୫) କି ନିର୍ଧୂମ ଅଗ୍ନି ପ୍ରକାଶଇ । କୁହୁଡ଼ି ମେଘଖଣ୍ଡ ପ୍ରାୟେକ ସେ ରଥ ଦିଶଇ । ଧ୍ୱନି ମେଘର ଗର୍ଜ୍ଜନ ପ୍ରାୟେକ ଶୁଭଇ । ସେ ରଥେ ସହସ୍ରେ ପିଶାଚ (୬) ଯୋଚଲ ଅଛି ।

ସେମାନେ କେ ଉଷ୍ଟ ମୁଖ, କେ ବ୍ୟାଘ୍ର ମୁଖ, କେ ଶୃଗାଳ ମୁଖ, କେ ଶକୁନ ମୁଖ । କେ ବିଡ଼ାଳ ମୁଖ । କେ କାକ ମୁଖ । କେ ଅଶ୍ୱ ମୁଖ । କେ ଗୋ ମୁଖ । ଏମନ୍ତ ହୋଇ ସେ ପିଶାଚୀମାନେ (୭) ରଥ ବହୁ ଅଛନ୍ତି । ଏମନ୍ତେ ସେ ଯୋଗୀ ବାୟୁ, ମାହେନ୍ଦ୍ର, ଅଗ୍ନି, ବାରୁଣି ଗୃରବେଳ ବିଗୁରି । ବାରୁଣି ବେଳେ ଭୈରବ ସୁମରି ରଥରେ ବସିଲ । ମନେ ମନେ ହସିଲ । ଭୂତଗଣେ ବେଷ୍ଟିତ ହୋଇ ରୁଦ୍ର ପ୍ରାୟେକ ଦିଶିଲ । ଏମନ୍ତେ ସେ କଟକକୁ ଗମନ କରି ଯାଆନ୍ତେ । ଆଗେ ହୋଇଛନ୍ତି ଭୂତମାନେ ମେଘ ମଣ୍ଡଳର ପ୍ରାୟେ ଖଣ୍ଡ ଖଣ୍ଡ ହୋଇ ଧୂମ୍ରବର୍ଣ୍ଣ ହୋଇ ହାତରେ ଗୋରୁ-ହାଡ଼ମାନଙ୍କ ଘେନି ଅଛନ୍ତି । ଘୋର ଧ୍ୱନିରେ ରଡ଼ୁ ଅଛନ୍ତି । ଗଗନ-

---

୧—ପୃଥ୍ୱୀ ମୁଖ ଛଲକୁ 'କ'
୨ – ସିଂହନାଦ 'କ'
୩ – ଚଲପିଲ 'କ'
୪ – ଧୂମ୍ରମସ୍ତ 'ଖ'
୫ – ରଥ ଭିତରେ 'କ'
୬ – ପିଶାଚ 'କ'
୭—ପିଶାଚ 'କ'

ମାର୍ଗେ ଉଡ଼ୁ ଅଛନ୍ତି । ପଥୁକମାନଙ୍କୁ ଲାଗୁ ଅଛନ୍ତି । ପଣା ପଏଡ଼ ମାଗୁ ଅଛନ୍ତି । କାହାକୁ ଜଳେ ବୁଡ଼ାଉ ଅଛନ୍ତି । ଧୋବାଭୁତମାନନ୍ତ ଉଡ଼ାଉ ଅଛନ୍ତି । ବାଳକ ପୁଅମାନଙ୍କୁ ଲାଗୁ ଅଛନ୍ତି । ତାହାଙ୍କ ପଛେ ପଛେ ଅମୋଘ ପ୍ରେତମାନେ ଗୋଡ଼ାଉ ଅଛନ୍ତି । ଏମାନେ ତେର ହାତ ଉଚ ଅଟନ୍ତି । ସୂଚୀ ମୁଖ ଅଟନ୍ତି । ରୁଦ୍ର ପ୍ରମାଣେ ପେଟ ଅଟନ୍ତି । ସେମାନେ ନିରନ୍ତରେ ତୃଷାର୍ତ୍ତି ହେଉଅଛନ୍ତି । ଏମାନଙ୍କୁ ଯୋଗୀ ଆଜ୍ଞା ପ୍ରମାଣେ ସମାନାମେ ଚଣ୍ଡ ପାଣିମାନ ବନ୍ଧ ନିରନ୍ତରେ ଦେଉଅଛନ୍ତି । ସେ ସୈନ୍ୟଯାକକୁ ସେ ପାଣି ଦେଇ । ତାହାରେ ସେ ଏକା ପାଣିମାନନ୍ତ ଦେଇ ହୋଇ । ତଦନନ୍ତରେ ପିଶାଚମାନେ ଚାଲୁ ଅଛନ୍ତି । ଏକେ ଆରକେ ବୁଲୁ ଅଛନ୍ତି । ହସ୍ତୀର ପ୍ରାୟେ ଝୁଲୁ ଅଛନ୍ତି, ମର୍କଟର ପ୍ରାୟ ଲୀଳା କରୁ ଅଛନ୍ତି । ଖାଦ୍ୟ ପଦାର୍ଥ ତ୍ୱରିତ ହରୁ ଅଛନ୍ତି । ତଦନନ୍ତରେ ବେତାଳମାନେ ହାତରେ ଲୁହା ବାଡ଼ି ଗୋଟାଏ ଗୋଟାଏ ଘେନି ପର୍ବତ ପ୍ରାୟେକ ହୋଇ ଚାଲିଅଛନ୍ତି ।

ଏଙ୍କୁ ଆରକ ବୁଲୁ ଅଛନ୍ତି । ତଦନ୍ତରେ ଚଣ୍ଡମାନ ଚାଲିଅଛନ୍ତି । ସବୁର ପଛରେ ଚଉଷଷ୍ଠୀ ଯୋଗିନୀମାନେ ପରିବାର ବାହନ ସହିତ ହୋଇ ଅଛନ୍ତି । ଦୁଇ ପାରୁଶରେ ଚାମର ଧରିଅଛନ୍ତି । ଭୂତ ସେନାପତି ସେ ଅନଳ ଖେଚର ଗୋଟାଏ ବଡ଼ ଅଶ୍ୱ ସଜକରି ତାହାର ଉପରେ ବସିଅଛି । କେଉଁ ବେତାଳମାନେ ହାତିମାନ ବନରୁ ଧରିଆଣି ତା ଉପରେ ବସି ଅଛନ୍ତି । ଏମନ୍ତେ ଭାରିଯା ନାମ ଡ୍ରାକ୍ଷିଣୀ (୧) କୋଳରେ ଧରି ସିଂହ-ନାଦ କରି ପାର୍ବଣି ସହିତ ରୁଦ୍ର ପ୍ରାୟ ହୋଇ ଯାଉଅଛି । ମହାଭୈରବୀ ଚଣ୍ଡୀମାତୃକା ସହିତ ହୋଇ ସାଙ୍ଗେ ସାଙ୍ଗେ ଆସୁଅଛନ୍ତି । ଭୂତ ପ୍ରେତମାନେ ଡାକୁ ଅଛନ୍ତି । ଏମନ୍ତେ ସେ ଐନ୍ଦ୍ରଜାଳିକ ଯୋଗେଶ୍ୱର ପୁରୁଷ ଗମନ କରିଯାନ୍ତେ ପିଶାଚଗଣମାନ ଖେଁ ଖେଁ ଧ୍ୱନି କରନ୍ତେ ଭୂତମାନେ ଫେଁ ଫେଁ କରନ୍ତେ, ବେତାଳମାନେ ସିଂହନାଦ ବଜାନ୍ତେ, ଚଣ୍ଡମାନେ ରେ ରେ କାର ଗର୍ଜନ୍ତେ, ଯୋଗିନୀମାନେ ହୁଁକାରେ ଉଡ଼ି ପାଡନ୍ତେ ଡାକମାନେ ଡାକନ୍ତେ, ସମୁଦ୍ର ମନ୍ଥନର ପ୍ରାୟ ଶୁଭୁଅଛି । କି ଗଗନେ ଗନ୍ଧର୍ବ ନଗରେ ମିଶୁ ଅଛନ୍ତି, କି ନାନାବର୍ଣ୍ଣ ମେଘପଟଳ ପବନେ କରି

---

୧—ଯକ୍ଷିଣୀ '୬'

ଚଳୁଅଛନ୍ତି । ହିତଶ୍ରୀ ସମୁଦ୍ର ମନ୍ଥନ କରନ୍ତେ ପ୍ରଚଣ୍ଡ ଲକ୍ଷ୍ମୀ ଉପୁଜୁଅଛି । ଏବଂ ଭୂତ ପ୍ରକାରେ ଗମନ କରନ୍ତେ ଭୂତସେନାପତି ଅନଳଖେଚର, ପ୍ରେତ ସେନାପତି ଅସୃଖ୍ୟ କାପାଳିକ । ମଞ୍ଜ ସେନାପତି ଜାଡ଼ୁ ମଲ୍ଲ । ଚଣ୍ଡି ସେନାପତି ଭୈରମୁଣ୍ଡ । ବେତାଳ ସେନାପତି କାଳକଳ୍ପ । ପିଶାଚ ସେନାପତି କପିଳ ପୈଶୁନ । ବୀର ସେନାପତି ଧୂମ୍ରଶିଖ । ଯକ୍ଷ ସେନାପତି ମଣିଭଦ୍ର । ବ୍ରହ୍ମଦୈତ୍ୟ ସେନାପତି ରକ୍ତାକ୍ଷ । ଗୁହ୍ୟକ ସେନାପତି କାନ୍ତ ମୁଖ । ଡାକିଣୀ ସେନାପତି ଶିବା ମୁଖ । ମାତୃକା ସେନାପତି ମାୟାସମ୍ଭବୀ ଇତ୍ୟାଦି କରି ସମସ୍ତେ ମୁଖରବ ଧ୍ୱନି କରି ବୀର ବେତାଳମାନେ ବାହନ ପରିବାରୀ ସଜ୍ଜିତାଦି କରି ବେନି ପାର୍ଶ୍ୱରେ ଗମନ କରୁଅଛନ୍ତି । ଗଗନମାର୍ଗେ ଭ୍ରମୁ ଅଛନ୍ତି । ଆକାଶରେ ଡେଇଁ ବିହରମୁ ଅଛନ୍ତି । ଡାକିନୀମାନଙ୍କୁ ଧରି ଅଛନ୍ତି । କଳ ପୋଷାଏ ଭରିଅଛନ୍ତି । ଏମନ୍ତେ ସେ ଐନ୍ଦ୍ରଜାଳିକ ସେନା ଘେନି ଯାଆନ୍ତେ, ଅବନୀମୁଖ ତିଳକ କଟକରେ ପ୍ରବେଶ ହୋଇଲେ । ସପତ ଦିବସ ଅନ୍ତେ । ସେ କଟକ କୋଣେ ଥାଇଁ ରମ୍ୟସ୍ଥାନ ଦେଖି ରହିଲେ ।

ଉତ୍ତମ ନଦୀତଟେ ଆମ୍ର ବନେକ ଅଛି, ସେ ବନ ଭିତରେ ହୋଇ ରକ୍ତପ୍ରିୟା ଡାକିଣୀଙ୍କ ଆଜ୍ଞା ଦେଇ, ପୁରି ଗୋଟିଏ ଉଆଇ ଅର୍ଣ୍ଣଚୂର୍ଣ୍ଣୀ ମନ୍ତ୍ର ଦ୍ୱାରେ, କଳ୍ପ ଚନ୍ତାମଣି ବିଦ୍ୟାରେ ଭରି । ଭୋଗାଦି ପଦାର୍ଥମାନ ଉପେକ୍ଷ ହୋଇଲା । ସେ ଭୂତମାନଙ୍କ ବଳୀ ପ୍ରେତମାନଙ୍କ ପଯ୍ୟାଞ୍ଜଳି, ଚଣ୍ଡମାନଙ୍କ କୁଡ଼ କୁଡ଼ କରି, ବେତାଳମାନଙ୍କ ଖଣ୍ଡକ୍ଷୀର ଭରି ପିଶାଚ ବ୍ରହ୍ମରାକ୍ଷସମାନଙ୍କ ମାଂସମାନ ପୋଡ଼ି, ମଲ୍ଲବୀରମାନଙ୍କ ମଦିରରେ ଭରି । ଯୋଗିନୀମାନଙ୍କ ମଣ୍ଡଳବଳୀ କରି, ଅନ୍ନ ବ୍ୟଞ୍ଜନ ସମସ୍ତେ ତହିଁ ଖାଇଲେ । ନସ ଦିନ ତହିଁ ସୁସ୍ଥ ହୋଇ ରହିଲେ । କଙ୍କାଳମୁଖୀ ବେତାଳକୁ ହକାରି ଗୁପ୍ତକରି ପଠିଆଇଲେ । ସେ ବେତାଳକୁ ଅଜ୍ଞା ହୋଇଲା । ତୁ ଧାତ୍ରିକାରେ ଯିବୁ । ସୂକ୍ଷ୍ମ ଭାବେ ଯାଇଁ (୧) ପ୍ରବେଶ ହୋଇବୁ । ବଳାବଳ ଦୃଶ୍ୟାଦୃଶ୍ୟ ହାନିଲାଭ ପନ୍ଥାପନ୍ଥ କନ୍ୟା ଥିବା ଭୂମି ମଣି ଆସିବୁ । ସେ ଯୋଗେନ୍ଦ୍ରର ଆଜ୍ଞା ପାଇ, ସେ ବେତାଳ ହରଷ ହୋଇ, ବିଡ଼ାଳ ବେଶ ଧରି, ଉଲୂକ ବିଦ୍ୟାରେ କରି, ସେ କଟକେ

---

୧—ଅନ୍ତେଶ୍ବରେ ଯାଇ 'ଖ'

ପ୍ରବେଶ ହୋଇଲି । ସମସ୍ତ କଥାମାନ ଜାଣି ଅନ୍ତେଶ୍ୱରେ ମିଳିଲି । ଦ୍ୱାରମାନ ଜଣି କନ୍ୟାରୂପ ଦେଖିଲି ସହୁଁ । ସେହିକ୍ଷଣି ମୋହ ଯାଇ ପଡ଼ିଲି ତହୁଁ । ଦଣ୍ଡକେ ଚେତା ପାଇ ଧୈର୍ଯ୍ୟ ହୋଇ ବୋଇଲି । ଆହୋ ଦୂତି ପାର୍ବଣି ତ ଏ । ଏ କନ୍ୟା ପୃଥ୍ୱୀକି ଧନ୍ୟ ଧନ୍ୟ । ସମସ୍ତ ଭୋଗେ ଭୋଗୀ । ଏହାପାଇଁ କମ୍ପା ନମରବ ଯୋଗୀ । ଏମନ୍ତ ବିଚାରି, ସେ ନଗର ଭିତରେ ରହିଲି ଦିନାଗୃହ । ଭଲ ପଦାର୍ଥମାନ ମଞ୍ଜାଣି ରୂପେ ଖାଇଲି । କନ୍ୟାର ସକଳ ଚେଷ୍ଟାମାନ ମଣିଲି । ଏମନ୍ତେ ସକଳ କଥାମାନନ୍ତ ବୁଝିଲି ।

ପଞ୍ଚ ଦିବସ ଭିତରେ ଯୋଗୀ ସ୍ୱାମୁରେ ମିଳିଲି । କରପବ ଯୋଡ଼ି ବୋଇଲି । ହେ ନାଥ ! ତୋହର ଆଜ୍ଞା ପ୍ରମାଣେ ଗଲି । ଗୁପ୍ତ ରୂପ ଧରି ନଗରେ ପ୍ରବେଶ ହୋଇଲି । ନିରନ୍ତରେ ରଥ ଗଜ ଅଶ୍ୱରେ ପୂର୍ଣ୍ଣ, ଯୋଦ୍ଧା ରଥୀ ମହାରଥୀରେ ପୂର୍ଣ୍ଣ, ସମୁଦ୍ର ପ୍ରାୟେ କଟକ ଶୋଭା ପାଉଅଛି । ପଞ୍ଚଶବ୍ଦ ଭେରୀ ବାଜୁଅଛି । ହାଟ ଫେଣୁମାନ ପରମଳ ଅଟଇ । ରାଜମାର୍ଗେ ଲତମ୍ବିନୀ ସ୍ତ୍ରୀମାନେ ରାଜହଂସୀ ପ୍ରାୟେକ ଗମନେ ଶୋଭା ପାଉଅଛନ୍ତି । ନଗର ଭିତରେ ପଶିବାକୁ ବହୁତ ଲୋକମାନେ ରକ୍ଷୀ ଅଛନ୍ତି । ପ୍ରଥମ ସିଂହଦ୍ୱାରେ ଚତୁର୍ଦ୍ଦଂଷ୍ଟ୍ର । କେବଣ ଦ୍ୱାରେ ହସ୍ତୀମାନ ହୋଉଅଛି । ଶ୍ୱେତବର୍ଣ୍ଣ ପର୍ବତ ଶୃଙ୍ଗ ପ୍ରାୟେକ ଦଶ ସହସ୍ର ମତ୍ତଗଜ ସେ ଦ୍ୱାରେ ଅଛନ୍ତି । ତାହାଙ୍କର ମଦଧାରମାନ ପଡ଼ିବାରୁ କରି ପଥ ପିଚ୍ଛିଳ ହୋଉଅଛି । ପୁଣି ସେ ଦ୍ୱାରେ ବାୟୁ ବେଗ ଅଶ୍ୱେ ଅଛନ୍ତି । ଆର ଦ୍ୱାରେ ଅମନାତ୍ୟେ ଅଛନ୍ତି । କାହିଁ ରଥ ଘର ଛଅ ଆକାର, କାହିଁ ଦିବ୍ୟଘର, ସହସ୍ରଘର, ହେମ ଘର । ଏଣେକରି ପୁରୁଷ କୃତ ହେଉଅଛି ଉତ୍ତମ ବଳ ଗୋଟାଏ ନଗର ରକ୍ଷା କରିଛନ୍ତି । ମୁହିଁ କଷ୍ଟେ କଷ୍ଟେ ଭିତରେ ପଶିଲି । ଅନ୍ତପୁରେ ପ୍ରବେଶ ହୋଇଲି । ତହିଁ ସେ କନ୍ୟା ଅଛି । ତାହାକୁ ଦେଖିଲେ ଇନ୍ଦ୍ର, ବ୍ରହ୍ମା, ରୁଦ୍ର, ନ ଯାଇବେ ମୂର୍ଚ୍ଛି । ମୁହିଁ ତା ମୁଖ ଦେଖିବା ମାତ୍ରକେ କାମଶର ଅଜ୍ଞାନ କଲି । କନ୍ୟାର ଅପାଙ୍ଗ ଅଗ୍ନିରେ ଘୃତ ଖଣ୍ଡ ପ୍ରାୟେକ ହୋଇ ତରଳି ମରୁଥିଲି । କଷ୍ଟେ କଷ୍ଟେ ପ୍ରାଣ ପାଇ ଜିଇ ଅଇଲି । ସେ କନ୍ୟା ସ୍ୱପ୍ନେ ଏକ ଦିନେକ ଦିବ୍ୟ ପୁରୁଷେକ ଦେଖିଲା । ଦେଖି ଅତ୍ୟନ୍ତ ବିରହ ହୋଇଲା । ତାହାର ସଖୀ ଯେ ଚନ୍ଦ୍ରବତୀ ସେ ମନ୍ତ୍ରୀ ଦୁହିତା । ସେ ତାହାକୁ ସକଳ ଭୁବନ

ଯୁବାମାନଙ୍କୁ କହିଲା । ଚିତ୍ରପଟ ଚିହ୍ନ ଦେଖାଇଲା । କାହାର ରୂପକୁ ନ ଭଜିଲା ସହୁଁ । ରୁଦ୍ର ସୁଧାନିଧି କୁମରକୁ ଚିତ୍ରପଟେ ଚିହ୍ନ ଦେଖାଇଲା ତହୁଁ ।

ସେ କୁମରକୁ ଦେଖି ଲଜ୍ଜାପାଇ କନ୍ୟା ମଥା ପୋତିଲା । ହରଷ ହୋଇଲା । ଏହି ସେ ପ୍ରାଣେଶ୍ୱର ମୋହର ବୋଲି ବୋଇଲା । ଶୁଦ୍ଧସ୍ଫଟିକ କାନ୍ଥରେ ମୃଗନାଭି କସ୍ତୁରୀ ଦେଇ କୁମରକୁ ଚିହ୍ନି ନିରନ୍ତରେ ଲେଖୁଥାଇ । ଆନକଥାରେ ରସନପାଇ । ସ୍ତନ ମଣ୍ଡଳର ମଧ୍ୟେ ତାହାକୁ ଆରୋପି ଉପବେଶ କରୁଥାଇ । ମନେ ମନେ ଆଲିଙ୍ଗନ କରୁଥାଇ । ସଖୀମାନେ ନିବର୍ତ୍ତ କରାଇ ବୋଧୁଥାନ୍ତି । ତାହାର ମନଜ୍ଞାନ ସ୍ୱପ୍ନ ବୁଦ୍ଧି ରୁଦ୍ର ସୁଧାନିଧି ତହିଁ ସେ ଥାଇ । ଏତେବେଳେ ସଙ୍କେ କଥା ଏମନ୍ତ । ଏବେ ଉପରକୁ କାର୍ଯ୍ୟ ବିଚାର କରିବା ଯେମନ୍ତ । ଏ ବଚନ କହିବା ମାତ୍ରକେ କାମାନନ୍ଦ ଯୋଗୀର ବିରହ ବାଧା ଦ୍ୱିଗୁଣ ହୋଇଲା । ଅଗ୍ନି ରାଶି ଯେମନ୍ତ ଘୃତଧାରା ପାଇଲା । ଅତି ଆକୁଳ ହୋଇ କାମ ପୀଡ଼ା ପାଇ ସେନାପତି-ମାନଙ୍କୁ ଦେଇ ବିଚାରୁଅଛୁ । କିସ ଉପାୟେ କରିବା । ଏମନ୍ତ ଶୁଣି ଜଣେ ବୋଇଲା ବଳେ ଆଣିବା । ଆରେକ ବୋଇଲା ଧନ ଦେଇ କିଣି ଆଣିବା । କେ ବୋଇଲା ଭେଳିକ ଲଗାଇବା । କେ ବୋଇଲା ରାଜାକୁ ଲଗିବା କନ୍ୟାଦାନ ମାଗିବା । କେ ବୋଇଲା ନଗ୍ର ପୋଡ଼ିବା । କେ ବୋଇଲା ବାଳକଙ୍କୁ ଲଗିବା । କେ ବୋଇଲା ମୋହନ କରିବା । ଉଲୂକ ବିଦ୍ୟାରେ କରି ଖଟ ସହିତେ ମୁଣ୍ଡି ଆଇ ଆଣିବା । କେ ବୋଲଇ କୁହୁକ କରିବା । କେ ବୋଇଲା ଇନ୍ଦ୍ରଜାଲ ଦେଖାଇବା । କେ ବୋଇଲା ମହାଦେବୀଙ୍କ ଲଗିବା । ସମସ୍ତ ଲୋକଙ୍କୁ ଘଉଡ଼ାଇ ଦେଇ ସେ କନ୍ୟା ଆଣିବା । କେ ବୋଲଇ ଅନ୍ଧକାର କରିବା । କରି ଖଟ ମୁଣ୍ଡି ଆଇ ଆଣିବା । କେ ବୋଇଲା ମହାଦେବୀଙ୍କ ଅବତାର କରିବ । ସେ ସୁକେଶୀକ ତୋ ସାଙ୍ଗେ ସମକରାଇବ । ଡାକିଣୀମାନେ ବୋଇଲେ ଆଣି ମୁଁ ମୋହି । ତାହାର ଇଚ୍ଛାଏ ଆସିବ ଏକା ହୋଇ । ଅନଳକେତେର ବୋଇଲା ମୁଁ ପବନ ସ୍ୱରୂପ ହୋଇ କଟକଯାକ ଦେବି ଉଡ଼ାଇ । କଙ୍କାଳ ମୁଖ ଏକା ମୋହର ସଙ୍ଗତେ ଥିବ । ଉଡ଼ୁ ଉଡ଼ୁ କନ୍ୟାକୁ ଧରି ଆଣିବ । ଏବଂଭୂତ ବିଚାର କରନ୍ତେ ଭୂତମାନେ ବୋଇଲେ କମ୍ପାଉ ଆନଧରୁ । କଟକଯାକ ଆମ୍ଭେ ମୁଣ୍ଡି ଆଇ ଆଣି

ପାରୁଁ । ଚଣ୍ଡମାନେ ବୋଇଲେ ଆମ୍ଭେ ଯୁଦ୍ଧ କରିବୁଁ । ଶର ସନ୍ଧାନ କରି ସେ କନ୍ୟାକୁ ଆଣିମୁଁ । ଯୋଗୀ ବୋଇଲା ବ୍ରହ୍ମଦୈତ୍ୟ ଜଣେ ପଠିଆଇବା । ସେ କନ୍ୟାକୁ ଲାଗୁ । କାହାର ବୋଲେ ନଗୁଣ୍ଡୁ । ଆମ୍ଭେ ରାଉଳ ପଣେ ଯିବୁଁ । ସତ୍ୟ କରାଇ ସେ କନ୍ୟାକୁ ଆଣି ମୁଁ । ସ୍ୱଦଣ୍ଡ କ ସେ ସମର୍ପି ଦେଲେ । ଏ ବ୍ରହ୍ମରାକ୍ଷସ ଆସିବ ଆମ୍ଭରଭୁଲେ । ନୋହିଲେ ବୋଲବୁ ହେନମି ପ୍ରାଣ । ଏହି ବଚନର ସେ ଅଟଇ ପ୍ରମାଣ । ଏମନ୍ତ ବଚନର ସେ ଭୂତ ସୈନ୍ୟକୁ ପେଷିଦେଲା । ବାର ସହସ୍ର ଆଠଶ ଭୂତ ଗଣିତା ହୋଇଲା । ସେ ଭୂତମାନଙ୍କୁ ଆଜ୍ଞାଦେଲା । ତୁମ୍ଭେ ଅନ୍ତପୁରମାନଙ୍କୁ ଲାଗ ବୋଇଲା । ଥୋକାଏ ଲାଗିବ ଅନ୍ୟନ୍ତ-ମାନଙ୍କୁ । ଥୋକାଏ ଲାଗିବ ଜନ ପ୍ରଜାଙ୍କୁ । ବେତାଳମାନଙ୍କୁ ବୋଇଲା ହସି । ତୁମ୍ଭେ ହସ୍ତୀ ଘୋଡ଼ା ପେଲ୍ହିଦିଅ ପଶି । ଚଣ୍ଡମାନଙ୍କୁ ବୋଇଲା ତୁମ୍ଭେ ଯିବ । ନଗ୍ରଆହାନ୍ତେ ଅଗ୍ନି ଜାଳିବ । ପିଶାଚମାନଙ୍କୁ ଉଆର କହିଲା । ବାଳ ପୁଅମାନଙ୍କୁ ଉରଅ ବୋଇଲା । ଯୋଗିନିମାନଙ୍କୁ ଆଜ୍ଞା ଦେଲା ରାଇ । ଅନ୍ତରୀକ୍ଷେ ଧ୍ୱନିକରିବ ଚମତ୍କାର ହୋଇ । ଉପସର୍ପନାମ ଡାକିଣୀ କ ବୋଇଲା ତୁ ଯିବୁ ହାତୀ ଘୋଡ଼ା ସୈନ୍ୟ ହରି ଆଣିବୁ । ବେତାଳମାନଙ୍କୁ ବୋଇଲା ତୁମ୍ଭେ ଅଦୃଶ୍ୟ ହୋଇବ । ଅନ୍ତେଶ୍ୱର ପୂରଯାକ ବୁଲୁଥିବ । ସହସ୍ର ସହସ୍ର ହୋଇ ଭୟ କରାଇବ । ଖାଇବ ନାହିଁ । ଅନଳ ଖେଚର ଭୂତକୁ ବୋଇଲା । ତୁ ବେଗେ ପବନ ରୂପ ହୋଇବୁ । ତୁଳା ପରାଏ କରି କନ୍ୟାକୁ ଉଡ଼ାଇ ଆଣିବୁ । ଉଗ୍ରଚଣ୍ଡି ମୁଖକୁ ବୋଇଲା ତୁ ଥିବୁ ଲୁକ । ଏ ରୋଳମାନ ହୋଇଲେ ମୋତେ ନେବୁ ଡାକ । ବ୍ରହ୍ମକୁମାର ଚଣ୍ଡକୁ ବୋଇଲା । ତୁ ଏହିକ୍ଷଣି ଯିବୁ । କାହାର ଘରେ ଚୂଲି ଜାଳ ନ ଦେବୁ । ଶକୁନକ ବୋଇଲା ଧାତକାରେ ଯିବୁ ଧାଇଁ । ପାଣି କୁମ୍ଭମାନଙ୍କୁ ଦେବୁ ଜଳରେ ବୁଡ଼ାଇ । ସୂଚୀ ମୁଖକୁ ବୋଇଲା ସୂଚୀ ମୁଖେ ହାଣ୍ଡି କଣା କରିବୁ । ବେଳ ପଡ଼ିଲେ ସେ କନ୍ୟାକୁ ଆଣିବୁ । ସାଗୁଣି ଚଣ୍ଡୀକୁ ବୋଇଲା ସହସ୍ର ସହସ୍ର ସାଗୁଣା ହୋଇ କଟକରେ ଉଡ଼ୁଥିବୁ । ଚିଲ ଯେମନ୍ତ ମାଂସ ହେନି ଯାଇ ଝାମ୍ପି । ତୁହି ବେଳ ପଡ଼ିଲେ କନ୍ୟାକୁ ଆଣିବୁ ଚାମ୍ପି । ଘରଜାନାମ ଡାକିଣୀକ ବୋଇଲା । ତୁ ଯିବୁ । କନ୍ଦରୁ ତାହାର ଲକ୍ଷ୍ମୀ ହରି ଆଣିବୁ । ଜାଡ଼ୁ ସଙ୍ଖକୁ ହକାରି ଦେଲା ଉପଦେଶ । ରାଜାର ହୃଦପୂରେ ଯାଇ ହୋଇବୁ ତୁ ପ୍ରବେଶ । ପ୍ରେତମାନଙ୍କୁ ବୋଇଲା ତୁମ୍ଭେମାନେ ଯିବ ।

କନ୍ୟା ପ୍ରାପତ ହୋଇବା ପାଏ ଭୟ ଦେଖାଉଥିବ । ସୁବୁଦ୍ଧି ଭ୍ରାନ୍ତମାନେ ହେଉଥିବେ ଚଉରେ । ଗୋରୁହାଣ୍ଡିମାନ ମାରୁଥିବ ନଚେତ୍ୟ । ଶୃଗାଳ ମୁଖୀ ଚଣ୍ଡିକୁ ବୋଇଲ, ତୁହାଦେ ଘାଲୁ ସ୍ୱରୂପ ହୋଇବୁ । ନଗର ଗୃହ ଘାରୁଣରେ ଭୟ ଦେଖାଇବୁ । ଇଷ୍ଟପଦ ମାତୃକାମାନଙ୍କୁ ଆଜ୍ଞାଦେଲା । କନ୍ୟା ନୀଡ଼ା ନଘରେ ରନ୍ ଜଡ଼ିତ ହୋଇ ନାବ ସ୍ୱରୂପେ ଥିବୁ । କନ୍ୟା ବସିଲେ ବୁଡ଼ାଇ ଆଣିବୁ । ଚଉଷଷ୍ଠୀ ଯୋଗିନୀଙ୍କ ବୋଇଲା ହର୍ଷେ । କନ୍ୟାର ଚୋଟାପୁରେ ତୁମ୍ଭେ ମଣ୍ଡପ ହୋଇଥିବ । ମଣ୍ଡପେ ବସିଲେ କନ୍ୟା ଉଡ଼ାଇ ଆଣିବ ଆକାଶେ । ଏମନ୍ତ ପ୍ରକାରେ ଉପାୟମାନ ସମସ୍ତଙ୍କୁ ଦେଇ । ତୁନି ହୋଇ ରହିଲା ସେ କନ୍ୟାକୁ ଚଉରେ ଧ୍ୟାୟି । ସେ ଯୋଗୀର ଆଜ୍ଞା ପ୍ରମାଣେ ସମସ୍ତେ ହେଁ ଗଲେ । କଟକ ଗୋଟାରେ ପଶି ଅରିଷ୍ଟ ଉତ୍ପାତ ଭୟ ଗୋଳମାଳମାନ ଜାତ କଲେ । ଅନ୍ତପୁର ଗୋଳ ସବୁହିଁ ହେଲା । ବାହାରେ ଏକଘର ସ୍ତୁଡ଼ ଆରକ ପଳାଇଲା । ହାତୀମାନେ ଫିଟି ବୁଲିଲେ ଦାଣ୍ଡେ । ଉଲଗ୍ନ ହୋଇଲେ ସ୍ତିରୀମାନେ ବସନ ବାନ୍ଧିଲେ ମୁଣ୍ଡେ । ବାଳପୁଅମାନେ ନିରନ୍ତରେ ରଡ଼ିଲେ । ଧ୍ୱଜ ପତାକାମାନ ଛିଣ୍ଡି ପଡ଼ିଲେ । କେବଣ ଲୋକମାନେ ଭୂମିରେ ଗଡ଼ିଲେ । କାକ ଶଗାଳମାନ ନିରନ୍ତରେ ଉଡ଼ିଲେ । କେଉଁଆଡ଼େ ସୈନ୍ୟବଳ ଦିଶଇ । କେଉଁଆଡ଼େ ଅନ୍ଧକାର ମିଶାଇ । କେଉଁଆଡ଼େ ସର୍ପେ ପୂରିଲେ । ସ୍ୱର କଡରେ ବୋବାଳ ପାଡ଼ିଲେ । ସ୍ତିରୀମାନେ ଅବତାର ହୋଇଲେ । ନଗର ଭିତରେ ଅଗ୍ନି ଲାଗିବ ବୋଇଲେ । ଯେବଣ ଅମନାତ୍ୟମାନେ ଭଲକରି ଲୋଡ଼ନ୍ତି । ତାହାର ବାଳ ଧରି ବେତାଳମାନେ ପାଡ଼ନ୍ତି । କଉଁ ଭୂତମାନେ ଗୋରୁ ହ୍ରାସ୍ୟେ ହୋଇ ରଡ଼ି ଛାଡ଼ନ୍ତି । ସୁନ୍ଦରୀମାନଙ୍କୁ ବିବସ୍ତ୍ରେ ଉପଭୋଗ କରନ୍ତି । ହୁଙ୍କାର ମୁଖ ନାଦଛାଡ଼ିବାର ଶବଦ ଯେବଣ ଅମନାତ୍ୟମାନେ । ଆକାଶ ହିଁ ପୂରିଅଛି ଗୋଳନାଦେ । ଘୋଡ଼ା ହାତୀ ମନୁଷ୍ୟରେ ହୋଇଲା ଗହଳ । ହୁରିଆ ଜୁରିଆଏ କଟକେ ଗୋଳ । ସକଳ ଉତ୍ପାତ ଅରିଷ୍ଟର ଉତ୍ପାତମାନ ଦେଖି । ଲୋକେ ପଳାଉଅଛନ୍ତି ହୋଇଣ ମନେ ଦୁଃଖୀ । କେବୃକ୍ଷମାନଙ୍କେ ଉଠୁ ଅଛନ୍ତି । କେ କପାଟ କିଳି ପଶୁ ଅଛନ୍ତି । କେ ଜଳ ଭିତରେ ରହୁ ଅଛନ୍ତି । କେ ଆଡ଼ୁଗର୍ମ୍ଭିରରେ ବସୁ ଅଛନ୍ତି । କେ ଆଳ, ମାଳମାନ ଲୁଚୁଉ ଅଛନ୍ତି । କେ ପର୍ବତ ଗୁହାକୁ ପଳାଉ ଅଛନ୍ତି । କେ ଅରିଷ୍ଟ ବୋଲି ଡାକୁ ଅଛନ୍ତି । କେ ନରସିଂହ ନରସିଂହ ଭାଷୁ ଅଛନ୍ତି । ଏମନ୍ତରେ ନଗର ଭିତରେ ପଶି ରଜାକୁ ହିଁ ବ୍ରହ୍ମଦୈତ୍ୟ ଆକର୍ଷି ଅଛନ୍ତି । କିଷ୍ଟ ଲୋକେ ଆହାର ନ ପାରନ୍ତି । ଯୋଗୀ ଆଜ୍ଞାରୁ କରି ଅଛନ୍ତି

ଆବୋର । ଏବଂଭୂତ ପ୍ରକାରେ ବାହାରେ ଭିତରେ ଗୋଳ ବାଜିଲା ପରି । ରାଜା ଚନ୍ଦ୍ରାପାଇ ବାସୁଦେବଙ୍କୁ ସୁମରଣା କଲା ତହୁଁ । ସୁଦର୍ଶନ ଚକ୍ର ସେହିକ୍ଷଣି ଜାଣିଲେ । କୋଟି ସୂର୍ଯ୍ୟ ତେଜ ହୋଇ ସେହିକ୍ଷଣି ଅଛନ୍ତି । ସେ ଚକ୍ର କେମନ୍ତ ଅଟଇ । ମହାଶକ୍ତି ଅଟଇ । ଦିବ୍ୟ ଜ୍ୟୋତି ଅଟଇ । ଅନନ୍ତବୀର୍ଯ୍ୟ ଅଟଇ । ସମସ୍ତଠାରେ ଉଦେ ହୁଅନ୍ତା ଅଟଇ । ଅମୋଘ ଅଟଇ । ସେ ଚକ୍ର ବାସୁଦେବର ଆଜ୍ଞା ପ୍ରମାଣେ । ବୈଷ୍ଣବମାନଙ୍କୁ ରକ୍ଷା କରିବା ନିମିତ୍ତେ ଗୁପ୍ତ ହୋଇ ବୈଷ୍ଣବ ମାନଙ୍କ ସନ୍ନିଧିରେ ଥାଇ । ଏମନ୍ତେ ସେ ରାଜା ସୁମରିଲାକ ପରି । ସେ ଚକ୍ର କେତୁଣସି ତେଜ କଣିକାମାନ ଉଦେ ହୋଇଲାକ ତହୁଁ । ପ୍ରଳୟ କାଳର ଅଗ୍ନି ରଶ୍ମିକ ତେଜ ପ୍ରକାଶିଲେ । ଭୂତମାନେ ଯେ ପର୍ଯ୍ୟନ୍ତ ରହିଥିଲେ ଦରପୋଡ଼ା ହୋଇ ଫେଁ ଫେଁ ନାଦ କରି ପଳାଇଲେ । ଚକ୍ର ତେଜକୁ ସହିଁ । ମୂର୍ଚ୍ଛାଗତ ହୋଇ । ଗତପ୍ରାଣ ପାଇ । ଚକ୍ରେର ତ୍ରାସେ ହୋଇ ଉଡ଼ି ବକଳେ ପଳାଇଲେ । ବ୍ରହ୍ମରାକ୍ଷସମାନେ ପୋଡ଼ିମଲେ । ଯୋଗ୍ନୀ ବେତାଳମାନେ ହାହା ହାହା ବୋଲି କଷ୍ଟ କଷ୍ଟ ହୋଇ ଗଲେ । ମୂର୍ଚ୍ଛାଗତ ହୋଇ ପୁଣି ପ୍ରାଣ ପାଇଲେ । ଆମୋକ୍ଷ ପ୍ରେତମାନେ ପ୍ରେତ ଦେହ ଛାଡ଼ି । ଚକ୍ରରେ ପୋଡ଼ିନ୍ତେ ବସିଲେ ସ୍ୱର୍ଗପୁର ମାଡ଼ି । ଏମନ୍ତେ ସେ ସବୁ ବରଗଣିଆମାନେ ଯାଇ । ଯୋଗୀ କଡରେ ପଡ଼ିଲେ କରୁଣ୍ଡ ହୋଇ । କେ ଇଣି ଇଣି ଶୋଷେ ବୋଲୁଅଛି । କେ ପାଣି ପିଉଅଛି । କେ ନାନା ରଡ଼ି ପାଡ଼ୁଅଛି । କେ ପୋଡ଼ା ଦାଢି ଘସୁଅଛି । କେ ଯୋଗୀ କ ଛାଡ଼ି ବନ ମାର୍ଗରେ ପଳାଉ ଅଛି । କେ ଅଚେତନ ହୋଇ ପଡ଼ୁଅଛି । କାହା ଦେହରୁ ପ୍ରାଣ ଛାଡ଼ୁଅଛି । କେ ମାଙ୍କଡ଼ ଦାନ୍ତ ଦେଉଅଛି । କାହା ଦେହରୁ ସବୁ କାନ୍ତି ତୁଟିଅଛି । କେ ମୁହଁ ମାଡ଼ି ଶୋଇଅଛି । କାହା ଦେହର ଆକୃତି ସରିଅଛି । କାହାର ଆଖି ଦୁଇ ଫୁଟି ଅଛି । କାହାର ରୋମମାନ ପୋଡ଼ି ଯାଉଅଛି । ଏମନ୍ତ ସେ ସୈନ୍ୟର ଆକୁଳ ଦେଖି । ଯୋଗୀ କୋପ ମୁଖେ ବୁହିଲା ବେନି ଆଖି । ରକ୍ତକୁମୁଦର ପ୍ରାୟେ ବୁଲାଇଲା ବେନି ନୟନ । କାହାର ଗର୍ବ ହୋଇଲା ଭଙ୍ଗିଲା ଏ ମୋହର ସୈନ୍ୟ । ଯୋଗ୍ନୀ-ମାନଙ୍କୁ ପଚାରିଲା ଯୋଗୀ । ଏ କଷ୍ଟ । ହୋଇଲେ ଏଡ଼େକ ଦୁଃଖଭୋଗୀ । ଯୋଗୀର ବଚନ ଶୁଣି । କରପଦ ଯୋଡ଼ି ବୋଲୁ ଅଛି ଦାଢ଼ି ପୋଡ଼ା ଭୂତ ଚୂଡ଼ାମଣି । ହାଦେ ସ୍ୱେ ନାଥ ! ତୋହର ଆଜ୍ଞା ପ୍ରମାଣେ ଗଲୁ । ଅନେକ ପ୍ରକାରେ ବହୁ ମାନନ୍ତ କଲୁ । କନ୍ୟାକୁ ହରି ଆଣିବାର ବେଳେ ।

ଅଦ୍ଭୁତ ଚମତ୍କୃତ ହୋଇ ଏକ ବସ୍ତୁଏ ଦିଶିଲା ଆକାଶ ମଣ୍ଡଳେ । ସେ କାଳାନ୍ତକ କାଳଚକ୍ର । ଯାହା ଦେଖିଲେ ଉରଇ ଶକ୍ର । ମୁଁ ତୋତେ ଆଦ୍ୟନ୍ତ କହୁ ନାହିଁ······ଗୃହ ବେଗେ ଯିବା, କଷ୍ଟ କଷ୍ଟ ହୋଇ ପ୍ରାଣ ପାଇବା ।ଏହା ଶୁଣି ସେ ଯୋଗୀ । ପ୍ରତିଜ୍ଞା କରି ବୋଲୁଅଛି ଶିରକମ୍ପି । ରହ ରହ ବୋଲି ଚକ୍ର କୋଟି ଏହିକ୍ଷଣି ଜାଣିମା । କନ୍ୟାକୁ ହୋଇଲେ ଆଣିମା । ଯଦି ସେ ତୁମ୍ଭମାନଙ୍କର ଦୁଃ·········।

ଏମନ୍ତ ଯେ ବଚନର ଭୈରବୀ ଚଣ୍ଡିକ ହକାଶ । ସ୍ୱପ୍ନେ ମନ୍ତ୍ର କରି ସ୍ମରଣ କରନ୍ତେ । ମହା ଭୈରବୀ ଚଣ୍ଡୀ ଆସି ମିଳିଲା ଅଦ୍ଭୁତେ । ସେ ଚଣ୍ଡୀର ଶିର ଆକାଶେ ଲଗୁଅଛି । ଜିଭ ଲହ ଲହ ନିରନ୍ତରେ ଆହାର ମାଗୁଅଛି । କାଳଚକ୍ର ପ୍ରାୟେ ଦୁଇ ଚକ୍ଷୁ ଦିଶୁଅଛି । ପ୍ରଳୟ କାଳର ବିଜୁଳି ପ୍ରାୟେ ଜିହ୍ୱାରେ ଅଗ୍ନିକଣିକା ମାନ ଦିଶୁ ଅଛନ୍ତି । ମୂଷଳ ପ୍ରମାଣେ ଦନ୍ତ ପାତି ଦିଶୁଅଛି । ବକ୍ରେ ବକ୍ରେ ଯୁଡ଼ିଲା ପ୍ରାୟେ ହୋଇ ପାତି ଦୁଇ ଦିସୁଅଛି । ତହୁଁ ଅଗ୍ନି-କଣିକାମାନ ଦିଶୁଅଛି । ନିଶ୍ୱାସ ତେଜେ କରି ବୃକ୍ଷମାନେ ଜଳି ଯାଉ ଅଛନ୍ତି । ଧୂମଶିଖା ଧରିଅଛି । ମୁଣ୍ଡମାଳ ଗୋଟାଏ ଭିଡିଅଛି । ରକ୍ତ ବସ୍ତ୍ରେକ ପିନ୍ଧିଅଛି । ଆକାଶ ଯାକ ରୁନ୍ଧି ଅଛି । ଫେ ଫେ କାର ରଡ଼ି ଗ୍ରୁଡୁଅଛି । ଭୂମିଗୁଡ଼ ଉଡୁଅଛି । ଦାନ୍ତରୁ ମହା ଉଲ୍କାମାନେ ହେଉ ଅଛନ୍ତି ଜାତ । ବ୍ୟାଘ୍ର ଶବ୍ଦ କରୁଅଛି ଯେହ୍ନେ ମହା ବଜ୍ରପାତ । ବ୍ରହ୍ମାଣ୍ଡ ଖପରକ ଯାଉଅଛି ଫାଟି । ଏକ ଉପରେ ଅନେକ ଚଢ଼ନ୍ତେ ପାଟି । ଏକ ଖଡ୍‌ଗେକ ଧରି । ଯୋଗୀ ତୁମ୍ଭରେ ମିଳିଲା ହୁଙ୍କାର ନାଦ କରି । ସେ ମହାଭୈରବୀ ଚଣ୍ଡୀକି ଦେଖି । ଯୋଗୀ ଆସନ ଉଠେଇ ପାଏ ପଡ଼ି ଶୋଇଲା । ଏ କଟକ ପୁରଜନମାନଙ୍କୁ ଭକ୍ଷ ଅବଦ୍ୟା ମୃତ-ସଞ୍ଜିବନୀ କନ୍ୟାକୁ ଆଣ ବୋଲି ବୋଇଲା । ସେ ଯୋଷାମଣି ଯୋଗୀର ଆଜ୍ଞା ପାଇଲା ଯହୁଁ । ବିଜୁଳି ସହିତ ଚଡ଼କ ପ୍ରାୟେ ନାଦକରି ଧାଇଁଲା ତହୁଁ । କନ୍ୟା ପୁରେ ପ୍ରବେଶ ହୋଇବାର ବେଳେ । ଚକ୍ର ତେଜ ଅଗ୍ନି-କଣିକାମାନ ଲାଗିଲା ଅବହେଳେ । କେଶେ ବସ୍ତ୍ରେ ଅଗ୍ନି ଲାଗିଲା ଯାଇଁ । ରୋମାବଳୀମାନେ ହେଉଛନ୍ତି ଦଗ୍ଧ । ସେ କନ୍ୟାକୁ ଆଣିବାକୁ ଯେ ମନ କରିଥିଲା । ଅନ୍ତରାଳ ହୋଇ ଧର୍ମାଧର୍ମେ ପଳାଇ ଅଇଲା । ମୁହିଁ ବୁଲିଲ ଭୂମିରେ ପଡ଼ିଲା । ପର୍ବତ ପକ୍ଷକ ଇନ୍ଦ୍ର ଛେଦିଲା । ଚ ହିଁ କବା

ମ ସବକେ ଘୋଟଇ ଅଗ୍ନିଶିଖା । ସମୁଦ୍ର ପଡ଼ିଲା ଯାଇ କେହ୍ନ ନାହିଁ ସଖା । ଅଧାଙ୍ଗ ପୋଡ଼ିଲା । ଧର୍ମ ଧର୍ମ ହୋଇ ଯାଇ ଯୋଗୀ ଗ୍ରୀମୁରେ ପଡ଼ିଲା । ଅଙ୍ଗାର ଜ୍ୟୋତି ପ୍ରାୟେକ ହୋଇ । ସେ ଭୈରବୀ ଚଣ୍ଡୀ ଚରିତାର୍ଥ ହୋଇଲା ଯହୁଁ । ଯୋଗୀର ସମସ୍ତ ଶବ୍ଦମାନ ସରିଲା ତହୁଁ । ଅନଳ ଖେଚରକୁ ଯାଇ ଆଜ୍ଞା ଦେଲା । କି ବୁଦ୍ଧି କରିବା କହସି ବୋଇଲା । ସେ ଭୂତ ବୋଇଲା ଆମ୍ଭମାନଙ୍କ ଠାକୁର ତୁ । ତୋହର ଠାକୁର ପାର୍ବତୀ । ପାର୍ବତୀ ମାୟାରେ କରି ଏ ଜଗତକୁ ମୋହିଲା ଅଛୁ । ପାର୍ବତୀ ଠାକୁର ଈଶ୍ୱର । ସେ ଭଏ ହିଁ ଚନ୍ଦ୍ରକୁ ହାରି ଯୋଡ଼ିଲେକ କର । ଫୁଙ୍କ ପବନେ କି ଉଡ଼ଇ ମେରୁ । ମାଛି କି ବରାଡ଼ିକ ପର୍ବ ଧରଇ ଫେରୁ । ଏ ଚନ୍ଦ୍ରକୁ ଆମ୍ଭେ ନ ପାରି । ଏବେ ପ୍ରାଣ ଘେନି ଗୃହଲଯିବା ଅପସରି । ସେ କନ୍ୟା ରୁଦ୍ର ସୁଧାନିଧିକି ବରିବ । ସେ କୁମର କନ୍ୟା ଘେନି ନିଜପୁରେ ପ୍ରବେଶ ହୋଇବ । ଯେ କଟକେ ପ୍ରବେଶ ହୋଇବା ଉତ୍ତାରେ । ଏ ଚନ୍ଦ୍ର ଆଉ ନ ଥିବ ସେଠାରେ । ନିମିଷ ମାତ୍ରକେ କନ୍ୟା ନେବା ବେଗରେ । ଏମନ୍ତ ବିଗ୍ରହ ନିଶ୍ଚୟ କଲେ । ରୁଦ୍ର ସୁଧାନିଧି ସଙ୍ଗେ ପ୍ରୀତି କରିବା ବୋଲି ବୋଇଲେ । କାଣ ପିଶାଚମାନଙ୍କର ଚକ୍ଷୁ । ମନ୍ତ୍ରବଳେ ଭଲକଲେ ।

ସେଠାରୁ ପାଞ୍ଚ ମୁଖ ହୋଇ ବାହୁଡ଼ି ଅଇଲେ । ବସୁଧାମଣ୍ଡଳ କଟକରେ ପ୍ରବେଶ ହୋଇଲେ । ଶାକମ୍ଭରୀ ମଣ୍ଡପରେ ଆସନ କରି ବସିବାର ବେଳେ ଅମୃତ ତରଙ୍ଗିଣୀ ନଦୀର କୂଳେ । ସମସ୍ତେ ମିଳିଲେ ଅତ୍ୟନ୍ତ କୁତୂହଳେ । ସେ ନଦୀ ପାରି ହୋଇଲେ କଟକେ ପଶି । ତହିଁ ନିରନ୍ତରେ ରାଜପୁତ୍ରମାନେ ପାରି ହେଉଛନ୍ତି ନାବେ ବସି । ସେ ନାବମାନେ ପର୍ବତ ପ୍ରାୟେକ ଅଟନ୍ତି । କେ ମଗର ମୁଖ । କେ ଅଷ୍ଟମଙ୍ଗ । କେ ତ୍ରିପୁର । କେ ହିମାଳୟ ସଦୃଶ । କେ ରଥ ଆକାର । କାହିଁ ସହସେ ଆହୁଲା ପଡ଼ୁଅଛି । କେ ବହନ୍ତା ସ୍ରୋତେ ଚଳୁଅଛି । କାହିଁ ପତାକାବଳୀ ଉଡ଼ୁଅଛି । କେ କେବଳ ମଙ୍ଗ ଧାଳୁଅଛନ୍ତି । ମଙ୍ଗୁଆଳମାନେ ଦୋହାଡ଼ି ଗୀତ ଗାଉଅଛନ୍ତି । କେ ପୋଡ଼ପିଠା ଖାଉଅଛନ୍ତି । କେ କଟକକୁ ବୋଲି ମଙ୍ଗ ଟେକି ଦେଉ-ଅଛନ୍ତି । କେ ଆହୁଲରେ କରି ବାହୁଅଛନ୍ତି । ଏବଂଭୂତ ନାବରେ । କାମାନନ୍ଦ ଯୋଗୀନ୍ଦ୍ର ଯାଇଁ ମିଳିଲା ସନ୍ନିଧିରେ । କାପାଳିକ ବୋଲି କୈବର୍ତ୍ତମାନେ ବସାଇ ନ ଦେଲେ ଯହୁଁ । ଲଜ୍ଜା ପାଇ କାମାନନ୍ଦ ବାହୁଡ଼ିଲା

ଥିଲୁଁ । ତାମସରେ କରି କୃଷ୍ଣାଜିନ ସ୍ଥୁଲ ଖଣ୍ଡିଏ କାଢ଼ିଲା । ତାହା ନେଇ ପାଣିରେ ପାଡ଼ିଲା । ଉପରେ ଚଢ଼ିଲା । ବାହାନ୍ତେ ନାବରୁ ସେ ବେଗେ ଚଳିଲା । ସୋତହେ ନ ପଡ଼ିଲା । ଜଳେ ନ ବୁଡ଼ିଲା । ଏହା ଦେଖି ସମସ୍ତଙ୍କୁ ଚମତ୍କାର ଲାଗିଲା ।

କେବଣ କେବଣ ପ୍ରକାରେ ଗଲା । ସୋଲ ମଦାଙ୍ଗ କର୍ଣ୍ଣରେ ବାନ୍ଧିଲା । ଉଜାଣୀ କରି ପବନ ରୁନ୍ଧିଲା । ଜାଳନ୍ଧରୀ ମୁଦ୍ରା ଦୃଢ଼ କରି ବାନ୍ଧିଲା । ଖେଚରୀ ଯନ୍ତ୍ର ଆକାଶେ ଛନ୍ଦ । ଆପଣା କଳ୍ପଚିନ୍ତାମଣି ବିଦ୍ୟାର ବଳେ । କର୍ଣ୍ଣାଟି ଯୋଗୀର କୁତୂହଳେ । ଦ୍ରବ୍ୟ ପଦାର୍ଥ-ମାନଙ୍କରୁ କରି ଜାତ । ଦେଖିଲା ଲୋକେ ତାହାର ପାଦେ ଦେଉଅଛନ୍ତି ମାଥ । ସେ କେବଣ କେବଣ ପଦାର୍ଥମାନ ଜାତ କରୁଅଛନ୍ତି । ଧାତୁ, ରତ୍ନ, ଫଳ, ବଳ, ଔଷଧ, ବସନ, ଅଳଙ୍କାର, ଦର୍ପଣ, ପଟ୍ଟବସ୍ତ୍ର, ଭକ୍ଷ ଭୋଜନ ପିଷ୍ଟକ ସହିତ ପଦାର୍ଥମାନ ବାଞ୍ଛିତ ପୁଅମାନଙ୍କୁ ଦେଉଅଛି । ଯାହା ସେ ବୋଲୁଅଛି ତାହା ସେହିକ୍ଷଣି ଉପୁଜାଉ ଅଛି । ନଗ୍ରଯାକ ମୋହୁଅଛି । ସଖି ଶବ୍ଦ କହୁଅଛି । କୋମଳ କରି ଗାଉଅଛି । ଅନେକ ଗୁରୁବାଟୁଏ ଭୈରବଙ୍କୁ ବନ୍ଧିଲା । ସୂର୍ଯ୍ୟଙ୍କୁ ସମକରି ସନ୍ଧିଲା । ବାହୁଡ଼କ ଯା ବୋଲି ବୋଇଲା । ନିମିଷାର୍ଦ୍ଧେ ଚର୍ମ କେଣିକ ଗଲା । ଯୋଗୀ କୂଳକୁ ଡେଇଁ ପଡ଼ିଲା । ମହାମୁଦ୍ରା ଫେଇଲା । ବାହୁ ପୃଷ୍ଠ ମାଇଲା । ବେତାଳ ସୈନ୍ୟ ଅଛି ଆକାଶେ ଅଦୃଶ୍ୟ ହୋଇ । ଆକାଶେ ଲୁଚିବାରୁ କରି ତାଙ୍କୁ ନ ଜାଣନ୍ତି କେହି । ଶାକମ୍ଭେଶ୍ୱରୀ ମଣ୍ଡପରେ ଯାଇ ପ୍ରବେଶ ହୋଇଲା । ତାହା ଦେଖି ସମସ୍ତଙ୍କୁ ଅତ୍ୟନ୍ତ ଚମତ୍କାର ଲାଗିଲା । ଲୋକେ ସହସ୍ର ସହସ୍ର ହୋଇ ଦେଖି ଆଇଲେ । ଅନେକ ପଦାର୍ଥମାନ ଘୁମୁରେ ଥୋଇଲେ" । ଯୋଗୀ ଆଜ୍ଞା ଦେଇ ତାହା ବାଣ୍ଟେ ଥୋଆଇଲା । ଭୂତ ବେତାଳମାନଙ୍କୁ ବାଣ୍ଟି ଦିଆଇଲା । ସେ ଯୋଗୀ ଅନେକ କଥା କହୁଅଛି । ଏହା ଦେଖି ଲୋକେ ରାତ ଦିବସ ଧାଉଁ ଅଛନ୍ତି । ନିରନ୍ତରେ ଯୋଗୀକି ଦେଖୁଥାନ୍ତି । ମନ୍ତ୍ରମୂଳିକା ଶିଖୁଥାନ୍ତି । ଅଙ୍ଗେ ବିଭୂତି ମାଖୁଥାନ୍ତି । ଏ ସିଦ୍ଧ ବୋଲି ତାକୁ ଲେଖୁଥାନ୍ତି । ଏମନ୍ତରେ ସେ ଯୋଗୀ ମାସେ ପର୍ଯ୍ୟନ୍ତ ସେ ମଣ୍ଡପରେ ରହିଲା । ଅନେକ ଚମତ୍କାରମାନନ୍ତ ହିଁ କଲା । କଲେ ହେଁ ବାବୁ ସେ କଟକର ଗହଳେ କୁମାରଙ୍କୁ ବାରତା ନୋହିଲା । ସେ ରାଜାର ମନ୍ଦିରରେ ବାରତା ନୋହିଲା ଯହୁଁ । ସବ ମନୋହାରିଣୀ

ଦ୍ରାକ୍ଷିଣୀକି ଯୋଗୀ ବୋଇଲେ ତହୁଁ । ଏହି ବୃକ୍ଷ ପିବୁ । କୁମର ମନ ଘେନି ପଣି କୁମରଙ୍କୁ ମୋହି ଅଣିବୁ । ଆଜ୍ଞା ପ୍ରମାଣେ ଦ୍ରାକ୍ଷିଣୀ ଚଳିଗଲା । ପରିବାର ମାନଙ୍କ ହୃଦୟରେ ପଣି କୁମରକୁ କହିଲା । ଅପୂର୍ବ ଚମତ୍କାର ଯୋଗୀନ୍ଦ୍ର ପୁରୁଷେକ ଆସିଅଛି । ଆମ୍ଭ ନଗରରେ ରହିଅଛି । ଅତିନେକ ଅନେକ ବୁଲିଅଛି ନଗ୍ର ଦେଶ । କେଶ ତାହାର ଦରବେଶ । ସୁନ୍ଦରପଣେ ଅତି ବିଶେଷ । ସମସ୍ତ ବିଦ୍ୟାରେ ନିପୁଣ ବିଶେଷ । ଏହା ଶୁଣି କୁମର ଶରଧା କଲା । ପୂର୍ବ ଅଭ୍ୟାସର ବଳେ……ବାସନାରେ । କରି ବିବେକ ରତ୍ନାକର ମନ୍ତ୍ରୀପୁତ୍ର ଗୁଣଶୀଳକୁ ଡାକି ଆଜ୍ଞା ଦେଲା । ହେମିତ୍ର ! ମୁଁ ସେ ଯୋଗୀକି ଦେଖିବି । ସେ ମନ୍ତ୍ରୀପୁତ୍ର ଗୁଣଶୀଳର ବୁଦ୍ଧି ବୃହସ୍ପତିଙ୍କର ସମାନ । ମୁଖଚନ୍ଦ୍ରମାକୁ ସମାନ । ବିବେକ ବରୁଣକୁ ସମାନ । ସୁସ୍ୱର ସରସ୍ୱତୀଙ୍କ ସମାନ । ଗତି ପବନକୁ ସମାନ । ଗୁଣେ ବିଘ୍ନେଶ୍ୱରଙ୍କ ସମାନ । ତେଜେ ଅଗ୍ନିଙ୍କ ସମାନ । ଗ୍ରନ୍ଥ ଅଭ୍ୟାସେ ବ୍ୟାସଙ୍କ ସମାନ । ଶିଳ୍ପ କର୍ମେ ବିଶ୍ୱକର୍ମାଙ୍କୁ ସମାନ । ସମସ୍ତ ଗୁଣେ ହୋଇଅଛି ଜାନ୍ତ୍ୱାମ ନ । ବାସୁଦେବଙ୍କ ଭକ୍ତ ହୋଇଅଛି ଯହୁଁ । ଦିବ୍ୟ ଗୁଣମାନ ପାଇଅଛି ତହୁଁ । ଏବଂଭୂତ ଗୁଣଶୀଳ ମନ୍ତ୍ରୀ ବୋଇଲା । ହେ ମହାବାହୁ ! ତୁ ସକଳ ଗୁଣମାନଙ୍କରେ ଇନ୍ଦ୍ରକୁ ସମ । ଗୁଣ ସୂକ୍ଷ୍ମ ବିଚାରିଲେ କାପାଳିକ ଦର୍ଶନ ଉଚିତ ନୁହଇ । କୌଣସିକାଳେ ପୂର୍ବେ ଗୋରେଖାଦି ସିଦ୍ଧମାନେ ଦେହ ଧ୍ୟାନେ ସେ ମୋକ୍ଷ ହୋଇଲେ । ପାଷଣ୍ଡମାନଙ୍କୁ ଭଣ୍ଡିବା ନିମନ୍ତେ କାପାଳିକ ଶାସ୍ତ୍ର ଢିଆଇଲେ । ଏମାନେ ଯହୁଁ ବହୁତ ସେବା କଲେ, ଦେହ ବର୍ଜିମତ ନ ଛୁଡନ୍ତି । ଚିତନ୍ତରେ ବିଷୟ ଐଶ୍ୱର୍ଯ୍ୟ ସେ ଲୋଡ଼ନ୍ତି, ଏ ପାପିଷ୍ଠମାନଙ୍କୁ ଆପଣାର ଉତ୍ତମ ପଦ ନ ଦେଖାଇ, ଦେହରକ୍ଷା ଯୋଗ ଢିଆଇଲେ । ଭୋଗ ଲୋଭ ଦେଖାଇ ଇନ୍ଦ୍ରିୟମାନଙ୍କ ବଶକୁ ଗଲେ । ସେ ଉତରେ କରି ଦେହକୁ ଧରିଲେ ।

ଏବଂଭୂତ ମାୟା ଦର୍ଶନମାନଙ୍କ ତହିଁ ଅନେକ ପାପ କହିଅଛି, ଧର୍ମଶାସ୍ତ୍ର ପ୍ରମାଣେ ଯୋଗୀକି ମୋହ ବିଗ୍ରହରେ ଭେଟ ହୋଇବା ନ ଯୋଗାଇ । ଏହା ଶୁଣି କୁମର ବୋଇଲା । ଭଲ ସିନା ଜାଣି ଧଇଲେ କି ଦୋଷ ହୋଇଲା । ଭଲସିନା ଜାଣି ଅଇଲେ କି ଦୋଷ ହୋଇଲା । କେଉଁ ସିଦ୍ଧ କେଉଁ ରୂପରେ ଥାନ୍ତି । ଈଶ୍ୱରମାୟା ତ ଜାଣି ନୁହଇ । ହାନ୍ଦ ଶ୍ରୀପୁରୁଷୋତ୍ତମ କ୍ଷେତ୍ରରେ ସିଦ୍ଧମାନେ ପୁନ ଦାଣ୍ଡ

ଘେନି କରିଥାନ୍ତି ବାସ । ନିରନ୍ତରେ ଷଡ଼ୈଶ୍ୱର୍ଯ୍ୟରସେ, ନିର୍ମଳଚିତ୍ତ ଥାନ୍ତି । କେତେଜଣସି ସିଦ୍ଧମାନେ ସ୍ୱଇଚ୍ଛାଏ ଦେହ ଛାଡ଼ି ତୁରୀୟପ୍ରାପ୍ତିତ ପରମ ଜ୍ୟୋତି ନିର୍ବାଣ ବ୍ରହ୍ମମୟ ସୁଖକୁ ଯାନ୍ତି । ହୀରଦେ କେତେଜଣସିମାନେ ନୀଳ ଜଳଧରେ ନିବିଡ଼ ଆନନ୍ଦବୋଧ ସ୍ୱରୂପ ଚତୁର୍ଭୁଜ ଶରୀର ପାନ୍ତି ।

ହେ ମିତ୍ର ହୀରଦେ ଏ ମାୟା ଅନ୍ତ କରି ନୁହଇ । ଏମନ୍ତ ବୋଲି ହୀରଦେ ବସ୍ତ୍ର ପୂରଣ କହଇ । ତୁ ହୀରଦେ କିଛି ହିଁ ନ ବଗ୍ଭର । ସୈନ୍ୟ ସଜକର । ରଥ ଆରୋହିବା । ଯୋଗୀ ତାହାଙ୍କ ଗ୍ଭଲ ବେଗେ ଯିବା । ତାହାଙ୍କୁ ରୁଆଇ ପଠାଇବାର ଉଚିତ ନୁହଇ । ଅଦୃଷ୍ଟପୂର୍ବ ତ ଦେଖିବାର ବଡ଼ ପୁଣ୍ୟ ଅଟଇ । ମନ୍ତ୍ରୀପୁତ୍ର ଏଥିକୁ ସମ୍ମତ କଲା । ପ୍ରମାଣେ ଅଇଲ । ଏମନ୍ତ ବଗ୍ଭରନ୍ତେ ଗୋଧୂଳି ହୋଇଲା । ମନ୍ତ୍ରୀପୁତ୍ର ବୋଇଲା ରାତ୍ର ବହୁତ ହୋଇ ହୋଇ । ସଙ୍କାଳ ଅଟଇ । ଧବଳ ଚନ୍ଦ୍ରକିରଣେ କରି ପୃଥ୍ୱୀ ଶୁଦ୍ଧ ସ୍ଫଟିକ ପ୍ରାୟେ ଆବୃତ୍ତ ଅଛୁ । ସେ କୁମର ମିତ୍ରକୁ ଘେନି ରଥରେ ବଜେକଲା । ସେ ରଥ କେମନ୍ତ ଅଟଇ । ନାନା ପୁଷ୍ପେ ନିର୍ମିତ ହୋଇଅଛି । ଶିଖାଉଠା ମଣିର ପ୍ରାୟେକ କେବଳ ଉପରେ ଜାଲି କରି ଦେଲା ଅଛି । ସେ ମଣି କେମନ୍ତ ଅଟଇ । ଚନ୍ଦ୍ର ଦେଖନ୍ତେ ଆରଦ୍ର ହୋଇ । ଅମୃତ ଶୀକରମାନେ ବୃଷ୍ଟିକଲା ପ୍ରାୟେ ଝରୁଅଛି । ଖଞ୍ଜନଖଗ ଏ ତପ୍ତ ହୋଇଲା । ବ୍ରହ୍ମାଣ୍ଡକୁ ଦେଖି ଆଦ୍ରିତର ହୋଇଅଛି । ସେ ହସ୍ତରେ ଧରିଥାନ୍ତି ଦିବ୍ୟ ପଦ୍ମରୁ ଶୁଦ୍ଧ ମକରନ୍ଦ କଣିକା ସିଞ୍ଚିଲା ପ୍ରାୟକ ଶୋଭା ପାଉଅଛି । ସେ ରଥ ଗଗନମଣ୍ଡଳକୁ ଧାଉଁଅଛି । ଦୃଷ୍ଟ ଶରତଚନ୍ଦ୍ର ମଣ୍ଡଳର ଶୋଭା ପ୍ରାୟେ ପାଉଅଛି । ଏ ରଥ ତଳରେ ଚତୁରଙ୍ଗବଳ ଗୋଟାଏ ରଥକୁ ବେଢ଼ି ଗ୍ଭଲିଅଛି । ସେ ଚତୁରଙ୍ଗବଳ ରଥ ସମୁଦ୍ର ବସନ୍ତ ଲକ୍ଷ୍ମୀ ଯୁକ୍ତ ହୋଇଲା ପର୍ବତ ଶୃଙ୍ଗ ପ୍ରାୟେକ ଦିଶୁଅଛି । ପଦାତିବଳ ଗୋଟାଏ ସବୁଙ୍କୁ ଆଗେ ଶାର୍ଦ୍ଦୁଳଯୂଥ ପ୍ରାୟେକ ହୋଇ ଶୋଭା ପାଉଅଛି । ସେ ବଳମାନେ ସମସ୍ତେ ହେଁ ସୁନ୍ଦର । ତରୁଣ ସାମର୍ଥ ଅଟନ୍ତି । ବଳିନ, ଚଳନ, ମୋଟ, ଅଗଣ ଆମଞ୍ଜନ ମୋଟ ଅଳଆସ ଚୂଡ଼ା । ବଜ୍ରକପାଟ ଫେଡ଼ା । ରଣେ ଯେ କୁକୁଡ଼ା । ସେ ପାଇକମାନେ ସରକଲେ ଭୂମିକି ଛାଡ଼ି ରହନ୍ତି । ପାଞ୍ଚମନ କଲେ ଦୁଆଡ଼ ମୁନେ ବୁଡ଼ନ୍ତି । ପୁନରପି ସେ ପାଇକମାନେ କେମନ୍ତ ଅଟନ୍ତି । ଆଣ୍ଠୁ ଶିନ୍ଧା, ସିଂହ ବିକ୍ରମ ଚହ୍ନ । ଚରମ ଆଣ୍ଠ ସତ ନ ଗଳଇ । ଘସ ମର୍ଦ୍ଦନରେ ଦେହ

ଶିଖର ପ୍ରାୟେ ଦିଶଇ । ବପୁସ ବର୍ଣ୍ଣ ପଞ୍ଜରି । ହାଥରେ ଲୁହାଶିକଳା ଛପଳ ଦୁଇ କର୍ଣ୍ଣ । ହସାହସିରେ ଧାଇଁଲେ ପାଞ୍ଚଜଣ ଯାଆନ୍ତି । ଜଣକେ ଦଶ ଦଶ ମଇଁଷିର ଦୁଧ ଖାନ୍ତି । ଗୁଣ ଦେଇ ଟାଣିଲେ ଜୁଆଳ ଭାଜଇ । ବାନ୍ଧିଲେ ସୋଳଷ ଗୋଟାକୁ ବାଜଇ । ମତ୍ତହସ୍ତୀ ସମ୍ମୁଖରେ ଗୋଡ଼ ଦେଇ ଟାଣନ୍ତି । ଧାଇଁଲେ ଗୋଡ଼ାଇ ନ ପାରନ୍ତି ଲକ୍ଷେ ଟଙ୍କାର ଘୋଡ଼ା । ସମରକୁ ଧାଆଁନ୍ତି ଅଗ୍ନିକ ପତଙ୍ଗର ପରି । ଏଥରେ ଉତ୍ତରେ ସେ ପଦାନ୍ତବଳ ପଛରେ ଜଳ ସହିତ ମେଘର ପ୍ରାୟେ ହୋଇ ଗଜବୃନ୍ଦ ଗୋଟିଏ ଅଛି । ସେ ଗଜମାନେ ମହୋତ୍କଟ ବାରଣ । ଚକ୍ଷୁ ଦୁଇ ଅରୁଣ ବାରମାସି ମତ୍ତ । ବଜ୍ର ହିଁ ସହନ୍ତା । ଅଖଣ୍ଡିତ କର୍ଣ୍ଣ । କୋଡ଼ିଏ ଗୋଟା ନଖରେ ସମ୍ପୂର୍ଣ୍ଣ । ଦକ୍ଷିଣାବର୍ତ୍ତ ଦନ୍ତ । ଆମ୍ବାବଳେ ସଚ୍ଛ । ଅଇରା ସମଦଣ୍ଡେ କ ପ୍ରତ୍ୟକ୍ଷେ କୃତାନ୍ତ । ଲଞ୍ଜି ଶ୍ୱେତ । ବଳନ ଭୁଙ୍ଗ । ସଂଗ୍ରାମେ ନିଃଶଙ୍କ । ଗୃହଦନ୍ତ ସଞ୍ଚ । ଦାନ୍ତ ଘେନି ମାରିଲେ ପର୍ବତ ଫୁଟଇ । ପାଞ୍ଚ ଦେଖି ଅଚଳ ପାଷାଣ ଭୁଟଇ । ଚଉସମ ଓସାର । କନ୍ଧ ପୃଥୁଳ କୁମ୍ଭ ବିସ୍ତାର । ସେ ଗଜମାନେ କୋପ କଲେ ଅଗ୍ନିରେ ଜଳନ୍ତି । ପର୍ବତ ସମୂହର ପ୍ରାୟେ ଶୋଭା ପାଆନ୍ତି । ମଦଧାରାମାନେ ସେ ପର୍ବତରୁ ଜଳଧାରା ପରାଏ ବହୁଅଛନ୍ତି । ରଜତ ଶିକଳାମାନ ଶ୍ୱେତ ସର୍ପ ଗୁଡ଼ଆଇଲା ପରି ଶୋଭା ପାଉଅଛନ୍ତି । ଗୃମରମାନଙ୍କ ମଣ୍ଡନ୍ତେ କ ପର୍ବତେ ଭ୍ରମରମାନେ ଲଞ୍ଜ ବାହାରକୁ ଦେଖାଉ ଅଛନ୍ତି । କ ଘାଗୁଡ଼ି କୁହରେ ଶରୀର ଲୁଚାଉ ଅଛନ୍ତି । ପତାକାମାନେ ସେ ପଲ୍ଲବଲ ପ୍ରାୟେ ଶୋଭା ପାଉଅଛନ୍ତି । କୁମ୍ଭମାନଙ୍କରେ ଚନ୍ଦମାନ କାଟନ୍ତେ ଧାତୁ ରଙ୍ଗ ପ୍ରାୟେ ଦିଶୁଅଛନ୍ତି । ହସ୍ତୀମାନଙ୍କର ଘଣ୍ଟିବାଦନ କରନ୍ତେ ପର୍ବତ ଗୁହାରେ ପବନ ପଶି ଧ୍ୱନିକଲା ପ୍ରାୟେ ଶୁଭୁଅଛି । ଏମନ୍ତେ ଚଳନ୍ତା ପବନ ସମୁଦ୍ର ପ୍ରାୟେ ଶୋଭା ଦିଶୁଅଛନ୍ତି ।

ହସ୍ତୀମାନଙ୍କର ମାହୁନ୍ତମାନେ ଦିବ୍ୟ ବେଶ ହୋଇ କାନ୍ଧରେ ବସି କର୍ଣ୍ଣମୂଳରେ ଆରଣନ୍ତି ଲଗାଇ କୁମ୍ଭରେ ହାମ୍ଫୋଳ ଦେଇ ଲୀଳାଗତି କରି ଚଳାଉଅଛନ୍ତି । ବଡ଼ବେଗୀ ଅଶ୍ୱମାନେ ଧାଇଁ ଅଛନ୍ତି । ସଭିଙ୍କେ କନାଣ ଅଶ୍ୱଜାତି ଅଟନ୍ତି । ବ୍ୟଗ୍ରେ ପବନ ଦେବତାକୁ ଖଟନ୍ତି । ଚତୁର ସ୍ତ୍ରୀର କଟାକ୍ଷବାଣରେ ପ୍ରାୟେ ଯାଉଅଛନ୍ତି । କେ ବନ୍ଦ ବନ୍ଦ ହୋଇ କୁଦି କୁଦି କରି ଯାଉଅଛନ୍ତି । ତାରାପଥ ପ୍ରାୟେ ଶୋଭା ପାନ୍ତ-

ଅଛନ୍ତି । ଅଶ୍ୱଆରମାନେ, ଖଣ୍ଟାଖରଇ ପାଞ୍ଚୁଅଛନ୍ତି । ସେ ନୃତ୍ୟକାର ପରାଏ ନାଚୁଅଛନ୍ତି । ଭ୍ରମର ପୁଷ୍ପକୁ ଚୁମ୍ବିଲା ପରାଏ କରି ପୃଥ୍ୱୀକି ଚୁମ୍ବୁ ଅଛନ୍ତି । ବହୁତ ଆକାଶମାର୍ଗେ ମିଶୁଅଛନ୍ତି । କେ ପବନ ସଙ୍ଗେ ମିଶୁଅଛନ୍ତି । କେ ବଜୁଳି ପ୍ରାଏ ଦିଶୁଅଛନ୍ତି । ଏମନ୍ତେ ଚତୁରଙ୍ଗ ବଳ ଯୁକ୍ତେ କୁମର ରଥ ଚଢ଼ି ବିଜେକଲା ଧନୁଶର ଧରି । ବସନ୍ତ-ପଢମା ପିନ୍ଧି । ପାଖୁଡ଼ା ସେବତୀ ଗନ୍ଧ ବାନ୍ଧି । କସ୍ତୁରି ଚିତା··········ଗଳାରେ ଅଛି ତାହାର ଗଜମୋତି । କଣ୍ଠମାଳ ଗୋଟାଏ ବାନ୍ଧିଅଛି । ପଞ୍ଚରତ୍ନ ଓଢ଼ଣୀ ଭିଡ଼ିଅଛି । ମାଣିକ୍ୟର ଚାଡ଼ ଭରି ଗମନ କରି ଯାଆନ୍ତେ । ପୁଷ୍ପବୃଷ୍ଟି ହୋଅନ୍ତେ । ଧୂପାବଳୀ ଆମୋଦନ୍ତେ । ତୂରୀ ବାଦ୍ୟ ବାଜନ୍ତେ । କାମଦେବ ପୃଥ୍ୱୀକି ବିଜେକଲା ପ୍ରାଏକ ଦିଶୁଅଛି । ଏମନ୍ତ ପ୍ରକାରେ ଧାଡ଼ିକାରେ ଗଲେ । କଟକର ପ୍ରାନ୍ତେ ବିନାୟକ ମଣ୍ଡପର ସନ୍ନିଧେ ମିଳିଲେ । ସେ ମଣ୍ଡପର ଗୃହପାର୍ଶ୍ୱରେ ଦିବ୍ୟ ଭୂମି ଗୋଟିଏକ ଅଛି । ସେ ସ୍ଥଳୀର ନାମ କାଞ୍ଚନ ସ୍ଥଳୀ ଅଟଇ । ତାହା ଦର୍ପଣ ଶିଳାରେ କରି ବନ୍ଧାଇଲା ହୋଇଅଛି । ଆଡ଼େ ପାର୍ଶ୍ୱେ ଦୁଇ କୋଶ ବିସ୍ତାର ଅଟଇ । ଅମୃତ-ତରଙ୍ଗିଣୀ ନଦୀ ପାର୍ଶ୍ୱରେ ରହିଅଛି । ପୃଥ୍ୱୀ ଦେବୀର ଶିରରେ ପୁଷ୍ପମାଳାର ପ୍ରାଏ ଶୋଭାପାନ୍ତା ହୋଇଅଛି । ସେ ପଦାରେ କୋମଳ ତୃଣମାନେ ଅଙ୍କୁରନ୍ତେ ମଣିମାନଙ୍କର ଶିଖା ପ୍ରାଏ ଦିଶୁଅଛନ୍ତି । କୁମର ଆସିବାର ସୈନ୍ୟ ଗହଳ ଶୁଣି । ଯୋଗୀକି ଜଣାଇଲା ସେ ଭୂତ ଶ୍ରେଷ୍ଠ ଚୂଡ଼ାମଣି । ହେ ନାଥ ! ସର୍ବମନୋହାରିଣୀ ଦ୍ରାକ୍ଷିଣୀ ଯେ ଯାଇଥିଲା । ସେ ଉପାୟ ବଳରେ କରି କୁମରକୁ ଆଣିଲା ।

ଏବଂଭୂତ ବାର୍ତ୍ତା ପାଇଲା ଯହୁଁ । ଯୋଗୀ ମୋହନ ବିଦ୍ୟା ଧଇଲା ତହୁଁ । କାଳୀ ମୋହିନୀ ଯେନ ଲଗାଇଲା ମାୟା । ଚକ୍ଷୁକୁ ଝାମ୍ପି, ମେରୁ ଟେକି, ନାଭି ଆକୋଚି, ପଦ୍ମାସନେ ବସିଅଛି ଆରମ୍ଭେ । ସିଦ୍ଧ ପୁରୁଷ ପ୍ରାୟ ଦିଶୁଅଛି ଦମ୍ଭେ । କୁମର ଆସିବା ଜାଣି । ଉପସର୍ଗୀ ଯକ୍ଷିଣୀକି ସୁମରି । ଜାଳନ୍ଧର ବିଦ୍ୟା ବିମରି । ଆପଣା ସେହି କ୍ଷଣି ସୈନ୍ୟ ଗୋଟାଏ ଦେଖାଇଲା କୁମରକୁ ସମାନ କରି । ଯୋଗିଣୀ ପଟୋଆରି ସୈନ୍ୟ ହୋଇଛନ୍ତି ଉଭା । ସେ ଗନ୍ଧର୍ବନଗର ମଧ୍ୟେ ଧୂମ୍ର ମେଘଖଣ୍ଡ ପ୍ରାଏ ଯୋଗୀର ଦିଶୁଅଛି ପ୍ରଭା । ସେ କାଞ୍ଚନସ୍ଥଳୀ ନଦୀ ପାଉଅଛି ଶୋଭା । ଗନ୍ଧର୍ବନଗର ପ୍ରାଏ ଅଶ୍ୱ, ଗଜ ପଦାନ୍ତିବଳ ଗୋଟାଏ

ଦେଖି ଆଶ୍ଚର୍ଯ୍ୟ ପାଇ—କେ ବୋଇଲା ଏବେକ୍ଷଣି ନ ଥିଲା, କାହୁଁ ଅଇଲା, କେ ବୋଲଇ ଅନ୍ୟ ରାଜାର ଥାଟ କବା ଏ କଟକକୁ ବେଢିଲା । ବୀର ପୁରୁଷମାନେ ଆଗଭର ହୋଇଲେ । କରଯୁଗଳେ ଧନୁବାଣ ଧଇଲେ । ପାଦାତ୍ମମାନେ ଯୁଦ୍ଧ କରିବାକୁ ସଞ୍ଚରିଲେ । ରାଜାପୁଅ ମନ୍ତ୍ରୀପୁଅ ଚମତ୍କାର ପାଇଲେ । ଏମନ୍ତେ ଯୋଗୀ କଡରେ ହୋଇ । ଦିବ୍ୟ ପଦାର୍ଥମାନନ୍ତ ଦେଇ । ପାଏ ପଡ଼ ଶୋଇ । ଯୋଗୀ ଦୁଇ କୁମରଙ୍କୁ ହାତଧରି ଚୌକି ବସାଇଲା । କାଳନ୍ଦୀତନ୍ତେ ମିଶାଇଲା । ମନ୍ତ୍ରୀପୁଅ ଗୁଣଶୀଳର ବୁଦ୍ଧି ସ୍ତମ୍ଭିଲା । ବସ୍ତୁରତ ମୁଦ୍ରା ଚୁମ୍ବିଲା । ରାଜପୁତ୍ରର ସୌନ୍ଦର୍ଯ୍ୟପଣ ଦେଖି ଆଶ୍ଚର୍ଯ୍ୟ ହୋଇଲା । ଧନ୍ୟ ଧନ୍ୟ ଏ ପୃଥ୍ୱୀ ବୋଲି ମନେ ମନେ ବୋଇଲା । ଯୋଗୀ ସଙ୍ଗତେ ଚତୁଃଷଷ୍ଠୀ ଯକ୍ଷିଣୀ ମାତୃକା ସହିତ ହୋଇଥିଲେ । ସକଳେ କୁମର ରୂପ ଦେଖି ମୋହରେ ପଡ଼ିଲେ । ଅନଳ ଖେଚରୁ ସୂକ୍ଷ୍ମ ଭାବେ କହିଲା । ଏ କୁମର ନିଜଗତକୁ ମୋହିଲା । ଏହାର ପାଇଁ ଟି ପାର୍ବଣି ସେ କନ୍ୟାକୁ ଦେହରୁ ଜାତକଲେ । ଉପାୟ କରି ଏହାକୁ ବଶ କରିଥିବୁ । ଏହା ସନ୍ନିଧିକୁ ଅଇଲେ କନ୍ୟା ଘେନି ଯିବୁ । ଏ କଟକରେ ଚଢ଼ ଭୟ ନାହିଁ ।

ଭୂତ ଯହୁଁ କହିଲା ଏ ବାଣୀ । ଯୋଗୀ ପ୍ରୀତ କରିବ ବୋଲି ଚକ୍ଷୁ ବୁଜି ବସିଲା ଟାଣି । କୁମର ବୋଇଲା ଥିଲକାହିଁ । ଯୋଗୀ ବୋଇଲା ବାବା ପୁଷ୍ପଗିରିରେ ଥିଲୁ । ତ୍ରିବେଣୀରେ ସ୍ନାନ କରି ଅମୃତ ପାରଣା କଲୁ । କୁମର ବୋଇଲା ଗୋସାଇଁ ବୟସ କେତେ । ଯୋଗୀ ବୋଇଲା ନକ୍ଷତ୍ର ଗଣିଲେ ହୋଇବ ଯେତେ । ମନ୍ତ୍ରୀପୁଅ ବୋଇଲା ଗୋସାଇଁ, ପୂର୍ବ ଆଶ୍ରମ କାହିଁ । ଯୋଗୀ ବୋଇଲା ବାବା ଦେଖିଲ ଯହିଁ । ଜଗତଯାକ ଯାହାତହୁଁ ଜନ୍ମ । ତାହାକୁ ପୂର୍ବ ଆଶ୍ରମ ପଗ୍ଭରିବାର କେବଣ ଭ୍ରମ । କୁମର ବୋଇଲା ମିତ୍ର ଏ ପରମ ଯୋଗେନ୍ଦ୍ର ପୁରୁଷ । ଧନ୍ୟ ଧନ୍ୟ ଆମ୍ଭର ଆଜର ଦିବସ । ଧନ୍ୟ ଧନ୍ୟ ଏହାଙ୍କୁ ଦେଖିଲେ ହେ ପୁଣ୍ୟ । ଯୋଗୀ ବୋଇଲା ବାବା । ତୁମ୍ଭ ଦୁଇମିତ୍ରଙ୍କୁ କଛି ଦେଖାଇବା । ଏମନ୍ତ ବସ୍ତୁରେ କୁମର ମଇତ୍ର ବେନି ଯୋଗୀ ମଧ୍ୟରେ କରି ହୋଇଲେ ଜଣ ତିନି । ସମସ୍ତ ସୈନ୍ୟ ଛଡ଼ାଇ ଖଣ୍ଡିଏ ଦୂର ଗଲେ । ଅଦ୍ଭୁତ କରି ନଗର ଗୋଟିଏ ଦେଖିଲେ । ସେ ନଗର ଦ୍ୱାର ବୈଦୁର୍ଯ୍ୟ ମଣିରେ ନିର୍ମାଣ କଲା ଅଛି । ଦୁଇ କାଳୁଆ ହାଣ୍ଡି ଉପରେ ଉଠିଲେ

ନ୍ତ ନ ପାଇ । ଦୁଇ ପାରୁଶରେ ସ୍ଫଟିକର ଦୁଇପୁଡ଼ା ଲଗିଅଛି । ସେଠାରେ ସହସ୍ରେ ପଦବାଣୀ ଠିଆ ହୋଇଅଛନ୍ତି । ସେ ପଦବାଣୀମାନେ ଯୋଗୀଙ୍କ ଦେଖି ହଉଗୁଳ କରି ବାଟ ଛାଡ଼ିଦେଲେ । ବେନ କୁମର ଦେଖି ଆଶ୍ଚର୍ଯ୍ୟ ପାଇଲେ । ବୋଇଲେ ଏ ମଣ୍ଡପଠାରେ ନଗର କାହିଁ । କେହୁଣସି କାଳେ ତ ଦେଖିଲୁ ନାହିଁ । କାଲି ମୃଗୟା ଯିବା ବେଳେ ତ ନ ଥିଲା । ଏତ ଅପୂର୍ବ କାହୁଁ ଅଇଲା । ଏମନ୍ତ ବିଗୃରୁଅଛନ୍ତି ଅନ୍ତର୍ଗତେ । କଛି କହି ନ ପାରୁଅଛନ୍ତି ଯୋଗୀର ପ୍ରୀତ ନମିତ୍ତେ । ଏମନ୍ତେ ଛନ୍ତ ସବୁ ଦ୍ୱାରଯାକ ରତ୍ନେ ଜଡ଼ିତ ହୋଇଅଛି । ଉଲଗ୍ନ ସ୍ତ୍ରୀଏ ପ୍ରାୟେ ଦଣୁଅଛି । ସେ ସ୍ତ୍ରୀବୃନ୍ଦ ଗୋଷ୍ଠୀକୁ ଘେନ ବେଷ୍ଟିତ ହୋଇ କୁମରକୁ ଘେନ ଭିତରକୁ ପଶିଲା । ସେହିମତେ ଅନେକ ସ୍ତ୍ରୀ ଅନେକ ଧନରତ୍ନ ଅନେକ ଘରମାନ ଦେଖାଇଲା । ତଦନନ୍ତରେ ସରୋବର ଗୋଟିଏ ଦେଖାଇଲା । ତହିଁର ମଧ୍ୟେ ଏକ ମଣ୍ଡପେକ ଅଛି । ତହିଁରେ ନେଇ କୁମରକୁ ବସାଇଲା । ସେ ସ୍ତ୍ରୀମାନଙ୍କୁ ଆଜ୍ଞା ଦେଲା । ଦୁଇ ମିତ୍ରଙ୍କୁ ମାର୍ଜଣା କର ବୋଇଲା । ଯୋଗୀ ଆଜ୍ଞା ପ୍ରମାଣେ ସହସ୍ରେ କନ୍ୟା ନିତମ୍ବବତୀ ଚନ୍ଦ୍ରମୁଖୀ ଅଛନ୍ତି । ସୁନ୍ଦରୀ ସମସ୍ତେ ହେଁ ଯାଇଁ ଦିବ୍ୟ ବେଶ କରାଇଲେ । ମର୍ଦ୍ଦନ ସ୍ନାନ ସାରି ବିମୁଣ୍ଡି ଗଭା ବାନ୍ଧିଲେ । ଦିବ୍ୟ ମଣିମାନ ଆଭରଣ କରାଇଲେ । ଦେବାଙ୍ଗ ବସ୍ତ୍ର ପିନ୍ଧାଇଲେ । ଭିତରକୁ ନଅନ୍ତେ ଦ୍ୱାର ପର୍ଯ୍ୟନ୍ତେ ଘେନଗଲେ ।

କଉଁ ଦ୍ୱାରେ ଦିବ୍ୟ ଯାନମାନ ଅଛନ୍ତି । କଉଁ ଦ୍ୱାରେ ମତ୍ତହସ୍ତୀମାନ ଅଛନ୍ତି । କଉଁ ଦ୍ୱାରେ ରଥମାନ ଅଛନ୍ତି । କାହିଁ ଦିବ୍ୟ ତୁରଙ୍ଗମାନଙ୍କୁ ପନ୍ତ ପନ୍ତ କରି ବାନ୍ଧିଅଛନ୍ତି । କଉଁ ଦ୍ୱାରେ ଅମାତ୍ୟମାନେ ଅଛନ୍ତି । କାହିଁ ମୁକୁଟବାନ୍ଧା ଯୋଦ୍ଧାମାନେ ଅଛନ୍ତି । କଉଁ ଦ୍ୱାରେ ପରିବାରମାନେ ଯୋଗୀଙ୍କ ଦେଖି ଋବଧମତେ ସେବା କରୁଛନ୍ତି । କାହିଁ ଗୀତ ଗାୟନ ହେଉଅଛି । ଏବଂଭୂତ ଦ୍ୱାରମାନଙ୍କରେ ଯୋଗୀଙ୍କ ଦେଖି ଆସନ ଉପେକ୍ଷି ପାଏପଡ଼ି ଶୋଇ ବାଟ ଛାଡ଼ି ଦେଉ-ଅଛନ୍ତି । ପୁଷ୍ପ ବୃଷ୍ଟି କରୁଅଛନ୍ତି । ଏମନ୍ତେ କାହିଁ ମାଲଯୁଦ୍ଧ, କାହିଁ ପାରୁଆହଟ, କାହିଁ ମେଣ୍ଢାଯୁଦ୍ଧ, କାହିଁ ବାଦ୍ୟାବାଦ, କାହିଁ ଦିବ୍ୟ ଗୀତ ଗାନ ହୋଉଅଛନ୍ତି । ଏ ସବୁ ଦେଖିଲା ଉତ୍ତରେ ଦ୍ୱାରମାନନ୍ତ ଜଣି । ସେଠାରେ ପୁର ଗୋଟିଏକ ଅଛି । ଅଳକାପୁରକୁ ସମାନ ଜାଣି । ସେ ପୁରେ

ଅଳଙ୍କାର ଯୁକ୍ତ ହୋଇ କନ୍ୟାମାନେ ଧୂପ ଘେନିଅଛନ୍ତି । ଚନ୍ଦ୍ରଜ୍ୟୋତ୍ସ୍ନା ପଡ଼ିବାରେ ପିନ୍ଧିଲା ବସ୍ତ୍ରମାନେ ଉଜ୍ଜ୍ୱଳ ପ୍ରାୟେ ଦିଶୁଅଛନ୍ତି ।

ତକ୍ଷଣେ ସୂପକାରମାନେ ଠା କରାଇ ଚଉରାଶି ପ୍ରକାରରେ ମନୋହ୍ନ କରାଇଲେ । ତଦନନ୍ତରେ ସ୍ତ୍ରୀମାନେ ଘୁମର ଆଳଟ ଧରି ନୃତ୍ୟ କରିବାରେ ଲାଗିଲେ । ପଲଙ୍କରେ ଯୋଗୀ ବିଜେ କରିଅଛି । ଦୁଇ ମିତ୍ର ତ ଅନ୍ୟ ପଲଙ୍କ ଗୋଟିକେ ବସିଅଛନ୍ତି । ପୁଣ ପୁଣ କରି ବିଚାରୁଅଛନ୍ତି ମନେ ମନେ । ରାଜ୍ୟ ନ ପୁଣ ଘେନଇ ମାୟା ପ୍ରକାରେ । ଏହାର ତଥ୍ୟ ଜାଣି ନୁହଇ । ପୁଣି ବିଚାରିଲେ ଏ ଯୋଗେନ୍ଦ୍ରମାନଙ୍କୁ ରାଜପଦ ସରି ନୁହଇ । ଏ ସମ୍ପଦକୁ ଚାହିଁଲେ ରାଜପଦ ଦରିଦ୍ର ସିନା । ଏମନ୍ତେ ଦୁଇ ମିତ୍ର କଥା ହୁଅନ୍ତେ ଯୋଗୀ ବୋଇଲା ବାବା ଆମ୍ଭ ଆଶ୍ରମ ଏହିଠାରେ । ଏଠାକୁ ତୁମ୍ଭେ ଆସୁଥିବ । ସିଦ୍ଧଗଣ ପରାଏ ଦିଶୁଥିବ । ଉଲ୍ଲାସ ପାଇ ହସୁଥିବ । ପୂର୍ବ କର୍ମାଦି ଦୋଷ ନାଶୁଥିବ । ଏବେ ତୁମ୍ଭେ ବିଜେକରି ଯାଅ । ନଗରେ ପ୍ରବେଶ ହୋଅ । ଶୀତଳ ମନୋହ୍ନ କରି ପଲଙ୍କରେ ଶୁଅ । ତୁମ୍ଭର ଯେବେ ଶ୍ରଦ୍ଧାଥିବ । ଏହିଠାରେ ଆମ୍ଭଙ୍କୁ ଦର୍ଶନ ପାଇବ । ଏମନ୍ତ ବୋଲି ବସ୍ତ୍ର ଅଳଙ୍କାର ଦେଇ ରାଜାପୁଅ ମନ୍ତ୍ରୀପୁଅକୁ ଦେଲା ପଠିଆଇ । ସେ ପାଦେ ପ୍ରଣାମ କରି ଧାଡିକାରେ ଅଇଲେ । ଧନ୍ୟ ହୋଇଲୁ ଧନ୍ୟ ହୋଇଲୁ ବୋଲି ବୋଇଲେ । ଏ ଉତ୍ତରେ ତୁରିତେ ଗଲେ । ସୈନ୍ୟବଳ ଘେନି ନଗରେ ମିଳିଲେ । ରାଜା ଛାମୁରେ ପ୍ରଣାମ କଲେ । ଯୋଗୀର ଚମତ୍କାର କଥାମାନ କହିଲେ । ରାଜା ବୋଇଲେ ପ୍ରାତ ସମୟରେ ଯାଅ । ସେ ମହାତ୍ମା ପୁରୁଷକୁ ଆମ୍ଭ ଛାମୁକୁ ଅଣାଅ । ନଗରେ ବୁଲାଇବା । ଦିବ୍ୟ ପଦାର୍ଥମାନ ଦେବା । ଯେତେମାନେ ପାରି ସେବା କରୁଥିବା । ମାୟା ନିର୍ମାୟା ଜାଣିବା । କପଟ ବୁଦ୍ଧି ଥିଲେ ହାଣିବା । ଏମନ୍ତ ଆଜ୍ଞା ଦେଲା ଯହୁଁ । ରାଜ ପାହୁଁ ପାହୁଁ ଦିବ୍ୟ ତୁରଙ୍ଗ ଚଢ଼ି ପ୍ରଭାତ କାଳେ ବିଜେ କଲେ ତହୁଁ । ଉଷା ବେଳେ ଦେଖିଲେ ଯେହୁଁ ସେ ନଗର ଘର କିଛି ନାହିଁ । ଯୋଗୀ ପାଉଁଶ ଗଦାରେ ଶୋଇଅଛି । ସ୍ତ୍ରୀ ଭୋଗ କଲାର ସମ୍ବନ୍ଧର ବିନ୍ଦୁଧାରା ଗୋଟିଏ ବହୁଅଛି । ହଠଯୋଗ ସାଧନ ସାରିଅଛି । ନିଦ୍ରା ରସ ସରିଅଛି । ମର୍କଟ ବେଶ ଧରି ଅଛି । ଚକ୍ଷୁ ମନ୍ଦ ମନ୍ଦ କରି ମିଟି ମିଟି କରି ଚାହିଁ ଅଛି । ଏମନ୍ତେ ସେ କୁମର ସନ୍ନିଧେ ମିଳିଲା । ଭୂତଚୂଡ଼ାମଣିର ନିଦ୍ରା ଭାଙ୍ଗିଲା ଯହୁଁ । ସେ ଟେକି ହୋଇ ବସିଲା । ବିଭୂତି ଘସିଲା ।

ମୋହନମୁଦ୍ରା କଲ । ବଶୀକରଣରେ କୁମରକୁ ମୋହିଲ । କୁମର କରପନ ଯୋଡ଼ ପ୍ରଦକ୍ଷିଣ କରି କହିଲ, ଗୋସାଇଁ ଆଶ୍ରମ ନଗରେ ତ କେହି ନାହିଁ । ଯୋଗୀ ବୋଇଲ ଅଛୁ ଅଦୃଶ୍ୟ ହୋଇ । ତୋତେ ମୁଁ ଦେଖାଇଲେ ହଣିବ ନା । ସେ ଘଟେ ହବ୍ୟସ୍ଥିତ ଅଘଟଇ । ଏହା ଶୁଣି କୁମର ବୋଇଲ ଗୋସାଇଁ । ଏବେ ମୁହିଁ ଯାହା ମାଗିବି ବର । ପ୍ରସନ୍ନ ହୋଇ ମୋତେ ଅନୁଗ୍ରହ କର । ଯୋଗୀ ବୋଇଲ ବାବା ମାଗୁ କ ନା ? ଆମ୍ଭ ତୁମ୍ଭର ନୋହିଛୁ ନା ଭିନ୍ନ । ସକଳ ଘଟେ ପୂରିଅଛୁ ମୁଁ ଜାଣି । ବାଞ୍ଛା ସିଦ୍ଧ ନ କଲେ ତୋହର ଆମ୍ଭଙ୍କୁ ଭକତି କମ୍ପା ପୁଣି । ଏହା ଶୁଣି କୁମର ବୋଇଲ । ନଗର ଭିତରେ ହନାଗୃହ ଆସନ କରି ରହିବ । ଯୋଗୀ ବୋଇଲ ବାବା ନଗର ଆମ୍ଭଙ୍କୁ ଶ୍ମଶାନ ସିନା । ବନ ଗୃହ ଆମ୍ଭଙ୍କୁ ଭେଦ ନାହିଁ କନା । ଯହିଁଥିଲେ ଆମ୍ଭଙ୍କୁ ସମସ୍ତ ଠାବ ଶୋଭା । ତୋହର ଭକ୍ତିବଳରୁ ଯିବା । ତୁମ୍ଭ ନଗ୍ରେ ହନାକେତେ ରହିବା । ଏମନ୍ତ ବୋଲି ଯୋଗୀ ବୋଇଲ ତୁମ୍ଭେ ଆଗ ହୋଇ ଗୃଲ । ଏମନ୍ତେ ଯୋଗୀ କୁମରକୁ ଆଗେ ଚଳାଇଲ । ବେତାଳମାନଙ୍କୁ ହକାରି ବୋଇଲ । ତୋଳଧରି ଥିବ ମୋତେ ଅଦୃଶ୍ୟ ହୋଇ । ଆସନ ଗୃହ ପାରୁଶରେ ଥିବ ଗୃହ ବାରେ ଉଭା ହୋଇ । ଥିରେ ଥିରେ ଗଲେ ତୁମ୍ଭଙ୍କୁ କେହି ନ ଦେଖିବ । ଏମନ୍ତ ଆଜ୍ଞା ଦେଇ ପଦ୍ମାସନେ ବସିଲ । ବେତାଳେ ତୋଳ ଧରିଆଣୁ ଅଛନ୍ତି । ଆକାଶରେ ସିଦ୍ଧର ଗମନ ହୋଇଲ ବୋଲି ଲୋକେ ଜାଣୁଅଛନ୍ତି । ଯୋଗୀ ଆକାଶେ ଗମନ୍ତେ, ବେତାଳେ ତାକୁ ତୋଳ ଧରନ୍ତେ । ଶୂନ୍ୟରେ ଆକାଶରେ ଥିଲ ପ୍ରାପ୍ୟେକ ହୋଇ । ଜାଳନ୍ଧର ମୁଦ୍ରା ଫେଇ ।କଲ୍ପଔଷଧି ଖାଇ । ଶୀତଭସ୍ମ ଘସି । ଅଳ୍ପ ଅଳ୍ପ ହସି । ଯୋଗୀକ ମଣ୍ଡଳାକାର କରି ପନ୍ଥେ ଥାଏ ବେଢ଼ି ଅଛନ୍ତି । କୁମର ବଡ଼ ଘୋଡ଼ାଟାଏ ଚଢ଼ି ଚଲୁଉଅଛି । ନିରନ୍ତରେ ପୁଷ୍ପବୃଷ୍ଟି ହେଉଅଛି । ଯୋଗୀ ମଧୁରବାଣୀ କହୁଅଛି । ବନ୍ଦ ବନ୍ଦ ଲୀଳା ନେନେ ଗୃହୁଁଅଛି । ପୋଅମାନେ ଆନନ୍ଦେ ଗହଳେ ଚତ ପାଇଁ ଧାଇଁ ଅଛନ୍ତି । ପୂର୍ବେ ଅନେକ ପିଷ୍ଟପ ଖାଇଅଛନ୍ତି । ଧାପେ ସେଁ ସେଁ ହେଉଅଛନ୍ତି । ମଧୁର-ବାଣୀ କହୁଅଛନ୍ତି । ସ୍ତ୍ରୀମାନେ ଜଳାକପାଟି ଫେଢ଼ି ମୃଗଲୋଚନେ ଗୃହିଁାନ୍ତେ ମାଳଉତ୍ପଳ ପୁଷ୍ପସମୂହରେ ଯୋଗୀକ ପୂଜାକଲ ପ୍ରାପ୍ୟେକ ଶୋଭା ପାଉଅଛି । ସେ ଯୋଗୀ ଜଗତ ଯାକ ମୋହୁଅଛି । ଭୂତ-ଚୂଡ଼ାମଣି ଅଦୃଶ୍ୟ ହୋଇ ପାଟଛତ୍ର ଗୋଟାଏ ଧରିଅଛି । ସେ ଛତ୍ର

ଶୂନ୍ୟରେ ବହୁଳ ପତାଏ ଦିଶୁଅଛି । ନିରନ୍ତରେ ଲୋକ ପାପେ ପଡ଼ି ଶୋଉଅଛି । ରାଜମାର୍ଗ ମୋହୁଅଛି । ଏମନ୍ତେ ସେ କାମାନନ୍ଦ ଐନ୍ଦ୍ର-ଜାଲିକ ଯୋଗୀନ୍ଦ୍ରନଗର ଦ୍ୱାରେ ପାଇଲା । ପାଞ୍ଚଦ୍ୱାର ଲଙ୍ଘିଯାଇ ରାଜାର ଆସ୍ଥାନ ଗୃହେଁ ଆଶ୍ଚର୍ଯ୍ୟ ପାଇଲା । ଭୂମିକି ଗୁଡ଼ି ଆସିବା ଦେଖି କୃତ୍ୟ କୃତ୍ୟ ହୋଇ ମହାଗୌରବ କଲା । ସିଂହାସନୁ ଉଠି ଯୋଗୀକି ଭେଟିବା ପାଇଁ କେତେ ପାଦଗୋଟି ଗଲା । ଦିବ୍ୟ ପଲଙ୍କ ଗୋଟାଏ ଆସନ ଦେଇ ମହା ପୂଜାକରି ବୁଦ୍ଧିରେ ବିମରି ବିଷରୁଁ ଅଛନ୍ତି । ଏ ସିଦ୍ଧପୁରୁଷ ଅଟଇ । ନୋହିଲେ ଆକାଶରେ ଆସିବ କି । ଏମନ୍ତ ଯୋଗ ଲକ୍ଷଣ ତ କାହିଁ ଦେଖିଲା ନାହିଁ । ପୁଣି ବିଚାରିଲା ସିଦ୍ଧମାନଙ୍କର ମନୁଷ୍ୟ ସଙ୍ଗତେ କି କାର୍ଯ୍ୟ । ଏହା ତ ଜାଣି ନୋହଇ । ଆଦ୍ଭୁତ ଏହାର ଉତ୍ତମ ଗୁଣମାନଙ୍କ ଦର୍ଶନରେ ଜାଣିମା । ରାଜା ମଉନ ହୋଇ ମନେ ମନେ ବିଚାରନ୍ତେ, ଯୋଗୀ କର୍ଣ୍ଣ ପିଶାଚୀ ଯକ୍ଷଣୀକି ବୋଇଲା । ରାଜା ମନେ କି ବିଚାରୁଅଛି । ଏହା ମୋତେ କହ । ଯକ୍ଷିଣୀ ମନେ ପଶି ରାଜାର ହୃଦୟ ବିଚାର କାମାନନ୍ଦ ଯୋଗୀର କର୍ଣ୍ଣରେ କହିଲା । ଅଦୃଶ୍ୟ ହୋଇ ରାଜାକୁ ଯୋଗୀ ବୋଲୁଅଛି । ହେ ରାଜେନ୍ଦ୍ର ! ଆମ୍ଭ ବିଚାରରେ ଭ୍ରାନ୍ତକଲୁ । ତୁ ଯେ ବିଚାରିଲୁ ସିଦ୍ଧମାନେ କମ୍ପା ମନୁଷ୍ୟ ଦର୍ଶନ କରିବେ ବୋଲି । ପୂର୍ବେ ମହର୍ଷିମାନେ, ଲୋମଶ, ପରାଶର, ବଶିଷ୍ଠ, ବିଶ୍ୱାମିତ୍ର ଆଦିକରି ଏମାନେ ପରମସିଦ୍ଧ ସିନା । ଏ ପୁଣି ରାଜାମାନଙ୍କୁ ଭେଟ ନୁହନ୍ତି କି ? ଗୋରେଖ ମହେନ୍ଦ୍ର ଆଦି ସିଦ୍ଧମାନେ ହେଁ ରାଜାମାନଙ୍କୁ ଭେଟ ଦେଇ ନମସ୍କାର କରନ୍ତି । ଏମନ୍ତ ମନକଥା ଯୋଗୀ ଜାଣିଲା ଯହୁଁ । ରାଜା ମହାଭୟ ପାଇ ପୂଜାକଲା ତହୁଁ । ଯୋଗୀକି ବନମାଳା ଗୋଟିଏ ହୃଦୟରେ ଲମ୍ବାଇ, ଚଉସମ ଘସାଇ । ହସ୍ତରେ ଦିବ୍ୟ ପଦାର୍ଥମାନ ଦେଉଅଛି । ଯୋଗୀ ସେହିକ୍ଷଣି ଉଲୁକ ବିଭୂତି କପୋଳେ ଘଷିଲା । ଅଦୃଶ୍ୟ ହୋଇଲା । ମନରେ ସନ୍ଦେହ ପାଞ୍ଚିଲାକୁ ଅନ୍ତର୍ଦ୍ଧାନ ହୋଇଲା ବୋଲି ବୋଇଲା । କୁମର ସହିତେ ସମସ୍ତେ ହେଁ ଆକୁଳ ହୋଇଲେ । ହସ୍ତପ୍ରାପତ ନିଧି ଗଲା ବୋଲି ବୋଇଲେ । କାକୁସ୍ଥ ବଚନମାନ ଉଚ୍ଚାରିଲେ ଯହୁଁ । ବିଭୂତି ପୋଛି ରତ୍ନ ପଲଙ୍କେ ବିଜେକଲା ତହୁଁ । ରାଜା ସହିତ ହୋଇ ସମସ୍ତେ ହେଁ ପାଦପୂଜା କଲେ । ସ୍ୱୟଂ ଈଶ୍ୱର ବୋଲି ବୋଇଲେ । ଅନେକ ଧନରତ୍ନମାନ ଗ୍ରୁମୁରେ ଥୋଇଲେ । ମୁଖକୁ ଚାହିଁ ତୃଷ୍ଣୀଭୂତ ହୋଇଲେ । କୁମର ସହିତେ ହୋଇ ସମସ୍ତେ ହେଁ ସଭାରେ ଅଛନ୍ତି । ଏମନ୍ତ ସମୟରେ ଅଦ୍ଭୁତ ହୋଇ ମଧୁମାଳତୀ ବୋଲି

ଗାୟଣ ଗାୟଣୀ ପ୍ରବେଶ ହୋଇଲେ । ସେ ମଧୁ ନାମେ ଗାୟଣ ମାଳଶ୍ରୀ ସହିତ ହୋଇ ପ୍ରବେଶ ହୋଅନ୍ତେ, କି ଚନ୍ଦ୍ରଦେବତା ରୋହିଣୀ ସହିତ ହୋଇ ଅଇଲେ । କି କାମଦେବ ରତି ସହିତ ହୋଇ ଅଇଲେ ।

ସେ ଗାୟଣଙ୍କ ଅନେକ ବର୍ଣ୍ଣ । ଦୀର୍ଘ ବାହୁ ବିଶାଳାକ୍ଷ । ଦୀର୍ଘ ମାଳା ଗୋଟିଏ ଭିଡ଼ିଅଛି । ଅନେକ ଅଳଙ୍କାର ଭିଡ଼ିଅଛି । ସେ ମଧୁ କେମନ୍ତ ଅଟଇ । ଅଳଙ୍କାର ଭିଡ଼ିଅଛି । ହରିତ ବସ୍ତ୍ର ଗୋଟାଏ ପିନ୍ଧିଅଛି । ନାନା ପୁଷ୍ପେ ଚୂଳ ଗୋଟିଏ ଛନ୍ଦିଅଛି । କର୍ପୂର ତାମ୍ବୂଳ ଖାଉଅଛି । ଏକ ଗୋଡ଼କେ ତ୍ରିଭଙ୍ଗି ପ୍ରାୟେ ଉଭା ହୋଇଅଛି । ବଁଶୀରେ ହାତ ଦେଇଅଛି । ସେ ମାଳଶ୍ରୀ କେମନ୍ତ ରଟଇ । ସରୁ ସହଳ କୁଞ୍ଚିକରି ପିନ୍ଧିଅଛି । ବାମଭାଗକୁ ଓହଳାଇଲା କରି କବରୀଭାର ବାନ୍ଧିଅଛି । ଉତ୍ତୁଙ୍ଗ କୁଚ ଭାରର ତହିଁ ଲାଗିଅଛି । ରୋମପୁଳକ ଭଙ୍ଗିମ ହୁଅନ୍ତେ ବେପଥୁ ସ୍ୱେଦ ଲାଗିଅଛି । ଅଳ୍ପ ଅଳ୍ପ ହସିଲା ପ୍ରାୟେ ହେଉଅଛି । ଜଗତ-ଯାକ ମୋହୁଅଛି । କର୍ପୂର ତାମ୍ବୂଳ ଖାଉଅଛି । ଅପାଙ୍ଗ କୋଣେ ଚାହୁଁଅଛି । କଜ୍ଜଳପାଣ୍ଡି ଚଢ଼େଇର ଲାଞ୍ଜପ୍ରାୟେ ଶୋଭା ପାଉଅଛି । ମୁଖ ପଦ୍ମର ଜଳେ ଧୋଉଅଛି । ପୌର୍ଣ୍ଣମୀ ଚନ୍ଦ୍ରମା କି ଭୂମିଗତ ହୋଇ ରହିଅଛି । ଈଷଦ୍ଧାସେ କହୁଅଛି । ଅମୃତଧାରା ବହୁଅଛି । ଏବଂଭୂତ ସେ ଅଦ୍ଭୁତ ଗନ୍ଧର୍ବ ଅପ୍ସରା ବେଶଧରନ୍ତାକୁ ଦେଖି ରାଜା ମନେ ମନେ ବିଚାରିଲା । ଆହୋ ଏହାକୁ କି ବୋଲି ଲକ୍ଷିବା । ବିଦ୍ୟାଧର ବୋଲିବା ତ ଭୂମି ଛୁଉଁଅଛନ୍ତି । ଚକ୍ଷୁ ଚଳୁଅଛି । ପୁଷ୍ପମାଳାମାନେ ମଳିନତ୍ୱକୁ ଗଲେଣି । ଲେପ ଚନ୍ଦନମାନେ ସୁଖିଅଛନ୍ତି । ଏଣୁ କରି ସ୍ୱର୍ଗ ପୁରୁଷମାନେ ନୋହନ୍ତି । ନାଗଲୋକ ବୋଲିବା । ଏହାର ଉର୍ଦ୍ଧ୍ୱ ଫଣୀ, ମଣିଦୀପ୍ତି ହେଉନାହିଁ । ଏ ଯେନକରି ଜାଣିଲୁଁ ମର୍ତ୍ତ୍ୟ ଲୋକ ଅଟଇ । ଏମନ୍ତ ବିଚାରି ରାଜା ଆଜ୍ଞା ଦେଲା । ଆହୋ ତୁ କାହିଁରେ, କୀର୍ତ୍ତି ପତାକା ପ୍ରକାଶ କରୁଅଛି । କି ଅବା ବିଦ୍ୟାଜାଣୁ । କାହାର ପରିବାର ଅଟୁ । ଅପୂର୍ବବିଦ୍ୟାଥିଲେ ପ୍ରକାଶ କର ।

ସେ ଏମନ୍ତ ଆଜ୍ଞାପାଇ, ଗାୟେଣ ବୋଲୁଅଛି ଭୋ ରାଜେନ୍ଦ୍ର ! ହାଦେ ସମସ୍ତ ତ୍ରିଭୁବନମଣ୍ଡଳ ନୟନ ହରଣ ପାଶସ୍ୱରୂପା । ଚରାଚର ନେତ୍ର ଚକୋର ଚନ୍ଦ୍ରିକା, ଋତୁନୃପ ଚତୁର୍ଦ୍ଦଶ ଭୁବନ ବିଜୟ ରଥଧ୍ୱଜ

ପତାକା ସକଳ ସୀମନ୍ତିନୀ ଘନ ବିଦ୍ୟୁଲ୍ଲେଖା । ସୁରାନ୍ଧକାର ପଟଳ ନିର୍ଜିତ ପ୍ରଦୀପିକା । ରସ ଜଳଧିନଗ୍ନି ମନ ବେଦ୍ଧକା । ବଳିତ ଲଳିତ ପୃଥୁଳ ଘନ ପୀବର କୁମ୍ଭ ଅନଙ୍ଗାର୍ଣ୍ଣବ ତରଣେ ନୌକା । ନବ ପଞ୍ଚପୁରେ ଦୁର୍ଲଭ ନାୟିକା । ଜଗତ ନିଧେ ନିଧି ଲକ୍ଷ୍ମୀର ଲକ୍ଷମୃତ ସା ମୃତା । ଧର୍ମ ସୁଖ । ସର୍ବପଦ । ସର୍ବ ରସ । ସର୍ବ ନିଧି ଅପାଙ୍ଗଲୀଳୟା ଦାତା । ଉକ୍ତ ଯୋଗେନ୍ଦ୍ର ନୃପତେଃସୁତା । ପ୍ରୀତି ଦାତା । ପ୍ରିୟମ୍ବଦା । ସାମ୍ପ୍ରତ କନ୍ୟକାୟା ଲାବଣ୍ୟ ବର୍ଣ୍ଣନା ଗାଥାରସେକ ଆଦୌ କଥୟାମି । ଏମନ୍ତ ବୋଲି ସେ ମଧୁନାମେ ଗାୟଣ ବିନାୟକ ସରସ୍ୱତୀଙ୍କି ବନ୍ଦ । ହୁଁକାର ନାଦ ଛନ୍ଦ । ନାକ କାକଶିର କଳ୍ପାସ୍ୱର ସ୍ଥାନ ଅମ୍ଳଦ୍ରାବ ଦୋଷାନ୍ତ ନାଶି । ସୁରସ ପ୍ରକାଶି । ବ୍ରହ୍ମମୁଣ୍ଡି, ବଚ, ସୁଣ୍ଠି, ଶର୍କରା, ପିପ୍ପଳୀ, ମଧୁ, ମହାଭୈରବୀ, ନୀଳକଣ୍ଠ ମୂଳାଦି ଔଷଧନ୍ତ ଖାଇ । ମାଳତୀ ସହିତ ହୋଇ । ରାଜଦନ୍ତ ମୂଳ କମ୍ପରେ ଜିହ୍ୱା ଦେଇ । ଅମୃତମୟୀ ନାଦ ଧ୍ରୁଣିକ ଧାୟି । ମାଳାଧର ମାଳବ ରାଗକୁ ଅଳସ ଛନ୍ଦ । ମୂର୍ଚ୍ଛନା ମାଳତୀ ଆଚ୍ଛାଦନ ମଞ୍ଜିର । ଅପସର ତାର ଘୋର ଝମକ ହୁଁକାର କରି ଆଳାପ କଲା । କରି ଗୀତଗାୟନ କରୁଅଛି । ସେ ଗୀତର ଅର୍ଥରେ ଏ କନ୍ୟାର ଗୁଣ ବର୍ଣ୍ଣନା କରୁଅଛି ।

ସେ କେବଣ କେବଣ ପ୍ରକାରେ । ସେ ତରୁଣୀମଣୀ ରାୟେ ଦୁଲଣୀ ମଧ୍ୟ ସଙ୍କୀର୍ଣ୍ଣୀ । ସେ ଶଶିବଦନୀ । ସେ ପିକବଚନୀ । ସେ ମୃଗନୟନୀ । ସେ ଲୀଳାମତ୍ତ କରିବର ଗମନୀ । ସେ ଅମୀୟରସ ଅପୂର୍ବ ବଚନୀ । ସେ ତ୍ରିଭୁବନ ଜନମନ ହାରିଣୀ । ସେ ମନ୍ମଥ ଉତ୍ସୁକ କଳାବର୍ଦ୍ଧିନୀ । ସେ ବିକଚ୍ଛର ବନ୍ଦବାସ ଲେପନୀ । ସେ ପୀତ କୌଷେୟ ସୂକ୍ଷ୍ମବାସିନୀ । ସେ କନକ ସୌଦାମିନୀ କାମିନୀ । ସେ କନ୍ଦର୍ପ ମଂଖ୍ୟାସ୍ତ୍ର ଝଙ୍କୋଷିନୀ । ସେ ମୁନିଜନ ମନ ନାଶିନୀ । ସେ କ୍ରୀଡ଼ାବନ ତରଙ୍ଗ ହାସିନୀ । ସେ ଦିଶାୟୁ କମଳିନୀ । ସେ ଅମୃତ ସଂଜୀବନୀ କନ୍ୟାର ସୁନ୍ଦର ପଣ କହିବାକୁ ସହସ୍ରେ ବଦନେ ଶେଷନାଗ ଅବା କରି ପାରନ୍ତା । ସେ ଯେବେ ସର୍ପବତ୍ ନିଦ୍ରା ଦିବସ ଚେତନ ଥାନ୍ତା । ଚନ୍ଦ୍ର ଦେବତା ଅବା କହି ପାରନ୍ତା ସେ ଯେବେ କ୍ଷୀଣ ବୃଦ୍ଧି ନ ଥାନ୍ତା । କାମଦେବ ଅବା କହି ପାରନ୍ତା । ସେ ଯେବେ ଦେଖିଲେ ଜଡ଼ ପ୍ରାୟେକ ହୋଇ ଲାବଣ୍ୟ ପଙ୍କେ ନ ଲିଟନ୍ତା । ପବନ ଦେବତା ଅବା କହିପାରନ୍ତା । ସେ ଯେବେ ସ୍ତନ

ବସନ ଭିତରେ ବେଳାପ୍ରିତ ନ ହୋଇଥାନ୍ତା । ସରସ୍ୱତୀ ଅବା କହି ପାରନ୍ତେ । ସେ ଯେବେ ନାରାୟଣଙ୍କ ଗ୍ରୀବାରେ ବାଣା ବାହୁ ନ ଥାନ୍ତେ । ବୃହସ୍ପତି ଅବା କହି ପାରନ୍ତା । ଯେବେ ଜାତକ ବେଳେ ତାହାର ଶୁକ୍ର ଅଷ୍ଟବର୍ଗ ଶୁଦ୍ଧ ହୋଇଥାନ୍ତା । ସନତ୍କୁମାର ଅବା କହିପାରନ୍ତା । ସେ ଯେବେ ବାଳକ ନୁହନ୍ତା । ବାସୁକି ଅବା କହିପାରନ୍ତା । ତାହାର ଯେବେ ପୃଥ୍ୱୀଭାର ନ ଥାନ୍ତା । ହିମାଳୟ ଅବା କହିପାରନ୍ତା । ସେ ଯେବେ ନିତ୍ୟେ ଶୀତଳତା ନ ଲଗନ୍ତା । କ୍ଷୀର ସମୁଦ୍ର ଅବା କହିପାରନ୍ତା । ସେ ଯେବେ ମନ୍ଥି ହୋଇ ନ ଥାନ୍ତା ।

ଏମନ୍ତେ ସେ କନ୍ୟାକୁ କେହି ବର୍ଣ୍ଣି ନ ପାରିଲେ ଯହୁଁ । ବ୍ରହ୍ମାର ତହୁଁକ ସକଳ ଦେବତାଏ ଗମନ କଲେକ ତହୁଁ । ଅବଦ୍ୟା ମୃତ୍ୟୁସଞ୍ଜୀବନୀ କରଣୀ କନ୍ୟାର ଗୁଣ ବର୍ଣ୍ଣି ପଚାରିଲେ । ବ୍ରହ୍ମା ବୋଇଲେ ସେ କନ୍ୟାକୁ ଅବା କ୍ଷୀରସମୁଦ୍ର ସମାନ ହୁଅନ୍ତା । ତାହା ତହୁଁ ଜନ୍ମ ପଦାର୍ଥମାନଙ୍କରେ ଯେବେ ଦୋଷ ନ ଥାନ୍ତା । ସେ କନ୍ୟାର ବଦନଚନ୍ଦ୍ରକୁ ପଟାନ୍ତର କରିବ କେ । କ୍ଷୀଣ କଳଙ୍କେ ଜଡ଼ ସେ । ଦିବସେ ଦୂଷିତ ଧୂସର ଦିଶଇ । ପ୍ରେମ ଈଷଦ୍ଧାସ ପ୍ରସନ୍ନ ନ ଦିଶଇ । ପଦ୍ମକୁ ପଟାନ୍ତର ହୁଅନ୍ତା । ସଙ୍କୋଚ ବ୍ୟାକୋଚ ଶିଶିରେ କ୍ଷୀଣ ପୁଷ୍କଳ ଯେବେ ନୁହନ୍ତା । ମଦନ ଦର୍ପଣ ଅବା ବୋଲନ୍ତା । ସେ ନିରସ ଧାତୁ କଠିନ । ମାର୍ଜନେ ସେ ଦିଶଇ । ଅମୃତ ସରୋବର ବୋଲିବା । କଟାକ୍ଷେ ପ୍ରେକ୍ଷଣ ଚଳ ନ ଥିବାଉଁ କରି ନୋହିଲା । ମନ୍ମଥ ସଦନ ଅବା ବୋଲିବା । ଅପାଙ୍ଗ ବାଣର ଭୟେ କରି କାମଦେବ ନାଭି ବିମ୍ବରେ ଥାଇ । ରତି କଳାନିଧି ବୋଲିବା । ସନ୍ନିଧେ ହୋଇଅନ୍ତେ ଭୃତ୍ୟ ପ୍ରାୟେକ ହୋଇ । ଲାବଣ୍ୟ ପାଶ ବୋଲିବା । ସ୍ତନ ଆକର୍ଷ କରନ୍ତେ ହେଁ ନ ଲଗଇ । କେବଳ ବଦନ୍ତି କାମ ଦେବର ବନ୍ଦାପନାବନ୍ଧା । ଖଣ୍ଡେନ୍ଦୁଖଣ୍ଡ ପରଏକ ହୋଇଅଛି କପୋଳାକୃତି । ପଦ୍ମଦଳ ଦୁଇ ଅଛି ମଧ୍ୟରେ । ଭ୍ରମର ଦୁଇ ଅଛି ଶୂନ୍ୟରେ । କୋଦଣ୍ଡ ସାଇଭିଲା ପ୍ରାୟେକ ଭ୍ରୂଲତା ଦିଶଇ । ତିଳପୁଷ୍ପ ଗୋଟିଏ ମଧ୍ୟରେ ଥୋଇଛି ପ୍ରାୟେକ ନାସିକା ପ୍ରକାଶଇ । ବନ୍ଧୁକ କାନ୍ତି ଅଧର ବହ୍ନିର ଭ୍ରାନ୍ତି । ଅମୃତ ରସମାନେ ଶାପର ଦୃତ ପ୍ରାୟେକ ଉଚ୍ଛୁଳି ଅଛନ୍ତି । ଏମନ୍ତ ବୋଲି ପଟାନ୍ତର ଦେଇ ହୁଅନ୍ତା । ଅହୋରାତ୍ର ଯେବେ ସେ ବନ୍ଦାପନା ହୋଉଥାନ୍ତା । କ୍ଷୀରସମୁଦ୍ରୁଁ ଶଙ୍ଖ ଜନ୍ମିଲା । ସେ କ୍ଷୀରର କଠିନ ଆବର୍ତ୍ତକ ଯେଉଁ ସବୁଁ କରି କଣ୍ଠକୁ

ସମାନ ନୋହିଲା । ପାରିଜାତକ ପୁଷ୍ପ ଫୁଟିଲେ ସେ ବାସଇ । ସେ କୁମାରୀ ନାସା କୁଣ୍ଡଳ ଅଫୁଟେ ବସଇ । କଉସ୍ତୁଭମଣି ଦନ୍ତକୁ ପଟାନ୍ତର କରି ହୁଅନ୍ତା । ତହିଁର ମଧ୍ୟରେ ଯେବେ ଭେଦ ନ ଥାନ୍ତା । କଉସ୍ତୁଭୁଁ ସୁନ୍ଦର ହୋଇଲା ଯହୁଁ । କର୍ଣ୍ଣ ପାଶ, ପାଡଅଛି ହରି ହରଷ ଭୟୁଁ । ଐରାବତଗଜ ଶୁଣ୍ଢ ସମାନ ହୁଅନ୍ତା । ବୃଷସଙ୍କର ଭୟ ବାଣ ଭୟ ଯେବେ ପାଇ ନ ଥାନ୍ତା । ଗଙ୍ଗାର ସକାଶୁଁ ନିର୍ମଦ ହୋଇଲା । ତେଣୁକରି ଗମନକୁ ସମର୍ଥ ନୋହିଲା । ସ୍ତନକୁ ଗଜକୁମ୍ଭ ପଟାନ୍ତର କରିବ କେ । କର୍କଶ ଲୋମଶ ନ୍ୟାୟରୁ କଠିନ ସେ । ସମୁଦ୍ରରୁ ଅମୃତ ଖାଇଲେ ସେ ମୋକ୍ଷ ହୋଇ । ବାଳା ଅଧରାମୃତ ଦେଖିଲେ ପରମ ସୁଖ ପାଇ । ଗୁଣକୁ ଅସମ ହୋଇଲା କ୍ଷୀରନିଧି । ତେଣୁକରି ବିଧାତାର ସରିଲା ବୁଦ୍ଧି । ଉପମା ଯେବେ ନୋହିଲା ତ୍ରୈଲୋକ୍ୟେ । ତହୁଁ ଜଗତ ଚନ୍ଦ୍ରା ଗୁଡ଼ ବସିଲା ସମାଧିମତେ । ସମାଧିରେ ଦିବ୍ୟ ଶକ୍ତି ହୋଇଲା ଯହୁଁ । ଏବଂଭୂତ ଉପମା ଦିଶିଲା ତହୁଁ ।

ଭ୍ରାନ୍ତ କାଳନ୍ଦୀତରଙ୍ଗେ । ନୀଳମେଘ ପ୍ରତିବିମ୍ବିତ ଅମୃତ ସମୁଦ୍ର ତରଙ୍ଗେ । ଅପ୍ସରା କୁଚ କସ୍ତୁରୀ ପତ୍ରାବଳୀ ଭଙ୍ଗେ । ଜମ୍ବୁନଦ ଜଳଭୃଙ୍ଗ-ଭୃଙ୍ଗେ । ଖରେ ନୃତ୍ୟନ୍ତ ମୟୂରଣାଂ କେଶଗୁଚ୍ଛ ପ୍ରତିବିମ୍ବେ । ଇନ୍ଦ୍ରନୀଳମଣି କୂଟ ବୃନ୍ଦେ । ନୀଳଉତ୍ପଳ ନଳିନୀ ପୁଞ୍ଜତାନୁବନ୍ଧେ । ଯେବେ ଯମୁନା ସତରଙ୍ଗେ ଥିବ । ତେବେ ସେ କନ୍ୟାର କେଶକୁ ଉପମା ହୋଇବ । ସେ କେଶ କନ୍ଦର୍ପର ତ୍ରୈଲୋକ୍ୟ ବିଜୟ ରଥଧ୍ୱଜ ଚାମର ପରି ଏ ଅଟଇ । କି କାମଦେବର କୋଦଣ୍ଡ ମଣ୍ଡଳମଣ୍ଡନ ଥାନ୍ତା । ସେ କନ୍ୟାର ଲଲାଟ ପାଟିରେ । କି ଈଶ୍ୱରଙ୍କୁ ହାରିଥିଲା କାମଦେବର ଲେଉଟି ପଡ଼ିଲା ବାଳୀରେ କି ଅର୍ଦ୍ଧଚନ୍ଦ୍ରଖଣ୍ଡ ମାଳରେ । କି ଭ୍ରୂଲତା ଭୃଙ୍ଗମାଳରେ । କି ବିଶ୍ୱକର୍ମା ମୟୂରବୈଚିତ୍ର୍ୟ ବୃହସ୍ପତି ଆଦିକରି । ସବୁରି ମୁଖରେ ପଡ଼ିଲା କାଳିରେ । ସେ ଲଲାଟପାଟିକି କି ବୋଲି ବୋଲିବା । ଅମୃତଶିଳା ବୋଲି ଯେବେ ବୋଲିବା । ତହିଁ ମନ୍ମଥ ବିକାର ନାହିଁ । ପରଶ ପଥର ବୋଲି ଯେବେ ବୋଲିବା । ସେ ଲାବଣ୍ୟ ଜଳଧିର ସ୍ୱେଦ-କଣିକା ଅବା ପାଇବ କାହିଁ । ତରୁଣ ଇନ୍ଦୁ ଅବା ବୋଲିବା । ସେ ଦିବସେ ନ ମିଳଇ । କ୍ରୀଡ଼ାରସ ମୁକ୍ତ ଶକ୍ତି ଅବା ବୋଲିବା । ସେ ଦେଖିଲେ ନ ଚଳଇ । କନ୍ଦର୍ପର କୁଙ୍କୁମ ଲେଖପତ୍ରିକା ଅବା ବୋଲିବା । ଏଥି ଅକ୍ଷର ପଂକ୍ତି ନାହିଁ । ଏମନ୍ତ ପ୍ରାୟେ ମଣି । ଈଶ୍ୱର ଅର୍ଦ୍ଧଚନ୍ଦ୍ର ଖଣ୍ଡେ ବନ୍ଧି-

ଅଛନ୍ତି । ସେ ଲଲାଟପଟ୍ଟକୁ ଭାବିବା ପାଇଁ ମଦନାର୍ଣ୍ଣବ ତରିବାକୁ କି ବିଧାତା ସୁବର୍ଣ୍ଣ ନୌକାଏ ଥୋଇଅଛି ଲେଉଟାଇ । ତହିଁ ଗୋଟିଏ ସିନ୍ଦୁର ତିଳକ ବିନ୍ଦୁଏ ଥିବାରେ କେମନ୍ତ ଦିଶୁଅଛି । କି ତରଙ୍ଗ ଗତିକୁ ଉଦ୍ଧ୍ୟ କଲୁ ବୋଲି ମୋହିନୀ ଲକ୍ଷ୍ମୀ ହସୁଅଛି । କାମ ବ୍ରହ୍ମାଣ୍ଡରେ ଲାବଣ୍ୟ ଶଶି ଉଦୟ ହେବାର ପ୍ରାୟେ ଦିଶୁଅଛି । କି ମନ୍ମଥ ଅନ୍ଧକାର...... । କି ଅମୃତ ସମୁଦ୍ର ଭିତରେ ରକ୍ତପଦ୍ମ ଗୋଟାଏ ଶୋହିଅଛି । କି ମହାଦେବର ନୟନାଗ୍ନିରେ ଦଗ୍ଧ ହୋଇ କନ୍ଦର୍ପ ଅଙ୍କୁରିଲା ପ୍ରାୟେକ ଉଇଁଅଛି । ସେ ଗୋରୋଚନା ସିନ୍ଦୂର ତିଳକ ବିନ୍ଦୁ ଅର୍ଦ୍ଧରେ ଚୂର୍ଣ୍ଣ କୁନ୍ତଳମାଳୀ । କି ମନ୍ମଥ ଲତା ଜାଲି । କି ଅତ୍ୟନ୍ତ ରସାଳ । କି ପବନେ ପ୍ରଚଳ ହୁଅନ୍ତେ ମନୋଭବ ନୃପତିର ପଡ଼ିଲା ଅଛି ନୀଳ ପତାକାବଳୀ । ତ୍ରିଭୁବନ ଯୁବା ଜନମାନଙ୍କର ନୟନ ସଫରୀ ବନ୍ଧ କରିବାକୁ ବେଢ଼ାଇଛି କି ଜାଲ ପଟଳ । କୃଷ୍ଣମେଘରୁ ବାହାର ହୋଇଲା ଅଛି କି ଶରଦ ଚନ୍ଦ୍ରର ଝଲ । କି ହିରଣ୍ୟ ବର୍ଣ୍ଣ ମେଘରେ ଜଗତଜନ ଉପ୍ତାତେ କରି ମାରୁଅଛି ମର୍କତ ବଳ୍ଲୀ ।

ଏମନ୍ତେ ସେ କୁଟିଳ ବହଳ ନୀଳ ସ୍ନିଗ୍ଧ ପରିମଳ ସୁରେଖ ମନୋହର ଭ୍ରୂଲତାର ମଣିମୟ, କି କନ୍ଦର୍ପ ପୁଷ୍ପ ଭ୍ରମର ପ୍ରାୟେକ କମନୀୟ । କି କୃଷ୍ଣ ସର୍ପିଣୀର ପ୍ରାୟେକ ଶୋଭନୀୟ । କି ମର୍କତ ଲତାର ପ୍ରାୟେକ ଲୋଭନୀୟ । କି ଇନ୍ଦ୍ରନୀଳମଣି ମାଳା । କି ମୁଖପଦ୍ମ ରହିଲା । ବଦନଚନ୍ଦ୍ରେ ପ୍ରକାଶୁ ଅଛି ଅବା କଳଙ୍କର କଳା । ସେ ବଦନ ସୁଧାନିଧି ସ୍ନେହାନ୍ଧକାର ପଟଳମାନ କଲା ସହୁଁ । ଉଦର ଫୁଟି ଅନ୍ଧକାର ଦିଶୁଅଛି ତହୁଁ । କି ବାହୁ ଭ୍ରମରଙ୍କର କଳ ଛଡ଼ାଇବାର ପାଇଁ ମଧ୍ୟରେ ନୀଳରେଖା କାଟିଅଛି ବିଧାତା ଚନ୍ଦ୍ରପଦ୍ମ ଦର୍ଶାଇ । ବାବୁ ସେ ଭ୍ରୂଲତା ରସଜଳଧିରେ ପଲ୍ଲବ ଅଛି କି । ମନ୍ମଥ ମଞ୍ଜରୀଲତା । କି ଚତୁଃଷଷ୍ଠୀ କଳାର କାଳ । କି କ୍ରୀଡ଼ାରସ ଫଳିବାର ଅମୃତ ତରୁମାଳ । କି ସୁହୃଦ ଭାବୁଁ କରି କାମଦେବ ପୂର୍ଣ୍ଣଚନ୍ଦ୍ର ବିମ୍ବରେ ଲିହିଅଛି ମୃଗମଦ ଅକ୍ଷର ମାଳ । ନୟନ ଦୁଇକି ବର୍ଣ୍ଣିବ କେ । ସ୍ମରଣ ମାତ୍ରକେ ଜଡ଼ ହୋଇବ ସେ । ଚଟୁଳ ବିରଳ ସରଳ ତରଳରେ ସ୍ନିଗ୍ଧ ବିଦଗ୍ଧ ମନ୍ଥର ମନୋହର ଅଳସ, ଅବଶ ପ୍ରେମ ସମ୍ବଳିତ ଭାବାଢ଼ ସୁଖଦ ସୂକ୍ଷ୍ମ ବାଜପ୍ରାୟ । ଅଞ୍ଜନ ରଞ୍ଜିତ । ଖଞ୍ଜରୀଟ ଖଞ୍ଜିତ । ମଧୁର ମନୋହର ହାସ । ମଦୋଦ୍ଦାମ । ହେଳାଳି

ପଟଳ । ନୀଳୋତ୍ପଳ ଉପହସିତ । କୁରଙ୍ଗ ତରଙ୍ଗ ନିରାଶ । ଖଞ୍ଜନ ଚକିତ ରଞ୍ଜନାପୂର୍ବକ । ସାୟକ ଶରାସନ ମୋଚନ । ପଙ୍କଜ ପରିହାସ ଲୋଚନ । ପଙ୍କଜକୁ କି ବୋଲି ବୋଲିବାରେ । ନୀଳଜଳ ବୋଲିବା ତ ଉଷ୍ମତା ଦୋଷୁ ନୋହିଲା । ନୀଳଉତ୍ପଳ ବୋଲିବା ତ ମଳିନତାକୁ ସେ ଯାଇ । ଶିଶୁକୁରଙ୍ଗ ବୋଲିବା ତ ସେ ପ୍ରେମ ପ୍ରସନ୍ନ ନ ଥାଇ । ମନ୍ମଥ ଜଳନିଧି ବୋଲିବା ତ ସେ ଅଳ୍ପ ବେଳେ ସେ ଅଳ୍ପ ବେଳେ ଯାଇ । କାଳିନ୍ଦୀତରଙ୍ଗ ବୋଲିବା ତ ସେ ଗତାଗତ ନୁହଇ । ପୂର୍ଣ୍ଣଚନ୍ଦ୍ର ଦର୍ଶନ ସମୁଦ୍ର ଉଲ୍ଲୋଳ ବୋଲିବା ସେ ତ ବେଗେ ଭାଜଇ । କାମଶର ବୋଲିବା ସେ ଗୁଣରୁ ଖସି ହୋଇ । ସଫରୀଯୁଗ୍ମ ବୋଲିବା ତ ସେ ସୁବାସ ନୁହଇ । ଖଞ୍ଜରୀଟ ବୋଲିବା ସେ ନିରନ୍ତରେ ଚଞ୍ଚଳ ହୋଇ । ଅମୃତବିମ୍ବ ବୋଲିବା ସେ ବେଗେ ଭାଜଇ । ସରସିଜ ଜଳ ବୋଲିବା ସେ ନୀଳ ଚଞ୍ଚଳ ନୁହଇ । କି କାମ କଜ୍ଜଳ ବୋଲିବା ସେ·········। ନୀଳଇନ୍ଦ୍ରମଣି ବୋଲିବାରୁ ସେ କିଛି ନ ଶୋହଇ । ଲବଣ୍ୟ ସାମୁକା ବୋଲିବା ସେ ଗମ୍ଭୀର ନୋହଇ । ଚକୋରଯୁଗ୍ମ ବୋଲିବା ସେ ବିଚ୍ଛେଦୁଁ ନ ମୋହଇ । ପଦ୍ମଦଳ······ଳ ନୁହଇ । ଅନଙ୍ଗ ତ·········ବୃଦ୍ଧି ହୁଅଇ । ଗଙ୍ଗାତରଙ୍ଗ ବୋଲିବାକୁ ସେ ନିରସ ପୁଳିନ । ରତ୍ନ ଦର୍ପଣ ବୋଲିବା ସେ କଳଙ୍କେ ମଳିନ । ନୀଳଉତ୍ପଳ ବୋଲିବା ସେ···············କୁ ନୋହିବ । ଅମୃତ·········ସେ ନିଦ୍ଦିଶଇ । ଲୀଳା ଜଳ ବୁଦ୍‌ବୁଦ୍ ବୋଲିବା ତହିଁ ମନ୍ମଥ ବିକାର ଦିଶଇ । ସ୍ବର ସାରିକା ବୋଲିବା ସେ ଧ୍ୱନି କରୁଥାଇ । ରତ୍ନଦୀପ ବୋଲିବା ତହିଁ ତୈଳ·············ଲବ କେ ପାରିବ ଲକ୍ଷ୍ୟ । ସତ·················ସମୁଦ୍ରମାନ କଉଦ୍ଦୀପ୍ତ କରିଅଛୁ । ଶର୍ଟିକର କାକର । ହିମମନ୍ଦାକିନୀ, ତପନ, କୁନ୍ଦ, କୁମୁଦ, ପୁଣ୍ଡରୀକ, ଗୋକ୍ଷୀର, ବାରି, କମ୍ବୁ, ମୁକ୍ତାବର, ଭୁବନ କନ୍ଦର ସଙ୍ଘର୍ଷଣ ପଟଳାଦି କରି ଯେତେ ଶୁକ୍ଳକୁ ଦେଖି ବିଧାତା ଜନ୍ମ କଲା ଏତେ । ଏମନ୍ତେ ସମସ୍ତ ରୁଣ୍ଡୀଭୂତ କରନ୍ତେ ଯହୁଁ, ନୋହିଲା ସମ । ନିଷ୍ଟପ୍ରେ କାମଦେବକୁ ହୋଇଲା ଯମ । ସେ ନୟନକୁ ଏମନ୍ତ ପ୍ରାଏ ମଣି । ବିଧାତା ଅମୃତ-ଖଣ୍ଡରେ କରିସୁପଙ୍କେ ଜମୁନିଙ୍କ ଜଳେ କାଳନ୍ଦୀ ତରଙ୍ଗ ଗୋଳେ କୃଷ୍ଣ-ପକ୍ଷ ନିଶାରେ ଇନ୍ଦୀବର ଲତା ଏକ ରୁପିଲା । ନୀଳକଣ୍ଠ ଚଢ଼େଇର କଣ୍ଠରୁ ନୀଳ ସ୍ନିଗ୍ଧ ଛେପିଲା । ଇନ୍ଦ୍ରନୀଳମଣି ମର୍କତାଞ୍ଜନ କାଳ ନଳିନ ଜୀମୂତ ମୟୂର ଅଶିତ କୁସୁମ ଚନ୍ଦ୍ର ମଧୁରୁ ପିୟୁଙ୍ଗ କଳଙ୍କାଦି କରି

ସମସ୍ତ ଶ୍ୟାମ ପଦାର୍ଥମାନଙ୍କରେ ଦଗ୍‌ଧ ହୋଇଲା । କାମଦେବର ନୀଳ ଭସ୍ମାଙ୍ଗ ଭରି । ମୋହନ ଲକ୍ଷ୍ମୀ କି ରୁଣ୍ଡୀଭୂତ କରି । ସମସ୍ତ ରସମାନ ସଂହାରି । କୁରଙ୍ଗ ତରଙ୍ଗ ମନ୍ମଥସାଯୁକ ଭରି । ଭ୍ରମରକଳା ପୂର୍ଣ୍ଣଚନ୍ଦ୍ର ବିମ୍ବିତ···ରତିରସ ଲୀଳା । ପ୍ରେମାଦି ଗୁଣମାନଙ୍କର ଅଳା । ଉପିଲା ମର୍କତ କଳା । ଅନଙ୍ଗ ଜଗଦଧ୍ୱଜ କଜ୍ଜ୍ୱଳ ଲୀଳା ସହିତ ପଦାର୍ଥମାନ ସମକରି ସେ ଫୁଟିଲା ନୀଳୋତ୍ପଳ ବେନିରେ ଉପିଲେ ଅମୃତ ସହିତ ଲେପି । ନୀଡ଼ାରସ ତରଙ୍ଗେ କ୍ଷେପି । କାମଦେବର ମୁଖପଦ୍ମର ମର୍କତ ଭ୍ରମର ଦୁଇ ଗୋଟି ବସାଇ । ମନ୍ମଥରସ ମିଶାଇ । ମହାମତ୍ତ ବାରୁଣୀ ନାଇ । କନ୍ଦର୍ପର ନୀଳସୂକ୍ଷ୍ମ ବାଣମାନନ୍ତ ଏହାନ ଗୃହପାରୁଣରେ ରୋଇ । ଚନ୍ଦ୍ର ତହୁଁ ଅମୃତ ଅଞ୍ଜନ ଆଣି । ମଦନ ସମୁଦ୍ର ଗୁଣି ତହିଁରୁ ନଧିଲାଇ । ମୃଗ ଯମୁନାର ତରଳତରଙ୍ଗ ମିଶାଇ, ଆକର୍ଷ ଲକ୍ଷ୍ମୀକି ବସାଇ । ସେ ନୀଳୋତ୍ପଳ ଚକ୍ଷୁକଳା । ଏମନ୍ତ ଦେଖି କାମଦେବ ସେବକ ଭାବକୁ ଗଲା ।ଏମନ୍ତେ ସେ କନ୍ୟାର ଉନ୍ନତ ନାସିକାକୁ କି ବା ବୋଲି ବୋଲିବା । ବଳିତ ଲଳିତ ଉଚ୍ଚ ସଞ୍ଚ ସମସରସ ସୁଲକ୍ଷଣ ପୁଟ ଦ୍ୱୟ ଯତ୍‌ଶୋଭ ସୁଗନ୍ଧ ଶ୍ୱାସ । ପ୍ରସର ପବନ କନକ କମମାୟ କେତକୀ । ରସାଣିତ ପଞ୍ଚୁଦାହ ସୁବର୍ଣ୍ଣ । ହରିରପୁ ହେମଦଣ୍ଡ ଖଣ୍ଡ କାର୍ତ୍ତିମଣ୍ଡନ । ଯୁବା ଜନମନ ଭେଦନ ଛେଦନ କି ମଦନ ଖଡ଼୍‌ଗ ସୁଲକ୍ଷଣ । ରତ୍ନତିଳ କୁସୁମ କି ଅଧୋମୁଖ ସ୍ତବ୍ଧନ । ମୟୂରବୈଚିତ୍ର୍ୟ ନିର୍ମିତ ଅଧରାମୃତ କଲଶ ମନ୍ଥନ କନକ ଖୋଆଦଣ୍ଡ ସମ । ଅଚ୍ଛୁନ୍ନ ଦେବ କୁସୁମ କି ବିଶ୍ୱକର୍ମା ନିର୍ମିତ ପାରିଜାତ କଳିକା ସମ । କି ମଧୁ ପବନ ମିହେଣ ···ସ୍ୱର । କନ୍ଦର୍ପ ରଙ୍ଗର ପ୍ରାସାଦ କି ହିଶଇ ଅତି ସୁନ୍ଦର । ଶୃଙ୍ଗାରରସ ଜନ୍ମର ରନ୍ଧ୍ର କି ପ୍ରସରିତ ଅର୍ମୀୟ ପବନ । ଅପାଙ୍ଗ ବାଣର ଭୟେ କି କାମଦେବର ଶରଣ ସଦନ । ଶିଖିତପୁଷ୍ପ ସୁକୁମାର··············· ·········ବାଟେ·········ପ୍ରାୟେ ଶୋଭା ପାଉଅଛି । କି ପୂର୍ଣ୍ଣଚନ୍ଦ୍ର ମଣ୍ଡଳରୁ ଶୁକଦେବତା ଅମୃତ ରସମାନ ଚୌର୍ଯ୍ୟରୂପେ ପିଉଅଛି । କି ଗୁଣମାନଙ୍କୁ·········ଙ୍କୁ ଦେଲା । ବିଶ୍ୱକର୍ମା କୁନ୍ଦେ କୁନ୍ଦି ହୋଇ ରହିଅଛି । କି ଶୃଙ୍ଗାରରସ ଲତାରେ ରତିକ୍ରୀଡ଼ା ଫଳ ଫଳିଅଛି । କି ଲାବଣ୍ୟ ଜଳ ପୂରନ୍ତେ ଠୋପି ଠୋପି ହୋଇ··· ···ତ । ସେ ଯାବୁ ଶ୍ରବପାଙ୍ଗି ବସନ୍ତପୂର୍ଣ୍ଣମୀ ହିନର ଦୋଳରେ । କି ତ୍ରିଭୁବନ ବିଜୟ ପତାକା ବଳରେ । କି ମକରଧ୍ୱଜର ଆଳ ଠ । ତାହା ଦେଖି କାମଦେବ ରତିକି ହୋଇ ଅଛେଠ । କି ଯୁବା କହଣ ଦାତା ।

ଏମନ୍ତେ ସେ କନ୍ୟାର ଅଧରପଲ୍ଲବକୁ କି ବୋଲି ବୋଲିବା । ଅରୁଣପଲ୍ଲବ ଅତିଶୟ ରସ । ବିପୁଳ ପୁଲକିତ ଅମୃତ ସରିତ ବୁଦ୍‌ବୁଦ ଲାବଣ୍ୟ । ପଙ୍କେରୁହରେ ରେଖାବଳି କି ଲକ୍ଷ୍ମୀ ବିକଶିତ ସୁରତରୁ ମଧୁର କୋମଳ କମନୀୟ କାନ୍ତିକ ବନ୍ଧୁକ ଦ୍ୟୁତିକ ପ୍ରେମ ଜନିତ ସୁଧାରସ । ଏଥୁ ଅଧରକୁ କି ବୋଲି ବୋଲିବା ରେ । କି ଡାଳିମ୍ବ କୁସୁମକୁ ଭେଳା କରି ଖେଦଜଳଧି ତରିବା ରେ । କି ମନନୟନକୁ ବନ୍ଧକରି ଅନୁରାଗ ଚିହ୍ନ ଥୋଇବାରେ । କି ଉଦୟ ମଦନ ମାର୍ତ୍ତଣ୍ଡ ମଣ୍ଡଳାର୍ଦ୍ଧ କଳା ପରିଏ ଶୋହୁଥିବା ରେ । କି ସ୍ୱର୍ଣ୍ଣକାର ଧାତୁ ନିବଡ଼କୁ ଧୋଉଥିବା ରେ । କି ରତି ନୃପବର ବକ୍ଷସ୍ଥଳେ ଅରୁଣ କୁସୁମମାଳା ପରିଏ ଦିଶୁଥିବା ରେ । ମାଣିକ୍ୟ ନୌକାରେ କନ୍ଦର୍ପାର୍ଣ୍ଣବ ତରୁଁ ଅମିୟ ଅପାଙ୍ଗେ ପଶୁଥିବାରେ । କି ସୁବର୍ଣ୍ଣ ମେଘରେ ରକ୍ତବିଦ୍ୟୁଚ୍ଛଟା ପ୍ରକାଶୁଥିବା ରେ । କି ବନ୍ଧୁକ ପୁଷ୍ପମାଳାରେ ମନଲିଙ୍ଗକୁ ପୂଜିବା ରେ । ଅନୁରାଗ ଅମୃତ ଚନ୍ଦ୍ରମଣିରେ ଅରୁଣ ରତ୍ନ ବୋଲି ପାଞ୍ଚୁଥିବା ରେ । କି ଯୁବା ଜନମନ ବନ୍ଧନରେ ରକ୍ତତରଙ୍ଗିଣୀ ବୋଲି ଭାବୁଥିବାରେ । ପ୍ରେମାଞ୍ଜନ ଈଷଦ୍ଧାସ ସୁଧା-ତରଙ୍ଗିଣୀ ଦଶନ ବସନକୁ କି ବୋଲି ବୋଲିବା ରେ । ପକ୍ୱବିମ୍ବ ଯେବେ ବୋଲିବା । ସେ ବର୍ଣ୍ଣ ପାଣ୍ଡୁର ନ୍ୟାୟରୁ ନୋହିଲି । ବନ୍ଧୁକ-ପୁଷ୍ପ ଯେବେ ବୋଲିବା ସେ ସାତ ଦଣ୍ଡରେ ଫୁଟଇ । କିଂଶୁକ ଯେବେ ବୋଲିବା ସେ ଅଂଶୁ ଭାବେ ନ ଘଟଇ । ଡାଳିମ୍ବ ପୁଷ୍ପ ଯେବେ ବୋଲିବା ସେ କାଳି କି ରଙ୍ଗ । ପ୍ରବାଳଖଣ୍ଡ ଯେବେ ବୋଲିବା ସେ କଠିନ ଅଂଶ । ଶୂକଚଞ୍ଚୁ ଯେବେ ବୋଲିବା ସେ ନୀରସେ ଦୂଷିତ । ତରୁଣାରୁଣ ଯେବେ ବୋଲିବା ସେ ଉଷ୍ମ ଦୋଷେ ମିଶ୍ରିତ । ମାଣିକ୍ୟମଣି ଯେବେ ବୋଲିବା ସେ ମୃଦୁଳେ ଫୁଟଇ । ପଦ୍ମକେଶର ଯେବେ ବୋଲିବା ସେ ପରାଗେ ନ ଘଟଇ । ନିର୍ଧୂମଅଗ୍ନି ଯେବେ ବୋଲିବା ସେ ଜଳ ସଙ୍ଗତେ କାଳିକ । କିତପାରେ କନ୍ତୁରୀ ଛେଦ ଯେବେ ବୋଲିବା ସେ ସୂତ୍ରାନୁବନ୍ଧ ମାଳିକ । ସନ୍ଧ୍ୟାଘନ ଯେବେ ବୋଲିବା ସେ ଅତି ବ୍ୟଗ୍ରେ ଯାଇ । ରକ୍ତଉତ୍ପଳ ଯେବେ ବୋଲିବା ସେ ଜଳରେ ଥାଇ । ପ୍ରଥମ ବାଳଇନ୍ଦୁ କଳା ଯେବେ ବୋଲିବା ସେ ଅତି ଶୀତଳ ଜଡ଼ । ପାରିଜାତପୁଷ୍ପ ଯେବେ ବୋଲିବା ସେ ଅନ୍ତରଙ୍ଗେ ଜଡ଼ । କୋକନଦ ଯେ ବୋଲିବା ତହିଁ ଲୀଳାରସ ନାହିଁ । ସିନ୍ଦୂରକାନ୍ତି ଯେ ବୋଲିବା ମେ ଲାବଣ୍ୟ ଜଳଧିର ସ୍ୱେଦ-କଣିକା ଅବା ପାଳିବ କାହିଁ·········ସୁଧାରୁଣ ଘନେ ଘସି । ଇନ୍ଦ୍ରଗୋପ

ବନ୍ଧୁରାଗାଙ୍କେ ପରଶଂସି । ବନ୍ଧୁକ ପାରି ଭଦ୍ର କୋକନନ୍ଦ ତାଳମ୍ବ ପାରିଜାତକାନ୍ଦ ପୁଷ୍ପ··········ଫଳର କୋମଳ ଆରକ୍ତ ସ୍ନିଗ୍ଧ ଲଇ । ପ୍ରବାଳଖଣ୍ଡରୁ ମସୃଣ ଚକ୍କଣ ଥୋଇ । ପଞ୍ଚଶୁକ ପକ୍ଷୀରୁ ପୃଷ୍ଟାଗୁଣ ଲଇ । ନଧୂମ ଅଗ୍ନିରୁ ରକ୍ତମା·········ଔଷଧମାନଙ୍କର ସତ୍ତ୍ୱ······ ସମସ୍ତ ସ୍ୱାଦୁ ପଦାର୍ଥମାନଙ୍କର ଆଦର ସ୍ନିଗ୍ଧ ଲଇ । ଲୀଳାସ୍ଥିତ ଲକ୍ଷ୍ମୀ କ ବସାଇ । କଳ୍ପଲତାରୁ ପ୍ରସନ୍ନ ପଲ୍ଲବ ଗୁଣ ମିଶାଇ । ଚନ୍ଦ୍ର ଇନ୍ଦ୍ର-ମଣିରେ ମିଶାଇ । ଅଭିନବ ବସନ୍ତ······ବିଶ୍ୱକର୍ମା ଯୋଗ୍ୟତାପଣ ଦେଖାଇ । ସେ ଅଧର ପଲ୍ଲବ କଲା । ଏହା ଦେଖି ସମସ୍ତ ରକ୍ତମାନଙ୍କର ଆଦର ସରିଲା । ଏମନ୍ତେ ସେ କନ୍ୟାର କୋକିଳ ବଚନକୁ କି ବୋଲି ବୋଲିବା ସ୍ୱତ୍ତ୍ୱ ସୁସ୍ୱର ସରଳ ମୃଦୁଳ ସ୍ନିଗ୍ଧ କୋମଳ କମନୀୟ ଗମ୍ଭୀର ଲଳିତ ମୃଦୁଳ୍କୁଁ ସୂକ୍ଷ୍ମ ଉଦାତ୍ତ ପ୍ରସନ୍ନ ନିର୍ଦ୍ଦୋଷ ମନ୍ମଥ ବେଣୁ ସମନ୍ୱିନ । ମୁନି ମନ ଉଚ୍ଚାଟନ କରିବୁ କି ବୋଲି ବୋଲିବା ରେ । କନ୍ଦର୍ପର ବୀର ଗର୍ବ ଦଳନ ମନ୍ତ୍ର ବୋଲି ଭାସୁଥିବା ରେ । କି ଯୋଗେନ୍ଦ୍ରମାନଙ୍କର ଯୋଗ ଯୁକ୍ତ ଚିତ୍ତକୁ ଭେଦୁଥିବାରେ । କି ଆନନ୍ଦ ରଙ୍ଗସାଗରେ କ୍ରୀଡ଼ା-ନଦୀ ସଙ୍ଗମର ପ୍ରାୟେ ଶୁଭୁଥିବାରେ । କି ପୁଷ୍ପ-ଧନୁରୁ ମୋହିନୀ ବାଣୀ ଧ୍ୱନି ବାଜୁଥିବା ରେ । କି ଲାବଣ୍ୟଜଳଧି ମନ୍ଦମନ୍ଦ ହୋଇ ଗର୍ଜୁଥିବା ରେ । କି ନୂତନ କରି ମଦନ ସୃଷ୍ଟି ସର୍ଜୁଥିବା ରେ । କି ରତି-ପ୍ରଦୀପକୁ ସେ ତେଜୁଥିବା ରେ । କି ପୋଡ଼ିଲା ମନ୍ମଥ ତରୁକୁ ଅମୃତରେ ଭେଜୁଥିବା ରେ । କି ସକଳ ଜଗତର ଜୀବଦାନ ବେଣୁକୁ ସୁମରୁଥିବା ରେ । କି ତ୍ରିଭୁବନବାଦୀ ମନ୍ମଥର ଜୟଶଙ୍ଖ ବାଜୁଥିବା ରେ । କି ସୁରତ ରତି କଲା ରେ ରସନା ଧ୍ୱନି ପ୍ରାୟେକ ଶୁଭୁଥିବାରେ । କି ମୁଖ ପଦ୍ମଲୋଭେ କରି ମଦନ ମତ୍ତଭ୍ରମର ଗଞ୍ଜୁଥିବା ରେ । କି ଉନ୍ମତ୍ତ କାମ-ଦୁନ୍ଦୁଭି ବାଜୁଥିବା ରେ ।

ଏମନ୍ତେ ସେ ବଚନ ସୁସ୍ୱରକୁ କି ବୋଲି ବୋଲିବା ରେ । କନ୍ଦର୍ପର କମ୍ବୁସ୍ୱନ ଯେବେ ବୋଲିବା ସେ ଅତିଶୟ ଧ୍ୱନି । ମନ୍ମଥ ଅଳୀ-ଶ୍ରେଣି ଏବେ ବୋଲିବା ସେ ନଖକ୍ଷତେ ଭିନ୍ନ । ସୁର ଷଟ ସାରିକା ଯେବେ ବୋଲିବା ସେ ଅନୁଦାତ୍ତ ସ୍ୱର । ବାଳ ଷଟ୍ପଦ ଯେବେ ବୋଲିବା ସେ ରଙ୍କ ଚତୁର । ବସନ୍ତ ଝିଙ୍କାରୀ ଯେବେ ବୋଲିବା ସେ ଝିଙ୍କୃତ ନାଦ । ଅକଣ୍ଠ କୋକିଳ ଯେବେ ବୋଲିବା ସେ ମଧୁମାସେ ଭିତ । ସୁସ୍ୱର ବଂଶୀ ଯେବେ ବୋଲିବା ସେ ଗମ୍ଭୀରେ ଊଣା । କମ୍ବୁଧ୍ୱନି

ଯେତେବେ ବୋଲିବା ତେସ ଉଚ୍ଚ ଶବ୍ଦେ ଉଣା । ଏମନ୍ତ ପ୍ରାୟେକ ମଣି, ବଧଣା ସଂଗ୍ରହରେ ଚନ୍ଦ୍ରୁ ସୂକ୍ଷ୍ମସ୍ୱର ଯେନ । ବୀଣା ତାଳର ପ୍ରାନ୍ତ ଧ୍ୱନି । ଭ୍ରମର ନାଦର ମଧ୍ୟମ ସ୍ୱର । ଝିଙ୍କାରର ମଧୁର । ବେଣୁ ସ୍ପର୍ଶ । ଶଙ୍ଖର ଗମ୍ଭୀର ରସ । ସାରସ୍ୱତ । ଦୁନ୍ଦୁଭିର କୋମଳ ଉଦ୍ଘଟ । ଶରଦ······ କଳାମେଘ । ମନ୍ମଥର ହର୍ଷନାଦ ଭେଷ । ଅମୃତର ତୁଲ୍ୟେ ସମରସ ଭରି । ମୃତ୍ୟୁସଞ୍ଜିବନୀ ମନ୍ତ୍ର ବଗୁର । ଅଣ୍ଡିର କୋକିଳର ସ୍ୱର ଭରି । ବ୍ୟାକରଣ ଅଭ୍ୟାସ ଉଚ୍ଚାରଣ ଲଇ । ଏ ସବୁ ପଦାର୍ଥମାନ········ ·········ନ ଭଆଇଲା । କାକଧାଘର, ଭେକ ବସ୍ୱର, ଶୋକ କ୍ଷୀଣାଢ ଦୋଷାନ୍ତ ନାଶି । ସେ ବଚନ କରଅଛି କ ମୁନିଜନମାନଙ୍କର······ ············ବର୍ତ୍ତୁଳ । ବରଳ । ସରଳ । ସରସ । ଘଞ୍ଚ । ସଞ୍ଚ । ଜ୍ୟୋତିଚନ୍ଦ୍ର । ବମ୍ଭକ । ଆର୍ଦ୍ର । ସ୍ନିଗ୍ଧ । କାନ୍ତ । ସମ । ସୁରସ । ସୁଭକ୍ତ । ଶୁକ୍ଲ । ସୂକ୍ଷ୍ମ । ମନୋରମ······ବୋଲିବା ରେ । ମଦନ ଅନ୍ଧକାର······ଇନ୍ଦୁ ଉଇଁଲା ରେ । ସକଳ ଦୀପ୍ତ କରି କ୍ଷୁଦ୍ର କ୍ଷୀରସମୁଦ୍ର ହୋଇଲା ରେ । ଲବଣ୍ୟ ମୃଦୁ ଜ୍ୟୋତ୍ସ୍ନା ଏକ କରି ଭଆଇଲା ରେ । କ ମନ୍ମଥହସ୍ତୀର ଗଜମୁକ୍ତା ପ୍ରାୟେ ଜଗତ ମୋହିଲା ରେ । କାମାଗ୍ନିଶିଖା କ ଯୁବାଜନମାନଙ୍କୁ ଦହିଲା ରେ । ଈଷିତ ହାସେ କରି ରତି ଇନ୍ଦ୍ର ରୁଦ୍ର ରାତି ପାହିଲା ରେ । ଅକଳଙ୍କ ଜ୍ୟୋତି ଦେଖି ମୃତ୍ୟୁଶର କାମଦେବ ଲେଉଟି ଈଶ୍ୱରଙ୍କୁ ମାଇଲା ରେ । ସକଳ ଜନ୍ତୁମାନଙ୍କର ଜୀବ ଗ୍ରହଣ କରି ରହିଲା ରେ । ବାରିତର ପର୍ବତମାଳାରେ କରି କ ମନ୍ମଥ ସୃଷ୍ଟି ଶୋହିଲା ରେ ।

ଏମନ୍ତେ ସେ ଦନ୍ତପନ୍ତି କ କ ବୋଲି ବର୍ଣ୍ଣିମା ରେ । କନ୍ଦର୍ପର କରରୁଣ ପ୍ରତିବିମ୍ବ ସ୍ଫଟିକ ଜପାମାଳ ଅବା ବୋଲିବା ସେ ଚକ୍ର ନାହିଁ । ଡାଳିମ୍ବବୀଜ ଅବା ବୋଲିବା ସେ ଆର୍ଦ୍ର ସ୍ନିଗ୍ଧ ବର୍ତ୍ତୁଳ ଅର୍ବା ପାଇବ କାହିଁ । ବାରିତର ହୀର ଅବା ବୋଲିବା ସେ ରଙ୍ଗେ ନୀରସ । ପଦ୍ମରାଗ ମାଣିକ୍ୟ ଅବା ବୋଲିବା ସେ ପଥରେ······ । କ୍ଷୁଦ୍ର ଚନ୍ଦ୍ରମଣିରେ କୁସୁମ ଅବା ବୋଲିବା ତହିଁ ମଦନ ପ୍ରତିଭା ନାହିଁ । ବାଳଚନ୍ଦ୍ରରେ ସନ୍ଧ୍ୟାଘନ ଘସିଲା ଅବା ବୋଲିବା·········

( ଅ ସ ମ୍ପୂ ର୍ଣ୍ଣ )

ମୁଦ୍ରାକର—ଶ୍ରୀ ଜଗବନ୍ଧୁ ସାହୁ, ନବଯୁଗ ପ୍ରେସ, ପାଲଟପଡ଼ା, କଟକ ୨—୧୯୬୪